# ଜାତିରେ ମୁଁ ଯବନ

ଚିତ୍ତରଞ୍ଜନ ଦାସ

ପ୍ରକାଶକ :

ଭାଗ୍ୟଧର ସାହୁ
**ପଥିକ ପ୍ରକାଶନୀ**
ଜିଜିପି କଲୋନୀ, ଭୁବନେଶ୍ୱର - ୭୫୧ ୦୧୦, ଓଡ଼ିଶା

ମୁଦ୍ରଣ : **ଶିକ୍ଷା ପ୍ରକାଶନୀ**, ଭୁବନେଶ୍ୱର

ନୂତନ ସଂସ୍କରଣ : ମକର ସଂକ୍ରାନ୍ତି ୧୯୯୮

ତୃତୀୟ ସଂସ୍କରଣ : ୨୦୦୬



ପଥିକ ପ୍ରକାଶନୀ
ସଂଶୋଧିତ ମୂଲ୍ୟ ଟ.୮୮/-

---

**JATIRE MU JABANA**

Chittaranjan Das

**Publisher :**

Bhagyadhar Sahoo
**Pathika Prakashani**
G.G.P. Colony, BBSR - 751 010

**Printed at :**

Siksha Prakashani
Bhubaneswar

**New Editlon :**

Makara Sankranti,1998

**Third Edition :** 2006



Pathika Prakashani
Revised Price ₹.88.00

## ଜମାନ୍‌ବନ୍ଦୀ

ଯବନର ଜାତି ନାହିଁ । ଅର୍ଥାତ୍‌ ସିଏ ମଣିଷ, ସିଏ ଯାତ୍ରୀ, ସିଏ ସତତ ଯାତ୍ରୀ । ସିଏ ଭଲ ପାଏ, ସିଏ ପରିଧିଗୁଡ଼ାକୁ ଡ଼େଇଁଯାଏ, ପର୍ବତ ଲଂଘନ କରେ । ତା'ର ସାହିତ୍ୟ ଜଳାଶୟଗୁଡ଼ାକୁ ଭାଙ୍ଗିଦିଏ । କାନ୍ଥଗୁଡ଼ାକ ଭାଙ୍ଗିପଡ଼ି ଭିତରୁ ବାହାରିଯାଏ, ସଫା ହୋଇ ଦିଶିଲେ ସିଏ ମୋଟେ ଭୟ କରେ ନାହିଁ ।

ଏହି ପ୍ରବନ୍ଧଗୁଡ଼ିକ ଅନୁକ୍ରମ ଅନୁସାରେ ଏକଦା ପ୍ରକାଶିତ 'ନବରବି' ମାସିକ ପତ୍ରିକାର ୫ମ, ୬ଷ୍ଠ ଓ ୭ମ ବର୍ଷର ବିଭିନ୍ନ ସଂଖ୍ୟାରେ ବାହାରିଥିଲା । ସେହି ପତ୍ରିକାର ସମ୍ପାଦକଙ୍କୁ ମୁଁ ଆଜି ଆଉଥରେ ସ୍ମରଣ କରୁଛି, କୃତଜ୍ଞତା ଜଣାଉଛି ।

ବନ୍ଧୁ କ୍ଷେତ୍ରବାସୀ ନାୟକ ଏବଂ ନିତ୍ୟାନନ୍ଦ ଦାଶ ଏଗୁଡ଼ିକୁ ଗ୍ରନ୍ଥରୂପ ଦେବାର ଆଗ୍ରହ ଦେଖାଇ ଘରୁ ବାହାର କରିଛନ୍ତି । ସେଥିଲାଗି ସେମାନଙ୍କ ପାଖରେ ମୁଁ ଉପକୃତ ଅନୁଭବ କରୁଛି ।

**ଚିତ୍ତରଞ୍ଜନ ଦାସ**

# ସୂଚୀପତ୍ର

# ଏକ

ଜାତି ସମସ୍ତଙ୍କର ରହିଛି । ଗଛପତ୍ରର କେତେ ଜାତି ରହିଛି, ପଶୁପକ୍ଷୀଙ୍କର ବି କେତେ ଜାତି ରହିଛି । ବୈଜ୍ଞାନିକମାନେ କହିବେ ଯେ ପ୍ରଜାପତିଙ୍କର ମଧ୍ୟ କେତେ ଜାତି ଅଛି, ଫୁଲର ମଧ୍ୟ କେତେ ଜାତି ଅଛି । ଜୀବାଣୁଙ୍କର କେତେ ଜାତି ଅଛି, ରୋଗର ବି କେତେ ଜାତି ରହିଛି । ଆଗକାଳରେ ସମାଜକର୍ତ୍ତାମାନେ ମଣିଷଙ୍କର ବି କେତେ ଜାତି ନିର୍ଣ୍ଣୟ କରି ଦେଇଥିଲେ । ଏ ଦେଶରେ ପ୍ରଥମେ ଚାରି ଜାତିର ନିର୍ଦ୍ଧାରଣ ହୋଇଥିଲା, ଚାରି ବଢ଼ି ଚାଳିଶି ହେଲେ, ଚାଳିଶିରୁ ଚାରିଶହ ବା ଚାରିହଜାର ମଧ୍ୟ ହେଲେ । ଏବେ ଖାଲି ଭାରତବର୍ଷରେ ନୁହେଁ, ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ମଧ୍ୟ ମଣିଷଙ୍କର ଜାତି କରାହୋଇଛି । କଳା ଜାତି ଅଛନ୍ତି ଓ ଗୋରା ଜାତି ଅଛନ୍ତି, ସଭ୍ୟ ଜାତି ଅଛନ୍ତି ଓ ଅସଭ୍ୟ ଅର୍ଥାତ୍ ଅଳ୍ପସଭ୍ୟ ଜାତି ବି ଅଛନ୍ତି । ଆର୍ଯ୍ୟ ଅଛନ୍ତି, ଆର୍ଯ୍ୟେତର ଅଛନ୍ତି । ହିନ୍ଦୁ ଅଛନ୍ତି, ମୁସଲମାନ ଅଛନ୍ତି; ପୀତ ଅଛନ୍ତି, ଲୋହିତ ଅଛନ୍ତି ଏବଂ ଏତେ ଜାତି ଥାଇ ଆମର ଏହି ସଂସାରଟି ବଡ଼ ବିଚିତ୍ର ଦିଶୁଛି ।

ଖାଲି ମଣିଷର ଦେଶ, ଜନପଦ, ଦେହର ବର୍ଣ୍ଣ ଅଥବା ଧନ୍ଦାଟା ଅନୁସାରେ ହିଁ ଜାତିର ଭିଆଣ ହୋଇନାହିଁ । ମଣିଷର ପ୍ରକୃତି ଅନୁସାରେ ମଧ୍ୟ ମଣିଷକୁ ନାନା ଜାତିରେ ବିଭକ୍ତ କରି ଦେଖାଇ ଦିଆଯାଇଛି । ମଣିଷ-ପ୍ରକୃତିର ବିସ୍ତୃତ ଅଧ୍ୟୟନ କରିଥିବା ଶାସ୍ତ୍ରକାରମାନେ ପୁରୁଷକୁ କେତେଭଳି ପ୍ରକୃତିର ଅର୍ଥାତ୍ କେତେଭଳି ଜାତିର ବୋଲି ଦେଖିଛନ୍ତି । ସେହିଭଳି ସେମାନେ ନାରୀମାନଙ୍କୁ ମଧ୍ୟ କେତେଭଳି ଜାତି ଭିତରେ ବାଣ୍ଟି ଦେଇଛନ୍ତି । ମଣିଷକୁ ଦେଖିବ ତ ତା'ର ଜାତି ଦେଇ ଦେଖ, ମଣିଷକୁ ଅର୍ଥାତ୍ ତା'ର ପ୍ରକୃତିକୁ ଚିହ୍ନିବ ତ ସର୍ବଦା ତା'ର ଜାତି ଦେଇ ଚିହ୍ନ, ଏହାକୁ ହିଁ ଯୁଗେ ଯୁଗେ ନିରାପଦ ବୋଲି କୁହାଯାଇଛି । ମଣିଷ ନିରାପଦରେ ରହିବ ବୋଲି ଆପଣା ଘରର ଚାରିପାଖରେ ପାଚେରୀମାନ ଠିଆ କରାଇଥାଏ, ସୁରକ୍ଷିତ ହୋଇ ରହିବ ବୋଲି ଆପଣାର ଜଗତକୁ ସତେଅବା ଦୁର୍ଗଟିଏ ପରି କରି ଗଢ଼ିଥାଏ । ଏହି ସଂସାରରେ ଏକକ ଓ ଅନନ୍ୟ ହୋଇ ବାରି ହୋଇଯିବ ବୋଲି ସେ ଆପଣାକୁ ଘେରାଇ କେତେ କେତେ ବାଡ଼ ବସାଇଥାଏ ।

ଅନନ୍ୟ ହୋଇ ଦିଶିବ ବୋଲି ମଣିଷ କେତେ କ'ଣ କରିଥାଏ, କେତେ କ'ଣ କହିଥାଏ । ଅଲଗା ପ୍ରକାରର ପୋଷାକ ପିନ୍ଧେ, ଅଲଗା ପ୍ରକାରର ଢ଼ଙ୍ଗ ଓ ବେଢ଼ଙ୍ଗରେ ନିଜକୁ କେତେମନ୍ତେ ସଜାଏ, ଅର୍ଥାତ୍ ଆପଣାକୁ କେତେମନ୍ତେ ଆବୃତ କରି ରଖେ । ସେ ଚୁଟି ରଖେ, ଚିତା ଲଗାଏ, ପଇତା ପକାଏ, ଗେରୁଆ ପିନ୍ଧେ, କଲି ବଢ଼ାଏ, ଦାଢ଼ି ଛାଡ଼ିଦିଏ, ଚାଲିବାର ଓ କଥା କହିବାର ଗୋଟିଏ ନୂଆ ଠାଣି ବାହାର କରେ । ଏଇଠି ସମସ୍ତଙ୍କ ଭିତରେ ଥାଇ ମଧ୍ୟ ସିଏ ସତେଅବା ଅନନ୍ୟ ଓ ଅଲଗା ହୋଇ ରହିଥାଏ । ସବୁ ମଣିଷ ଏହି ଗୋଟାଏ ପୃଥିବୀରେ ରହିଥିଲେ ମଧ୍ୟ ସେମାନେ ତଥାପି ଗୋଟିଏ ହୋଇ ନଥାନ୍ତି - ଗୋଷ୍ଠୀ ବାନ୍ଧି ପରସ୍ପରଠାରୁ ଅଲଗା ଓ ଅନନ୍ୟ ହୋଇ ରହନ୍ତି । ଗୋଷ୍ଠୀଲାଗି ଅନ୍ୟ ଚାହାଣି ଓ ଚଳଣିଗୁଡ଼ାକର ପ୍ରବର୍ତ୍ତନ କରାନ୍ତି, ଗୋଷ୍ଠୀଲାଗି ଗୋଷ୍ଠୀଦିଅଁ ମାନଙ୍କର ଉଦ୍ଭାବନ କରନ୍ତି । ଅନ୍ୟମାନଙ୍କଠାରୁ ଅନ୍ୟ ବିଧି ଓ ଅନ୍ୟ ରୀତିରେ ଚଳନ୍ତି, ଅନ୍ୟ ସଂସ୍କାରରେ ମଣ ହୁଅନ୍ତି, ଅନ୍ୟ ମୂଲ୍ୟଗୁଡ଼ାକୁ ଚନ୍ଦନ ପରି ବୋଳି ହୋଇଥାନ୍ତି, ଆପଣାଲାଗି ସତେ ଅବା ଅନ୍ୟ ଏକ ସ୍ୱର୍ଗର କଳ୍ପନା ମଧ୍ୟ କରୁଥାନ୍ତି ।

ଯଦି ସଂସାରରେ ନାନା ଜାତି ପଶୁପକ୍ଷୀ ନ ଥାନ୍ତେ, ତେବେ ଏହି ସଂସାରଟା କଦାପି ଭଲ ଲାଗୁ ନଥାନ୍ତା । ଧରଣୀର କଳେବରଟାକୁ ବିଚିତ୍ର ମଣ୍ଡନ ଦେଇ ଯଦି ନାନା କିସମର ଫୁଲ ଫୁଟୁ ନଥାନ୍ତା, ତେବେ କଦାପି ଭଲ ଲାଗୁ ନ ଥାନ୍ତା । ନାନା ଜାତି ଫୁଲ ନାନା ବେଶରେ ସଜାଇ ଓ ନାନା ବିଭବରେ ମଣ୍ଡାଇ ଯଦି ନାନା ଋତୁ ଆସୁ ନ ଥାନ୍ତା, ତେବେ ଜୀବନଟାଯାକ ବଡ଼ ଅସୁଆଦ ଲାଗୁଥାନ୍ତା, ଖାଲି ଝୁରି ଝୁରି ହିଁ ଦିନ ଯାଉଥାନ୍ତା । ମଣିଷର ସମାଜରେ ବୈଚିତ୍ର୍ୟ ନ ଥିଲେ ମଣିଷର ମନଟା ହୁଏତ ଭାରି ଉଦାସ ହୋଇ ରହିଥାନ୍ତା, ସିଏ ଜୀବନର ଗୋଟାଏ ରଙ୍ଗକୁ ଆଉ ଗୋଟାଏ ରଙ୍ଗଠାରୁ ମୋଟେ ବାରିନେଇ ପାରୁ ନ ଥାନ୍ତା । ଗୋଟାଏ ଆକାଶକୁ ଆଉ ଗୋଟାଏ ଆକାଶରୁ ବାରିନେଇ ପାରୁ ନଥାନ୍ତା, ଏପରିକି ଗୋଟାଏ ଘଡ଼ିକୁ ମଧ୍ୟ ହୁଏତ ଆଉ ଗୋଟାଏ ଘଡ଼ିଠାରୁ ମୋଟେ ବାରିନେଇ ପାରୁ ନ ଥାନ୍ତା । ଯଦି ଏଠି ସମସ୍ତେ ଗୋଟିଏ ରୀତିରେ କାନ୍ଦୁଥାନ୍ତେ, ଗୋଟାଏ ରୀତିରେ ସମସ୍ତେ ହସୁଥାନ୍ତେ, ଗୋଟାଏ ରୀତିରେ ହିଁ ବାହାପୁଆଣି ହେଉଥାନ୍ତା, ଗୋଟାଏ ପାଞ୍ଜି ବା ଜଣେ ନାହାକର ସୂତ୍ର ଅନୁସାରେ ଅନୁକୂଳ, ଅଭିସାର, ଶୃଙ୍ଗାର ଓ ସଖ୍ୟ ସବୁକିଛି ଚାଲୁଥାନ୍ତା, ତେବେ ଏ ଜୀବନଟାକୁ ବଡ଼ ବେରସିକ ଭାବରେ କାଟିବାକୁ ପଡୁଥାନ୍ତା । କେଡ଼େ ଭଲ ହୋଇଛି, ଆମକୁ ଗୋଟିଏ ନାଟକରେ ହିଁ ରାଜା, ରାଣୀ, ମନ୍ତ୍ରୀ, ସେନାପତି, ସଖୀ, ଦାସୀ, ଦୂତ ଓ ବିଦୂଷକ ସମସ୍ତଙ୍କୁ ଏକାବେଳକେ ଦେଖିବାକୁ ମିଳୁଛି । ନାଟକ ବୋଲି ଭଣ୍ଡାଇ ଦେଇ ଯଦି ଖାଲି ରାଜାଗୁଡ଼ାଏ, ଖାଲି

ରାଣୀଗୁଡ଼ାଏ ବା ଖାଲି ଦୁଆରୀଗୁଡ଼ାଏ ଆମ ଆଗରେ ଆସି ଉଭା ହେବାରେ ଲାଗିଥାନ୍ତେ, ତେବେ ଆମ ଭିତରୁ କିଏ କାହିଁକି ନାଟକ ଦେଖିବାକୁ ଯାଉଥାନ୍ତା ? ହୁଏତ କେହି ନାଚିବାକୁ ବି ଯାଉ ନଥାନ୍ତେ । ଖାଲି ନାଟକରୁ ନୁହେଁ, ଆମ ଜୀବନଟାରୁ ମଧ୍ୟ ବଡ଼ ନିର୍ମମ ଓ ନିର୍ଦ୍ଦୟ ଭାବରେ ଯାବତୀୟ ନାଟକୀୟତା ବହିଷ୍କୃତ ହୋଇ ରହିଥାନ୍ତା ।

ଏଠାରେ ଭାଷାକୁ ମଧ୍ୟ ଏକ ଦୃଷ୍ଟାନ୍ତ ରୂପେ ବିଚାର କରାଯାଇପାରେ । ସବୁ ଘୋଡ଼ାଙ୍କର ବା ସବୁ ଗଣ୍ଡାରଙ୍କର ଯେପରି ଗୋଟିଏ ଭାଷା ଅଛି, ସବୁ ମଣିଷଙ୍କର ଯଦି ସେହିପରି କେବଳ ଗୋଟାଏ ଭାଷା ଥାଆନ୍ତା, ତେବେ ଭାବଗତ ଆଦାନ ପ୍ରଦାନର କ୍ଷେତ୍ରଟା ପ୍ରକୃତରେ କେତେ ଅସନା ଓ ଅରସିଆ ହୋଇ ରହି ନ ଥାନ୍ତା ! ଯେତେ ଜନ ସେତେ ପଦ ହେଲାପରି ଯେତେ ଜନପଦ, ଏଠି ସେତିକିଟି ଭାଷା ରହିଥିବାରୁ ଆମ ପୃଥିବୀର ଘରଟି ପ୍ରକୃତରେ କେଡ଼େ ଐଶ୍ୱର୍ଯ୍ୟମୟ ନ ଦିଶୁଛି ! ଯଦି ସମସ୍ତଙ୍କ ଘରେ ସେହି ଗୋଟାଏ ପ୍ରକାର ତିଅଣ ରନ୍ଧା ହେଉଥାନ୍ତା, ତେବେ ଏଠି କିଏ କାହିଁକି କାହା ଘରକୁ ତିଅଣ ଦେଇ ବା ତିଅଣ ଆଣି ଯାଆନ୍ତା ? ତେଣୁ ଭାରି ଭଲ ହୋଇଛି, ମଣିଷର ଭାଷା ଭିନ୍ନ ଭିନ୍ନ ହୋଇଛି ଏବଂ ସେହି ପ୍ରତ୍ୟେକ ଭାଷାର ଠାବ, ଠାର ଏବଂ ଠାଣିଗୁଡ଼ାକ ମଧ୍ୟ ଭିନ୍ନ ଭିନ୍ନ ହୋଇଛି । ଆପଣା ଭାବପ୍ରକାଶର ଘରେ ମଣିଷ ଭିନ୍ନ ଭିନ୍ନ ପ୍ରକାରରେ ବେଶ-ମଣ୍ଡିତ ହୋଇ ରହିଛି, ପରସ୍ପରର ଆଖିକୁ ଏଡ଼େ ସୁନ୍ଦର ଦିଶୁଛି, ଏଡ଼େ ଆକର୍ଷକ ହୋଇ ଦେଖାଯାଉଛି । ଯଦି ପୃଥିବୀର ଧର୍ମଜୀବନରେ ଭିନ୍ନ ଭିନ୍ନ ଉପଚାର ନ ଥାନ୍ତା, ତେବେ ମଣିଷ ଯେ କିପରି ଆଖିବୁଜି ବସି ସବୁଠାରେ ସମାନ ହୋଇ ଦିଶୁଥିବା ସେହି ଗୋଟିଏ ଭଗବାନଙ୍କୁ ଠାକୁର ବୋଲି ଅନୁଭବ କରୁଥାନ୍ତା, ସେକଥା ଭାବିଲା ବେଳକୁ ମଧ୍ୟ ସତେଅବା ଭାରି ବିତୃଷ୍ଣା ଲାଗେ, ବେଳେ ବେଳେ ଭାରି ଭୟ ବି ଲାଗେ । ଉପଚାର ନ ଥିଲେ ମୂର୍ତ୍ତି ବି ନ ଥାନ୍ତା, ମୂର୍ତ୍ତି ନ ଥିଲେ ମଣ୍ଡଣି ନ ଥାନ୍ତା, ମଣ୍ଡଣି ନ ଥିଲେ ହୁଏତ କଳା, ସଂସ୍କୃତି, ସଙ୍ଗୀତ ଓ ସାହିତ୍ୟ ମଧ୍ୟ ସମ୍ଭବ ହେଉ ନଥାନ୍ତା । ଏଗୁଡ଼ାକ ନ ଥିଲେ ବଡ଼ ଅବଲୀଳାକ୍ରମେ ମଣିଷର କାଳଟା ଅତିବାହିତ ହୋଇ ଯାଉଥାନ୍ତା ସତ, ମାତ୍ର ସେହି କାଳ ତା'ର ଜୀବନ ଉପରେ ପ୍ରକୃତରେ ଏକ ଦୁର୍ବହ ଭାର ହୋଇ ହିଁ ରହିଥାନ୍ତା, କାଳ ସଦୃଶ ତା'ର କଣ୍ଠକୁ ରୁଦ୍ଧ କରି ରଖିଥାନ୍ତା ।

ତେଣୁ ଆମର ଏ ସଂସାର ହେଉଛି ପ୍ରକୃତରେ ଜଣେ ଚିତ୍ରକରର ସଂସାର, ଆମର ଏହି ବଜାର ହେଉଛି ଭଳି ଭଳି କେତେ ରଙ୍ଗରେ ସଜା ହୋଇଥିବା ଏକ ବଜାର ଏବଂ ସେଥିରେ ସବୁଠାରୁ ଅସଲ ବାହାଦୁରୀ ହେଉଛି ଏହି ମଣିଷର, ଏହି ଚିତ୍ରକର ମଣିଷର, ଏହି କଳାକାର ମଣିଷର, ଏହି ସଙ୍ଗଲୋଭୀ ବୈଚିତ୍ର୍ୟଲୋଭୀ ମଣିଷର ।

ତା' ଭିତରେ ଭଗବାନ, ଅର୍ଥାତ୍ ତାକୁ ଜୀବନରେ ପ୍ରେରିତ କରି ନେଉଥିବା ସେହି ଅନ୍ତରଙ୍ଗତମ ପ୍ରେରଣାଟି ସମ୍ଭବତଃ ଅତ୍ୟନ୍ତ ବୈଚିତ୍ର୍ୟମୟ ହୋଇଥିବାରୁ ହିଁ ମଣିଷର ଆଖି, ମଣିଷର ରୁଚି ଓ ମଣିଷର ଆଗ୍ରହ ଏବଂ ଆଘ୍ରାଣଗୁଡ଼ାକ ମଧ୍ୟ ପ୍ରକୃତରେ ଏତେ ବୈଚିତ୍ର୍ୟମୟ ହୋଇ ରହିଛି । ବେଳେ ବେଳେ ମଣିଷ ହୁଏତ ଏକ ଶ୍ଳେଷର ପ୍ରୟୋଗ କରି ଭଗବାନଙ୍କୁ ମାୟାବୀ ବୋଲି କହେ ବା ମାୟାଧାରୀ ବୋଲି କହେ; ମାତ୍ର ଆପଣାର ଗଭୀରତମ ପରିଚୟର ଚିହ୍ନା ଭୂଇଁଟିରେ ସେ ତାଙ୍କୁ ପ୍ରକୃତରେ ଲୀଳାଧର ବୋଲି ଜାଣେ, ଲୀଳାମୟ ବୋଲି ଜାଣେ । ସେଥିଲାଗି ଜାଣିଶୁଣି ସେ ସେହି ଲୀଳା ମଧ୍ୟରେ ଗୋଟିଏ ନିମିତ୍ତ ହୋଇ ବାହାରିବାକୁ ସର୍ବଦା ଏଡ଼େ ଆଗଭର ହୋଇ ରହିଥାଏ । ତା'ର ଏହି ନିମିତ୍ତ ହେବାଟିର ଆଗ୍ରହ-କ୍ଷେତ୍ରରେ ରୂପ ଅଣ୍ଟେ ନାହିଁ, ରଙ୍ଗ ଅଣ୍ଟେ ନାହିଁ, ଭାବ ଅଣ୍ଟେ ନାହିଁ, ଭାଷା ଅଣ୍ଟେ ନାହିଁ, ଜନ୍ମ ଅଣ୍ଟେ ନାହିଁ, ମୃତ୍ୟୁ ଅଣ୍ଟେ ନାହିଁ । ହଁ, ଅବତାର ବି ଅଣ୍ଟେ ନାହିଁ । ଏହି ଲୀଳାଟି ସକାଶେ ହିଁ ମଣିଷର ପୋଥିରେ ସ୍ୱର୍ଗର ସଂଜ୍ଞା ବଦଳିଯାଏ, ଦୁଃଖର ସଂଜ୍ଞା ବଦଳିଯାଏ, ବିଚ୍ଛେଦ ଓ ଅଜ୍ଞାନର ସଂଜ୍ଞା ମଧ୍ୟ ବଦଳିଯାଏ ।

ଯେଉଁମାନେ ଜାତି ଭିତରେ ରହିଥାନ୍ତି, ସେମାନଙ୍କୁ ସଚରାଚର ସଜାତୀୟ ବୋଲି କୁହାଯାଇଥାଏ, ଆପଣାର ବୋଲି କୁହାଯାଇଥାଏ ଏବଂ ଯେଉଁମାନେ ଜାତି-ଆୟତନଟିର ବାହାରେ ରହିଥାନ୍ତି, ସେମାନଙ୍କୁ ବିଜାତୀୟ ବା ଅପର ବୋଲି କୁହାଯାଇଥାଏ । ଯିଏ ଠିକ୍ ମୋ'ରି ପରି ଦିଶୁଛି, ମୋ'ରି ପରି ବୋଲ ମାନୁଛି, ମୋ ସହିତ ଏକା ଦିଅଁଙ୍କୁ ପୂଜା କରୁଛି, ସେମାନେ ମୋର ସଜାତୀୟ, ମୋର ଆପଣାର । ସେମାନେ ଠିକ୍ ମୋ'ରି ଭଳି, ତେଣୁ ମୋର ଆପଣାର । ଏହି ଅନ୍ତରଙ୍ଗମାନଙ୍କ ବ୍ୟତୀତ ଆଉ ଯେଉଁମାନେ ବାହାରେ ଅଛନ୍ତି, ଅନ୍ୟ ପରି ଦିଶୁଛନ୍ତି, ଅନ୍ୟ ବୋଲ ମାନୁଛନ୍ତି ବା ଅନ୍ୟ ଦିଅଁମାନଙ୍କ ପୂଜା କରୁଛନ୍ତି, ସେମାନେ ଯେ କେବଳ ବହିରଙ୍ଗ ତା' ନୁହେଁ, ସେମାନେ ଅନ୍ୟ, ସେମାନେ ଇତର, ଅପର ଓ ବିଜାତୀୟ । ତେଣୁ ସେମାନଙ୍କୁ ଆମେ ଘରେ ପୂରାଇ ଦେବା ନାହିଁ । ସେମାନଙ୍କର ଛାଇକୁ ଆମ ଘରେ ମଡ଼ାଇ ଦେବା ନାହିଁ । ଆମେ ଯେଉଁମାନେ ଏକାଭଳି ଦିଶୁଛୁ, ନିରାପଦ ଦିଶୁଛୁ, ଗୋଟିଏ ପଲ ବା ଗୋଠ ଭିତରେ ଏକାବେଳେକେ ଗୋଟିଏ ହୋଇ ଖାପ ଖାଇଯାଇ ପାରୁଛୁ, ଆମେ ସେଇମାନେ ସମସ୍ତେ ମିଶି ଏଠି କେବଳ ଆମରି ବ୍ୟବସ୍ଥାଟିକୁ ଚଳାଇବା, କେବଳ ଆମରି ରୀତିଟିକୁ ଚଳାଇବା; ସେଇ ଗୋଟିଏ ରୀତିରେ ବସିବା, କାଣିବା, ଘୃଣା କରିବା ଓ ପ୍ରେମ କରିବା; ଆମେ ସେହି ଗୋଟିଏ ରୀତିରେ ହିଁ ଇତିହାସକୁ ଗଢ଼ିବା ଓ ଇତିହାସକୁ ଭାଙ୍ଗିବା । ସେଇ ଗୋଟିଏ ରୀତିରେ ସଂସାର ଭିତରେ ମଣିଷ ଚିହ୍ନି ବାହାରିବା, ମଣିଷ ଭିତରେ ଯୁଗକୁ ଚିହ୍ନି ବାହାରିବା ଓ ଯୁଗ ଭିତରେ ଆପଣାକୁ ଚିହ୍ନି ବାହାରିବା । ଭଗବାନ ସିନା

ଲୀଳା ପାଇଁ ସଂସାରର ରଚନା କରିଥିଲେ, ମାତ୍ର ଆମେ ଏଠାରେ କେବଳ ଆମରି ଦର୍ପଣଟା ଉପରେ ସଂସାରକୁ ପରଖି ବାହାରିବା, ଆପଣାର ଜଳାଶୟଟିକୁ ଭଲ ପାଇବାର ଦ୍ୱାହି ଦେଇ ଆମେ ଏଠୁ ସକଳ ସରିତ ଓ ସକଳ ସ୍ରୋତକୁ ବାସନ୍ଦ କରି ରଖିବା, ସାଗର ବା ପାରାବାର ଶବ୍ଦଟିକୁ ହିଁ ଆମର ଅଭିଧାନଟି ମଧ୍ୟରୁ ବାସନ୍ଦ କରି ରଖିବା । ବୈଚିତ୍ର୍ୟ ଲାଗି ସିନା ଭଗବାନ ସଂସାରଟିକୁ ବହୁବିଧ କରି ରଚନା କରିଥିଲେ, ଅର୍ଥାତ୍ ଏଠାରେ ସେ ବହୁବିଧ ହୋଇଥିଲେ, ଅନେକ ହୋଇଥିଲେ । ମାତ୍ର ଆମେ ଆମର କାନ୍ଥଗୁଡ଼ାକରୁ ହିଁ ସେହି ସଂସାରର ଆପେକ୍ଷିକ ଅବସ୍ଥିତିଟିକୁ କଳନା କରିବାରେ ଲାଗିଥିବା । ଯେଉଁଠାରେ ଜୀବନ ମୂଳତଃ ଏହିପରି ଗୋଟାଏ ଦୃଷ୍ଟିରେ ପରିଚାଳିତ ହେବାରେ ଲାଗିଥାଏ, ସେଠାରେ ସେହି ଦୃଷ୍ଟିକୁ ପ୍ରଧାନତଃ ଭୟଟା ହିଁ କାମୁଡ଼ି ଧରିଥାଏ । ସେଠାରେ ଭୟ ହିଁ ବିଚାରକ ହୋଇ ବସିଥାଏ, ଭୟ ହିଁ ପ୍ରେରଣା ଦିଏ । ସେଠାରେ ମଣିଷ ଆପଣାଠାରୁ ଆଉ ସମସ୍ତଙ୍କୁ ଅଲଗା ରଖି ଅର୍ଥାତ୍ ଆପେ ଆଉ ସମସ୍ତଙ୍କଠାରୁ ଅଲଗା ହୋଇ ରହି ଭୟର ନିରାକରଣ ସକାଶେ ହନ୍ତସନ୍ତ ପରିଶ୍ରମ କରିବାରେ ଲାଗିଯାଏ । ଏହି ଭୟ ସକାଶେ ହିଁ ସକଳ ଶାସ୍ତ୍ର, ସକଳ ଆହ୍ଲାଦ ଓ ସକଳ ଆଡ଼ମ୍ବର ସତ୍ତ୍ୱେ ଘର କିଳା ହୋଇ ରହିଥାଏ, ସକଳ ସଭ୍ୟତା ସତ୍ତ୍ୱେ ମଣିଷ ବର୍ବର ହୋଇ ରହେ, ସଂସ୍କୃତିଗତ ସକଳ ଆୟୋଜନ ଏବଂ ବିମଣ୍ଡନ ସତ୍ତ୍ୱେ ତଥାପି ସବୁ ବିକୃତ ହୋଇ ରହେ, ବଞ୍ଚିତ ଅର୍ଥାତ୍ ବର୍ଜିତ ହୋଇ ପଡ଼ିରହିଥାଏ ।

ଏକଦା ବ୍ରାତ୍ୟମାନେ ଆର୍ଯ୍ୟମାନଙ୍କର ଶାନ୍ତିଭଙ୍ଗ କରୁଥିଲେ, ତେଣୁ ଆର୍ଯ୍ୟମାନଙ୍କର ଆୟତନଗୁଡ଼ିକ ମଧ୍ୟରୁ ବ୍ରାତ୍ୟମାନେ ବାସନ୍ଦ ହୋଇ ରହିଥିଲେ । ଆର୍ଯ୍ୟମାନେ ଯଜ୍ଞ ମାନୁଥିଲେ, ବ୍ରାତ୍ୟମାନେ ଯଜ୍ଞ ମାନୁ ନ ଥିଲେ । ଆର୍ଯ୍ୟମାନେ ଯେଉଁ ଦେବତାମାନଙ୍କର ଆରାଧନା ଓ ସ୍ତୋତ୍ରଗାନ କରୁଥିଲେ, ବ୍ରାତ୍ୟମାନେ ସେହି ଦେବତାମାନଙ୍କୁ ମାନୁ ନଥିଲେ । ସମ୍ଭବତଃ ଅନ୍ୟ ଦେବତାମାନଙ୍କର ଅନ୍ୱେଷଣ କରୁଥିବାରୁ ସେମାନେ ଆର୍ଯ୍ୟମାନଙ୍କ ଦ୍ୱାରା ସ୍ୱୀକୃତ ଦେବତାମାନଙ୍କୁ ଅଯଥେଷ୍ଟ ବୋଲି ଅନୁଭବ କରୁଥିଲେ । ଆର୍ଯ୍ୟବିଧିଗୁଡ଼ିକରେ ସେମାନେ ହୁଏତ ଏକ ବୃହତ୍ତର ପରିସର ଆଣିଦେବା ଲାଗି ଇଚ୍ଛା କରୁଥିଲେ ଏବଂ ଖାସ୍ ସେଇଥିଲାଗି ହିଁ ଆର୍ଯ୍ୟମାନେ ବ୍ରାତ୍ୟମାନଙ୍କୁ ଭୟ କରୁଥିଲେ ।

ସ୍ୱୀକୃତ ଆର୍ଯ୍ୟସମାଜରେ ସେ କାଳରେ ଯେଉଁପରି ଭାବରେ ବ୍ରାତ୍ୟମାନଙ୍କୁ ବହିଷ୍କୃତ କରି ରଖାଯାଇଥିଲା, ପରବର୍ତ୍ତୀ କାଳରେ ହିନ୍ଦୁମାନେ ମ୍ଳେଚ୍ଛମାନଙ୍କୁ ମଧ୍ୟ ସେଇଭଳି ବହିଷ୍କୃତ କରି ରଖିଲେ । ଅର୍ଥାତ୍ ନାନା କାରଣରୁ ସେମାନେ ଯେଉଁମାନଙ୍କୁ

ବହିଷ୍କୃତ କରି ରଖିବାକୁ ନିରାପଦ ବୋଲି ମଣୁଥିଲେ, ଗୋଟାଏ ବର୍ଜନସୂଚକ ଶବ୍ଦ ଦେଇ ସେମାନେ ସେହିମାନଙ୍କୁ ହିଁ ମ୍ଳେଚ୍ଛ ବୋଲି କହିଲେ । ତେଣୁ ମ୍ଳେଚ୍ଛ କହିଲେ ଆମେ କେବେହେଲେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜାତିକୁ ବୁଝିବା ନାହିଁ ବା କୌଣସି ନିର୍ଦ୍ଦିଷ୍ଟ ଆଚାର ଅଥବା ନିର୍ଦ୍ଦିଷ୍ଟ ସଭ୍ୟତାକୁ ମଧ୍ୟ ବୁଝିବା ନାହିଁ । ଯେଉଁମାନେ ଅନ୍ୟ ପ୍ରକାର, ଅର୍ଥାତ୍ ଯେଉଁମାନେ ଆମଭଳି ନୁହନ୍ତି, ସେହିମାନେ ହିଁ ମ୍ଳେଚ୍ଛ । ଆପଣାର ଭୂଇଁଗୁଡ଼ାକୁ ଯଥାର୍ଥ ଭାବରେ ଆପଣାର କରି ନ ଥିବା ପର୍ଯ୍ୟନ୍ତ ମଣିଷ ବୋଧହୁଏ କାଳେ କେତେବେଳେ ଭୂଇଁଛଡ଼ା ହୋଇଯିବ ବୋଲି ଭୟ କରୁଥାଏ ଏବଂ ସେଇଥିଲାଗି ସେ ସକଳ ପ୍ରକାର ବହିଃସ୍ପର୍ଶ ଓ ସଂକ୍ରମଣକୁ ଭୟ କରୁଥାଏ । ଗୋଟିଏ ଗୋଷ୍ଠୀ ଆଉ ଗୋଟିଏ ଗୋଷ୍ଠୀକୁ ଭୟ କରୁଥାଏ, ଗୋଟିଏ ସମ୍ପ୍ରଦାୟ ଆଉ ଗୋଟିଏ ସମ୍ପ୍ରଦାୟକୁ ଭୟ କରୁଥାଏ, ଗୋଟିଏ ଦ୍ୱୀପ ଆଉ ଗୋଟିଏ ଦ୍ୱୀପକୁ ଭୟ କରୁଥାଏ । ସେତେବେଳେ ଆର୍ଯ୍ୟ ଅନାର୍ଯ୍ୟକୁ ଭୟ କରେ, ଆର୍ଯ୍ୟେତର ସକଳ ପଥକୁ ସିଏ ଅନାର୍ଯ୍ୟ ପଥ ବୋଲି ଦେଖିବାକୁ ଆରମ୍ଭ କରେ, ସେଗୁଡ଼ିକୁ ମ୍ଳେଚ୍ଛପଥ ବୋଲି ମଣି ସେଗୁଡ଼ିକରୁ ଦୂରରେ ରହିବାକୁ ଚେଷ୍ଟା କରୁଥାଏ । ଏହିଭଳି ଏକ ଅପନ୍ୟାୟରେ ପଡ଼ି ଇଉରୋପରେ ଖ୍ରୀଷ୍ଟିଆନମାନେ ଅଣଖ୍ରୀଷ୍ଟିଆନମାନଙ୍କୁ ଏକଦା ପାଗାନ୍ ବୋଲି କହୁଥିଲେ । ପାଗାନ୍‌ମାନେ କେବଳ ନରକକୁ ହିଁ ଯିବେ ବୋଲି ସେମାନେ ଆପଣାର ପାଞ୍ଜିରେ ଘୋଷଣା ବି କରିଥିଲେ । ଖ୍ରୀଷ୍ଟିଆନ ଧର୍ମ ଏହି ପୃଥିବୀକୁ ଆସିବା ପୂର୍ବରୁ ଏହି ପୃଥିବୀରେ ଯେତେ ଯିଏ ଯେଡ଼େ ବଡ଼ ହୋଇଥାଉ ପଛକେ, ସିଏ ଯେ କେବଳ ପାଗାନ୍ ବା ଧର୍ମହୀନ ହୋଇ ରହିଥିଲା, କାରଣ ସେ ଖ୍ରୀଷ୍ଟିଆନ୍ ନ ଥିଲା ଏବଂ ତେଣୁ ତାକୁ କଦାପି ମୃତ୍ୟୁ ଅନ୍ତେ ସ୍ୱର୍ଗଭୋଗ ମିଳିବ ନାହିଁ ବୋଲି ଏକଦା ଖ୍ରୀଷ୍ଟିଆନ ଗୁରୁମାନେ କେଡ଼େ ଦମ୍ଭରେ କହି ବୁଲୁଥିଲେ । ଏହି ଦୁର୍ଯୁକ୍ତି ଅନୁସାରେ ଖ୍ରୀଷ୍ଟପୂର୍ବ ଗ୍ରୀସ୍‌ର ସକ୍ରେଟିସ୍ ଏବଂ ପ୍ଳେଟୋ ମଧ୍ୟ କେବଳ ନରକକୁ ହିଁ ଯାଇଥିବେ ଏବଂ ସେଇଠାରେ ଅବସ୍ଥାନ କରୁଥିବେ ବୋଲି ୟୁରୋପୀୟ ପ୍ରୋଟେଷ୍ଟାଣ୍ଟ ଧର୍ମର କେତେକ ଗୁରୁ ଗଣନା କରି ଘୋଷଣା କରି ଦେଇଥିଲେ । ଭୟରୁ ମଧ୍ୟ ଗୋଟାଏ ପ୍ରକାର ଦାମ୍ଭିକତା ଜନ୍ମଲାଭ କରିଥାଏ, ଯଥାର୍ଥ ପ୍ରତ୍ୟୟ ଓ ବିଶ୍ୱାସର ଅଭାବରୁ ମଧ୍ୟ ଭୟ ଉପୁଜିଥାଏ । ଅପରକୁ ମ୍ଳେଚ୍ଛ କହି ତାକୁ ଭୟ କରିବା ଓ ତାହାର ନରକ କାମନା କରିବା–ଇଏ ହେଉଛି ସେହିଭଳି ଏକ ଦାମ୍ଭିକତା, ଏହା ଭୀରୁର ଦାମ୍ଭିକତା, ଭୂମିସ୍ଥ ହୋଇ ନ ଥିବା ବ୍ୟକ୍ତିର ଦାମ୍ଭିକତା ।

ମୁସଲମାନ ଧର୍ମ ଅଣମୁସଲମାନମାନଙ୍କୁ କାଫେର୍ ବୋଲି କହିଛି ଏବଂ ନିଷ୍ଠାବାନ୍ ହିନ୍ଦୁ ଓ ହିନ୍ଦୁ ସମ୍ପ୍ରଦାୟମାନେ ବହିଃସ୍ଥ ଅନ୍ୟମାନଙ୍କୁ ଯବନ ବୋଲି କହିଛନ୍ତି । ଯବନ ହେବାର ଅର୍ଥ ଜାତି ଭିତରୁ ବହିଷ୍କୃତ ହୋଇ ରହିବା, ଜାତି ଦ୍ୱାରା ଅସ୍ୱୀକୃତ

ହୋଇ ରହିବା । ଏହି ଯବନମାନେ କାଳେ କାଳେ ଶୂଳୀରେ ଚଢ଼ିଛନ୍ତି, ଫାଶୀରେ ଝୁଲିଛନ୍ତି, ନିନ୍ଦିତ ହୋଇଛନ୍ତି, ଉପହସିତ ହୋଇଛନ୍ତି । ଯବନମାନେ ଧର୍ମସଭାର ବାହାରେ ରହିଛନ୍ତି ଏବଂ ସେହି ବାହାରେ ରହି ହିଁ ସେମାନେ ଯୁଗ ପ୍ରତି ତଥା ଯୁଗାଭିପ୍ରାୟର ଆବଶ୍ୟକତା ପ୍ରତି ଆପଣାର ଅବଦାନମାନ ଦେଇ ଯାଇଛନ୍ତି । ସେମାନେ ମନ୍ଦିରର ବାହାରେ ରହି ଠାକୁରଙ୍କ ଆରାଧନା କରିଛନ୍ତି, ତେଣୁ ମନ୍ଦିରର ବାହାରେ ବାହାରେ ଠାକୁରଙ୍କୁ ଦେଖିଛନ୍ତି । ମନ୍ଦିରର ବାହାରେ ରହି ଚନ୍ଦ୍ର ଓ ତପନ ସହିତ ଏକତ୍ର ହୋଇ ଭଗବାନଙ୍କର ଆରତି କରିଛନ୍ତି, ଭଗବାନଙ୍କର ବନ୍ଦନା ଗାନ କରିଛନ୍ତି । ଯବନମାନେ ନିର୍ଯାତିତ ହୋଇଛନ୍ତି ଓ ଜାତିସ୍ମମାନେ ସବୁ ଭୋଗତକ ଖାଇବା ଲାଗି ଅଧିକାରୀ ବୋଲି ଘୋଷିତ ହୋଇଛନ୍ତି ସତ, ତଥାପି ଯୁଗେ ଯୁଗେ ଯବନ ରହିଛନ୍ତି । ସ୍ୱେଚ୍ଛାକୃତ ଭାବରେ ସେହି ଯବନ ହୋଇ ରହିବାକୁ ହିଁ ସେମାନେ ଆପଣାର ମାର୍ଗ ବୋଲି ବାଛି ନେଇଛନ୍ତି । ଏହି ସଂସାରର ନିଦ ଭଙ୍ଗାଇବାରେ ସେମାନେ ବାର ବାର ନିମିତ୍ତ ହୋଇ କାର୍ଯ୍ୟ କରିଛନ୍ତି । ତଥାକଥିତ ଅନୁଗତ ଓ ଅନ୍ତର୍ଗତମାନଙ୍କ ତୁଳନାରେ ସମ୍ଭବତଃ ଏହିମାନେ ହିଁ ଯୁଗର ଜୀବନରେ ଅଧିକରୁ ଅଧିକ ପ୍ରସାର ଆଣିଦେବାରେ ଅଧିକ ସହାୟତା କରିଛନ୍ତି । ଜଳାଶୟକୁ ନୂତନ ସ୍ରୋତର ସ୍ପର୍ଶ ଦେବାରେ ସେଇମାନେ ସବୁଠାରୁ ଅଧିକ କାର୍ଯ୍ୟ କରିଛନ୍ତି । ଆମର ବଂଶାନୁକ୍ରମିକ ବୈଦ୍ୟ–ଶାସ୍ତ୍ରଗୁଡ଼ାକ ଆମକୁ ଆପଣାର ଚିହ୍ନା ଘରଟି ମଧ୍ୟରେ ନିବୁଜ ଓ ନିରାପଦ ହୋଇ ବସିବା ଲାଗି ଯାବତ ପରାମର୍ଶ ଓ ପ୍ରରୋଚନା ଦେଇ ଆସିଥିବା ସମୟରେ ସମ୍ଭବତଃ ସେହି ଯବନମାନେ ହିଁ ଝଡ଼ପରି ଆସି ଆମର ସବୁ ଝରକା ଓ କବାଟଗୁଡ଼ାକୁ ଏକାବେଳେକେ ଖୋଲିଦେଇ ଯାଇଛନ୍ତି । ଆମକୁ ଆଲୋକ ଏବଂ ପବନର ସ୍ପର୍ଶ ଆଣି ଦେଇଛନ୍ତି । ବାଡ଼ ଭାଙ୍ଗିବାର ବିଦ୍ୟାଟିକୁ ଆମକୁ ଶିଖାଇ ଦେଇଛନ୍ତି । ମନୁଷ୍ୟ-ଚେତନାକୁ ସଂପ୍ରସାରିତ କରିଦେବାର ଭୂମିଗୁଡ଼ାକୁ ଏହିମାନେ ତିଆରି କରିଛନ୍ତି ଏବଂ ଜାତିରେ ଯବନ ହୋଇ ରହି ହିଁ ଏମାନେ ଏସବୁ କଥା କରିଛନ୍ତି ।

ତା ୦୩।୦୨।୧୯୭୫ରିଖ



# ଦୁଇ

ଆମ ସଂସାରରେ ଏପରି ଅନେକ ମଣିଷ ଅଛନ୍ତି, ଯେଉଁମାନେ କି ଆପଣାର ଜାତିଟାକୁ ଲୁଚାଇବା ଲାଗି ନାନାପ୍ରକାର ଚେଷ୍ଟା କରନ୍ତି । ପୁଣି ଏଭଳି ଅନେକ ଲୋକ ମଧ୍ୟ ଅଛନ୍ତି, ଯେଉଁମାନେ ଆପଣାର ଜାତିଟାକୁ ଦେଖେଇ ହେବାଲାଗି ଆଦୌ କୌଣସି ପ୍ରକାରର ପ୍ରୟାସର ତ୍ରୁଟି କରନ୍ତି ନାହିଁ । ଏହି ଉଭୟ ଶ୍ରେଣୀର ମଣିଷ ଭାରତବର୍ଷରେ ଯେମିତି ଅଛନ୍ତି, ସେହିପରି ଭାରତ ବାହାରେ ମଧ୍ୟ ଅଛନ୍ତି । ହଠାତ୍ ବାହାରୁ ଥାଇ ବିଚାର କଲାବେଳକୁ ଏମାନେ ପରସ୍ପରର ବିପରୀତ ଓ ପରସ୍ପରଠାରୁ ଅଲଗା ବୋଲି ଯେତେ ଦେଖା ଯାଉଥାଆନ୍ତୁ ପଛକେ, ଏମାନଙ୍କର ମଞ୍ଜଭିତରେ ଯେ ଏମାନେ ସେହି ଗୋଟିଏ ବର୍ଗର ହୋଇ ରହିଥାନ୍ତି ଓ ଗୋଟିଏ ତୁଠରେ ହିଁ ଧୋବାଗଣ୍ଡି ହୋଇ ପଡ଼ିଥାନ୍ତି, ସେକଥା ବୁଝିବା ଲାଗି ଆମକୁ କଦାପି ଖୁବ୍ ବେଶୀ ସମୟ ଲାଗେ ନାହିଁ ।

ଆପଣାର ଜାତିକୁ ସତେ ଅବା ଗୋଟାଏ ଲାଜପରି ମନେକରି କିଏ ବଂଶାନୁକ୍ରମେ ସାମଲ ହୋଇ ରହି ଆସିଥିଲେ ମଧ୍ୟ ପ୍ରାଣପଣେ ଶାସମଲ ହେବାକୁ ଚେଷ୍ଟାକରେ; ଆଉ କେଉଁମାନେ ମାହାନ୍ତିରୁ ମାଇତି ଅଥବା ଜେନାରୁ ଜାନା କିମ୍ବା ବାଉରିରୁ ବାଉ୍ରି ହୋଇଗଲେ ସତେଅବା ପରିତ୍ରାଣ ପାଇଯିବା ପରି ଅନୁଭବ କରନ୍ତି । ଏହି ନ୍ୟାୟରେ ପରିଡ଼ା ପରିଜା ବୋଲାନ୍ତି, ମହାରଣା ମାହାନ୍ନା ହୁଅନ୍ତି, ଖଣ୍ଡେଇତ କ୍ଷତ୍ରିୟ ହୁଅନ୍ତି, ପୁଣି ଅକରଣ କରଣ ହେବାଲାଗି ସାଧନା କରି ବସନ୍ତି । କିଏ କରଣ ଘରେ ଝିଅଦେଇ କରଣ ହୁଏ, କିଏ କରଣ ଘରୁ ଝିଅଟିଏ ନେଇ ବି କରଣ ହୁଏ । ଆଉ କିଏ ଧନସମ୍ପତ୍ତି ବଢ଼ାଇ କରଣ ହୁଏ । ଅର୍ଥାତ୍ ଧନସମ୍ପତ୍ତି ବଢ଼ାଇ କ୍ରମେ ତାହାରି ବଳରେ ସେ ଅନ୍ୟ ଗୋଠ ଭିତରେ ପଶିବାର ଓ ଅନ୍ୟ ପଙ୍ଗତରେ ଯାଇ ବସିବାର ଅନୁମତିଟିକୁ ପାଇଯାଏ । ତା'ପରେ ସିଏ ଆଉ ତା'ର ଆଗର ଜ୍ଞାତିଭାଇଙ୍କ ସହିତ ବସିବାକୁ ପସନ୍ଦ କରେ ନାହିଁ, ଆପଣା ଭିତରେ କେଉଁଠି କେଉଁ ନ୍ୟୂନତାକୁ ଲୁଚାଇବାର ଫନ୍ଦିରେ ପଡ଼ି ସେ ସେମାନଙ୍କୁ ଅର୍ଥାତ୍ ଆପଣାର ପୂର୍ବ ସଙ୍ଗତଟାକୁ ଆପଣାଠାରୁ ନ୍ୟୂନ ବୋଲି ଦେଖିବାକୁ ଲାଗେ ଓ ତେଣୁ ଉଚ୍ଚତର ସଙ୍ଗତକୁ ମନ ବଳାଏ । ସେହି ସଙ୍ଗତର ଲାଙ୍ଗୁଳଟିକୁ ଧରି

ସେ ସତେଅବା ସ୍ୱୟଂ ଉଚ୍ଚତର ଆଉ କୌଣସି ଏକ ମଞ୍ଚାକୁ ଉଠିଯାଇ ପାରିବ ବୋଲି ଲୋଭ ରଖିଥାଏ । ଆପଣାର ସମସ୍ତ ଧନ, ଅର୍ଜନ, ବିଦ୍ୟା ଓ ବୁଦ୍ଧିକୁ ବାଜି ରଖି ସେହି ଲୋଭଟିକୁ ଚରିତାର୍ଥ କରିବାରେ ହିଁ ନିୟୋଜିତ ହୋଇ ରହିଥାଏ ।

ଏମାନଙ୍କର ଓଲଟା ବାଗର ଆଉ ଗୋଟିଏ କିସମର ମଣିଷ ମଧ୍ୟ ରହିଛନ୍ତି । ଆମ ନିଜ ସମାଜରେ ଅଛନ୍ତି, ଆମ ବାହାରେ ରହିଥିବା ଆହୁରି ଅନ୍ୟାନ୍ୟ ସମାଜରେ ମଧ୍ୟ ଅଛନ୍ତି । ସେମାନେ ଯୁଆଡ଼େ ଯାଆନ୍ତି, ଆପଣାର ଜାତିଟାକୁ ସାଙ୍ଗରେ ନେଇ ଯାଆନ୍ତି, ଆପଣାର ମୁଣ୍ଡ ଉପରେ ଆପଣାର ଜାତିଟାକୁ ନେଇ ଜୁଡ଼ାପାରି ରଖିଥାନ୍ତି । ଜାତିଟାକୁ ଛାଡ଼ିଦେଲେ ସତେ ଯେପରି ସେମାନଙ୍କ ପାଖରେ ଆପଣାର ଅନ୍ୟ କୌଣସି ପରିଚୟ ଯେ ନାହିଁ, ଆପଣାର ହାବଭାବ ଓ ଆଚରଣରୁ ସେମାନେ ଏହି କଥାଟିକୁ ଅତ୍ୟନ୍ତ ପରିଷ୍କାର ଭାବରେ ଧରା ପକାଇ ଦେଇଥାନ୍ତି । ମଣିଷର ପଂକ୍ତିରେ ବସିବା ପୂର୍ବରୁ ଏମାନେ ଜାତିର ପଂକ୍ତି ଭିତରେ ଯାଇ ବସିଥାନ୍ତି । ଆପଣାର ଜାତିଟା ଯେ କିପରି ମହାଭାରତ ଯୁଗରେ ମଧ୍ୟ ଥିଲେ, ଏହି ଜାତିର କଥାଟା ଯେ କିପରି ମନୁସଂହିତାରେ ମଧ୍ୟ ଲେଖାହୋଇ ରହିଛି, ବା କଳିଯୁଗ ଆରମ୍ଭ ହେବା ପୂର୍ବରୁ ଅମୁକ ଯୁଗର ଅମୁକ ଋଷି କିପରି ଆଦେଶପ୍ରାପ୍ତ ହୋଇ ଆପଣାର ଔରସରୁ ଜଣେ କ୍ଷତ୍ରିୟ କନ୍ୟାର ଗର୍ଭରୁ ଏହି ଜାତିର ସର୍ବପ୍ରଥମ ପୁରୁଷଟିକୁ ଭୂମିଷ୍ଠ କରାଇଥିଲେ, ସେମାନେ କେତେ କେତେ ଶାସ୍ତ୍ର ଭିତରୁ ଏହି ସାରକଥାଗୁଡ଼ାକୁ ଛାଣିଛୁଣି ଆୟତ୍ତ କରି ରଖିଥାନ୍ତି । ଏହିସବୁ ଐତିହାସିକ ଉପାଦାନ ଉପଲବ୍ଧ ହୋଇପାରିବା ପରେ ସେମାନଙ୍କର ଜାତିଟିର ଗରିଷ୍ଠତା ବା ବରିଷ୍ଠତା ବିଷୟରେ ଯେ କାହାର ଆଦୌ କୌଣସି ସନ୍ଦେହ ରହିବା ଉଚିତ ନୁହେଁ, ଏହିଭଳି ଏକ ଦୃଷ୍ଟିମୁଦ୍ରା ବହନ କରି ସେମାନେ ସଂସାର ମଧ୍ୟରେ ବିଚରଣ କରୁଥାନ୍ତି ।

ବର୍ତ୍ତମାନ ଆମେ ଯାହାକୁ ରାଜସ୍ଥାନ ବୋଲି କହୁଛୁ, ମୋଗଲମାନଙ୍କ ଅମଳରେ ଭାରତବର୍ଷର ସେହି ଅଞ୍ଚଳଟିକୁ ରାଜପୁତାନା କୁହାଯାଉଥିଲା । ରାଜପୁତାନାର ଇତିହାସ ହେଉଛି ରାଜପୁତମାନଙ୍କର ଇତିହାସ । ମୋଗଲମାନଙ୍କର ଅମଳ ପୂର୍ବରୁ ଏହି ରାଜପୁତମାନେ ଯେ କିପରି ଆକାରରେ କେଉଁଠି ଥିଲେ, କେଉଁଠି କ'ଣ ସବୁ କରୁଥିଲେ, ଭାରତୀୟ ବର୍ଣ୍ଣାଶ୍ରମ ଧର୍ମରେ ଏମାନଙ୍କ ଲାଗି ପ୍ରକୃତରେ କେଉଁ ଥାକ ବା କେଉଁ ଖୋପଟି ନିର୍ଦ୍ଧାରିତ ହୋଇରହିଥିଲା, ସେହି ସମ୍ବନ୍ଧରେ ବିଶେଷଜ୍ଞ ଇତିହାସକାରମାନଙ୍କ ଭିତରେ ଆଜି ମଧ୍ୟ ମତଭେଦ ରହିଛି । ମାତ୍ର ଆଜି ସେହି ରାଜପୁତମାନଙ୍କର ବଂଶଧରମାନେ ରାଜସ୍ଥାନ ଓ ଉତ୍ତର ପ୍ରଦେଶର ନାନା ଅଞ୍ଚଳରେ ଖେଳେଇ ହୋଇ ବାସ କରୁଛନ୍ତି । ଅତୀତର ଖାନଦାନୀ ଅମଳରେ ଏମାନଙ୍କର ବୃତ୍ତି ଯାହା ଥାଉ ପଛକେ, ବର୍ତ୍ତମାନ ଏମାନେ

ଅ ଠାରୁ ଅଂ ବା ଅଃ ପର୍ଯ୍ୟନ୍ତ ଯାବତୀୟ ବୃତ୍ତିକୁ ଅବଲମ୍ବନ କରି ଜୀବିକା ନିର୍ବାହ କରୁଛନ୍ତି । କିନ୍ତୁ ଆପଣାର ଜାତି ବିଷୟରେ କଥା ପକାଇଲାବେଳେ ଏମାନେ ନିଶ ନ ଫୁଲାଇ ସତେ ଯେପରି କିଛି ହେଲେ କହିବାକୁ ସମର୍ଥ ହୁଅନ୍ତି ନାହିଁ । ଏମାନେ ସମସ୍ତେ ନିଜକୁ ଠାକୁର ବୋଲି କହନ୍ତି, ମାତ୍ର ସେମାନଙ୍କ ଭିତରୁ କିଏ ଆପଣାକୁ ଚୌହାନ୍ ବୋଲି କହେ ତ କିଏ ଆପଣାକୁ ରାଠୋର ବୋଲି କହେ । ଅର୍ଥାତ୍, କିଏ ପୃଥ୍ୱୀରାଜଙ୍କୁ ପ୍ରପିତାମହ ବା ପଣପିତାମହ ବୋଲି ମାନେ ତ ଆଉ କିଏ ଜୟଚନ୍ଦ୍ରଙ୍କୁ ଆପଣାର ପ୍ରତିପାଦିତ ଉତ୍ସ ବୋଲି ଗ୍ରହଣ କରିଥାଏ । ଜଣେ ଆପଣାକୁ ଆଉ ଜଣଙ୍କଠାରୁ ଉଚ୍ଚତର ବୋଲି କହିବାରେ କେଡ଼େ ସରାଗ ଦେଖାଏ । କିଏ ଆପଣାକୁ ସିଧା ରାଣା ପ୍ରତାପ ସିଂହଙ୍କର ବଂଶଧର ବୋଲି ଅଭିମାନ କରେ । ପୁଣି କିଏ ଆପଣାକୁ ଅସଲ ଯାଦବବଂଶଜ ବୋଲି କହେ । ଅର୍ଥାତ୍ ସିଧା ଦ୍ୱାପରଯୁଗରୁ ସେହି ଶ୍ରୀକୃଷ୍ଣଙ୍କ ପାଖରୁ କଳିଯୁଗ ଯାଏ ଲମ୍ବିଆସିଥିବା ଏକ ବଂଶର ସିଂହ-ଶାବକ ବୋଲି କହିବାକୁ ଚେଷ୍ଟାକରେ । ସ୍ୱୟଂ ଶ୍ରୀକୃଷ୍ଣ ଯେ ସଂସାର ଛାଡ଼ିବା ପୂର୍ବରୁ ଯଦୁବଂଶର ସମୂଳ ନିଧନ ଲାଗି ସକଳ ପ୍ରକାରର ବ୍ୟବସ୍ଥା କରିଦେଇ ଯାଇଥିଲେ, ସେ କଥାଟିକୁ ସିଏ ସତେ ଅବା ଆଦୌ ଶୁଣି ନ ଥିବାପରି ସଙ୍କେତ ଦେଇଥାଏ ।

ସଂସାରରେ ବୁଲି ଏଗୁଡ଼ାକୁ ଶୁଣୁଥିବା ସମୟରେ ପ୍ରକୃତରେ ମନେ ମନେ ଭାରି ହସ ମାଡ଼ିବା ପରି ଲାଗେ । ଆମ ପ୍ରତ୍ୟେକଙ୍କ ଭିତରେ ଯେଉଁଠି ଯବନଟିଏ ବସି ରହିଛି, ଯେଉଁଠି ମଣିଷଟିଏ ଆପଣାର ଛାଞ୍ଚଟିକୁ ଆପେ ଗଢ଼ିବ ବୋଲି ଆଗ୍ରହ ନେଇ ବସିଛି, ସେଇଠି ପ୍ରକୃତରେ ଭାରି ହସ ମାଡ଼ିବା ପରି ଲାଗୁଥାଏ । ଆମ ଭିତରେ ଯେଉଁ ଅଂଶଟି ଏ ଜାତିର ବା ସେ ଜାତିର ଖଣ୍ଡିଆଟିକୁ ଦେହଯାକ ବେଢ଼ାଇ ହୋଇ ବିମଣ୍ଡିତ ହୋଇ ବସିଛି, ଆପଣାର ଏ ଜାତିଟିକୁ ଲୁଚାଇ ରଖିବାକୁ ବା ସେ ଜାତିଟିକୁ ଦେଖେଇ ହେବାକୁ ନସରପସର ହେଉଛି, ସେହି ଅଂଶଟିର ହସିପାରିବା ଲାଗି ଆଦୌ କୌଣସି ଜୁ' ନ ଥାଏ ସତ, ମାତ୍ର ଏସବୁ ଅନୁମଣ୍ଡନ ସତ୍ତ୍ୱେ ଆମ ସମସ୍ତଙ୍କ ଭିତରେ ଯେଉଁଠି ମଣିଷଟିଏ ସତେଅବା ସୂର୍ଯ୍ୟମୁହାଁ ହୋଇ ବାଟ ଚାଲି ବାହାରିଥାଏ, ଗୋଟିଏ ନିର୍ଦ୍ଦିଷ୍ଟ ଦେଶ, ନିର୍ଦ୍ଦିଷ୍ଟ ବଂଶ ବା ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ହିଁ ପାଦ ରଖିଥିଲେ ମଧ୍ୟ ଯେଉଁଠି ସେ ତଥାପି କେତେ ନା କେତେ ଆକାଶ ଓ କେତେ ନା କେତେ ପବନ ଭିତରକୁ ଶାଖା ପ୍ରଶାଖା ମେଲାଇ ଦେବାକୁ ବାହାରିଯାଏ, ସେଇଠି ମଣିଷର ଜାତିଟାକୁ ନେଇ କରାଯାଉଥିବା ଏହି ଅତିଫନ୍ଦାଗୁଡ଼ାକ ଆମକୁ ପ୍ରକୃତରେ ଭାରି ହାସ୍ୟାସ୍ପଦ ପରି ମନେ ହେଉଥାଏ । ଆମରି ଆଖି ଆଗରେ ସେଠି ସତେଅବା କେତେ କେତେ ବାଡ଼ ଭାଙ୍ଗିଯାଉଥିବା ପରି ମନେ ହେଉଥାଏ; କେତେ କେତେ ପାଚେରୀ ଭୁଷୁଡ଼ି ପଡୁଥାଏ ।

କେତେ କେତେ ପରମ୍ପରା, କେତେ କେତେ କୂଳ ଏବଂ କୂଳୀନତା ସତେଅବା ଅର୍ଥହୀନ ହୋଇ କୁଆଡ଼େ ମିଳାଇ ଗଲାପରି ମନେ ହେଉଥାନ୍ତି । ଭୂଗୋଳର ଗାରଗୁଡ଼ାକ ନିଭିଯାଉଥିବା ପରି ଲାଗନ୍ତି, ଇତିହାସର ରତ୍ନ-ସିନ୍ଦୂକଗୁଡ଼ାକ ଗୋଟାସୁଦ୍ଧା ଫିଟିଯାଇ ସତେଅବା ଗୋଟିଏ ଅବିଚ୍ଛିନ୍ନ ପଥରେ ହିଁ ପରିଣତ ହୋଇଯାଉଥାନ୍ତି ଏବଂ ସେହି ପଥରେ ଆମେ ସମସ୍ତେ ହିଁ ଚାଲିବାରେ ଲାଗିଥାଉ । ସାନ-ବଡ଼, ଜାତିଆ-ଅଜାତିଆ, ଆମେ ସମସ୍ତେ ତାହାରି ଉପରେ ଚାଲିବାରେ ଲାଗିଥାଉ । ସବୁ ଜାତି ମିଶି ସତେଅବା କେଉଁ ପରମ ସାଥୀର ଇଙ୍ଗିତ ମାନି ପରସ୍ପରର ପଥସାଥୀ ହୋଇ ବାହାରିଥାଉ ।

ଆମ ସଂସାରୀମାନଙ୍କର ଜୀବନରେ ଯେମିତି, ସନ୍ୟାସୀମାନଙ୍କର ଜୀବନରେ ମଧ୍ୟ ଠିକ୍ ସେମିତି । ଯେଉଁମାନେ ସଂସାରକୁ ସର୍ବସ୍ୱ ବୋଲି ଗ୍ରହଣ କରି ବାଟ ଚାଲିଛନ୍ତି ଏବଂ ସେଇଠି ଛନ୍ଦି ହୋଇ ଯିବାକୁ ଆପଣାର ସର୍ବଶ୍ରେୟ ବୋଲି ଗ୍ରହଣ କରି ନେଇଛନ୍ତି, ତାଙ୍କ ଭିତରୁ ଦଳେ ଜାତିର ଭିଆଣ କରିଛନ୍ତି ତ ଆଉ ଦଳେ ଜାତି ଭାଙ୍ଗିଛନ୍ତି । ଦଳେ ବାଡ଼ ବସାଇଛନ୍ତି ତ ଆଉ ଦଳେ ବାଡ଼ ଉଠାଇଛନ୍ତି । ଦଳେ ଗାର ଟାଣି ଭୂଗୋଳ ବତାଇଛନ୍ତି, ଇତିହାସ ବଖାଣିଛନ୍ତି ଓ ରାଜନୀତିରେ ସୂତ୍ର-ନିରୂପଣ କରିଛନ୍ତି ଓ ଆଉ ଦଳେ ଭୂଗୋଳ ବହିରୁ ଗାରଗୁଡ଼ାକୁ ନିଭାଇ ଦେବାକୁ ବାହାରିଛନ୍ତି, ଇତିହାସ ଭିତରେ ନାନାଜାତି ନାନା ଫୁଲର ସୁଗନ୍ଧକୁ ବାରି ପାରିଛନ୍ତି ଓ ରାଜନୀତିକୁ ଏକ ମହାକୌଟୁମ୍ବିକ ଜୀବନ-ନୀତି ତଥା ଜୀବନ-ଗତିର ସୂତ୍ର ରୂପେ ଆବିଷ୍କାର କରିବାକୁ ଚେଷ୍ଟା କରିଛନ୍ତି । ସନ୍ୟାସୀମାନେ ବି ଏସବୁ କିଛି କମ୍ କରି ନାହାନ୍ତି । ସଂସାରର ବନ୍ଧନ ଛିଡ଼ାଇ ଏମାନେ ଆଉ କୁଆଡ଼େ ବାହାରି ଯାଇଛନ୍ତି ସିନା, କିନ୍ତୁ ଯୁଆଡ଼େ ଯାଇଛନ୍ତି, ସେଠାରେ ନାନା ଜାତି ଓ ନାନା ଭେଦର ମଞ୍ଜିକୁ ବିଞ୍ଛି ବିଞ୍ଛି ଯାଇଛନ୍ତି । ନାନା ବାଡ଼ ବସାଇଛନ୍ତି, ନାନା ଭେକର ଭିଆଣ କରିଛନ୍ତି । ଧର୍ମକୁ ନେଇ ସମ୍ପ୍ରଦାୟ ଗଢ଼ାଯାଇଛି, ସମ୍ପ୍ରଦାୟର ସତକଗୁଡ଼ାକ ପରସ୍ପର ସହିତ ଅନୁକ୍ଷଣ ଯୁଦ୍ଧରତ ହୋଇ ରହିଛନ୍ତି । ଆମ ସମାଜରେ ରହିଥିବା ଜାତିଭେଦ ଏବଂ ଜାତିଦ୍ୱେଷର ମଞ୍ଜିଗୁଡ଼ାକୁ ହିମାଳୟ ଯାଏ ବି ପ୍ରସାରି ଦିଆଯାଇଛି । ତେଣୁ ମଣିଷ ଯାହାର ଅନ୍ୱେଷଣ କରି ସଂସାର ତ୍ୟାଗ କରିଯାଇଥିଲା, ସିଏ ତାକୁ ଆଦୌ ପାଇପାରି ନାହିଁ, ବରଂ ସେ ଏଠାରେ ଯେଉଁ ପଙ୍କ ଓ କାଦୁଅ ଭିତରେ ଅସନା ହୋଇ ବାଲୁରା ହୋଇ ରହିଥିଲା, ସେଠାରେ ମଧ୍ୟ ସିଏ ସେହି ଅସନାଗୁଡ଼ାକୁ ନେଇ ଖେଳାଇ ଦେଇଛି, ଏହି ଜାଗାଟିର ଜୀବାଣୁଗୁଡ଼ିକ ଦ୍ୱାରା ସିଏ ସେହି ଜାଗାଟିକୁ ମଧ୍ୟ ସଂକ୍ରାମିତ କରି ପକାଇଛି ।

ମାତ୍ର ସେହି ସନ୍ନ୍ୟାସୀମାନଙ୍କ ଭିତରେ ଏମିତି ଆଉ ଦଳେ ବି ସବୁ ଯୁଗରେ ରହି ଆସିଛନ୍ତି, ଯେଉଁମାନେ କି ସମ୍ପ୍ରଦାୟ ଭିତରେ ରହି ମଧ୍ୟ ତଥାପି ସମ୍ପ୍ରଦାୟ ଭିତରେ

ବାନ୍ଧି ହୋଇପଡ଼ି ନାହାନ୍ତି । ଭେକଟିଏ ଗ୍ରହଣ କରି ମଧ୍ୟ ତଥାପି କେବେହେଲେ ଭେକସର୍ବସ୍ୱ ହୋଇଯାଇ ନାହାନ୍ତି । ସେମାନେ ସନ୍ନ୍ୟାସୀ ହୋଇ ମଧ୍ୟ ତଥାପି ଆମର ଏହି ସଂସାରଟାକୁ ବି ନୂଆ ଧାରାରେ ଗଢ଼ିବା ଲାଗି ଅନୁରାଗ ଦେଖାଇଛନ୍ତି, ସଂସାରଟିକୁ ଏଠି ସମସ୍ତଙ୍କର ଘର ପରି କରି ତିଆରି କରିବାର ଆଗ୍ରହ ଦେଖାଇଛନ୍ତି । କେତେ କେତେ ମାଳିକୁ ଗୋଟିଏ ସୂତାରେ ମାଳାଟିଏ କରି ବାନ୍ଧି ରଖିବାର ପ୍ରୟାସ କରିଛନ୍ତି । ଜାତି ଓ ଜାତିଆଣ ଭିଆଣଗୁଡ଼ାକୁ ତାଳ କରି ଧରି ଅସଣୁଣା ମଣିଷ ଯେତେ ଯେଉଁଠି ବାଡ଼ ବସାଇ ଭାଗ ବାଣ୍ଟି ସଂସାରଟାକୁ ଅସୁନ୍ଦର କରି ପକାଇବାର ଫିସାଦ କରିବାକୁ ଯାଇଛି, ସେମାନେ ସେଗୁଡ଼ାକୁ ସିଧା ଅସ୍ୱୀକାର କରିଛନ୍ତି । ସେମାନେ ସଂସାରଟିକୁ କେଉଁ ସମଗ୍ରତା ଭିତରେ ଓ କେଉଁ ନୂଆ ଆଖିରେ ଦେଖି ପାରିଛନ୍ତି କେଜାଣି, ସେମାନେ ଆପଣାର ଭାବଭୂମିରେ ଆମର ଏହି ପୁରୁଣା ବାଡ଼ ଗୁଡ଼ାକୁ ଆଦୌ ସହି ପାରି ନାହାନ୍ତି । ସନ୍ନ୍ୟାସୀମାନଙ୍କ ଜୀବନର ସେହି ଦିଗଟିକୁ ଓ ସେହି ପ୍ରେରଣାଟିକୁ ଆପଣାର କରିନେବା ତ ବହୁ ଦୂରର କଥା, ଆମେ ସେ ସବୁକୁ ଆମର ଧର୍ମ ଓ ଧାର୍ମିକ ଆଚରଣଟି ମଧ୍ୟରେ କୌଣସି ସ୍ଥାନ ଦେବାକୁ ମଧ୍ୟ ଅଧିକାଂଶ ସମୟରେ ଭାରି ଭୟ କରି ଆସିଛୁ । ଆମେ ସନ୍ନ୍ୟାସୀମାନଙ୍କ ଜୀବନର ନିରାପଦ ଦିଗଟିକୁ ହିଁ ଆଗତୁରା ହୋଇ ଗ୍ରହଣ କରି ନେଉଥାଉ । ଅର୍ଥାତ୍ ସେମାନଙ୍କର ପୂଜା କରୁ, ସେମାନଙ୍କଠାରୁ ଦୀକ୍ଷା ନେଉ, ସେମାନଙ୍କୁ ଅବତାର ଅର୍ଥାତ୍ ଅଲଗା ମଣିଷ ବୋଲି କହି ଭାରି କଉଶଳରେ ଉପରକୁ ଟେକି ଦେଉ, ସେମାନଙ୍କ ଲାଗି ମଠବାଡ଼ି ଖଞ୍ଜିଦେଉ, ମଉଛବ କରୁ । ଅର୍ଥାତ୍, ଗୋଟିଏ କଥାରେ କହିଲେ, ଆମେ ସେମାନଙ୍କୁ ସେମାନଙ୍କର ତିମିରଟି ଭିତରେ ରହିବାକୁ ଛାଡ଼ିଦେଉ, ଏବଂ ଏଣେ ଆମେ ନିଜେ ମଧ୍ୟ ଆପଣା ଆପଣାର ତିମିରଟି ଭିତରେ ପଡ଼ି ରହିଥାଉ । ଏହି ସଂସାରଟି ଆମରି ଦ୍ୱାରା ସଜ୍ଜିତ ବାଡ଼ଗୁଡ଼ିକ ଭିତରେ କେଡ଼େ ନିରାପଦ ହୋଇ ରହିଥାଏ ।

ମାତ୍ର ଆହୁରି ଅନ୍ୟଧାରା ଏଭଳି କେତେକ ସନ୍ଥ ଓ ସନ୍ନ୍ୟାସୀ ଥାଆନ୍ତି, ଯେଉଁମାନେ କି ଆମର ଏହି ନିରାପତ୍ତାଟିକୁ ସତେଅବା ଭାଙ୍ଗି ଦେବାକୁ ଆସନ୍ତି । ସେମାନେ ଆମକୁ ପଦାରେ ପକାଇ ଦେବାକୁ ଆସନ୍ତି । ଆମର ଅନେକ ଶୂନ୍ୟତା, ଅନେକ ଅହଙ୍କାର ଓ ଅନେକ ମଳିନତାକୁ ଧରାଇ ଦେବାକୁ ଆସନ୍ତି । ଆମେ ଧରା ପଡ଼ିଯାଉ ସିନା, ମାତ୍ର ତେଣେ ଆପଣାର ଅନ୍ତଃଜୀବନରେ ସତେଅବା ଗୋଟିଏ ପାଦ ଅଗ୍ରସର ହୋଇଯାଉ । ଯୁଗର ଏକାଧିକ ରୁଦ୍ଧ ଦ୍ୱାର ଉନ୍ମୋଚିତ ହୋଇଯାଏ, ଆମେ ନୂତନ ଭାବରେ ନୂତନ ରଙ୍ଗରେ ମୁକୁଳିତ ହୋଇଉଠୁ । ସେମାନେ ଆମର ଜାତିତ୍ୱଗୁଡ଼ାକୁ କୁଆଡ଼େ ଉଡ଼ାଇ ନିଅନ୍ତି, ଜାତିତ୍ୱର ସକଳ ବାଡ଼ ମଧ୍ୟରୁ ଅତ୍ୟନ୍ତ ଅନ୍ତରଙ୍ଗ ଆହୁରି କେତେ କୁଆଡ଼କୁ ଆମକୁ ହୁଡ଼ାଇ ନେଇ ଯାଆନ୍ତି ।

କବୀର ସନ୍ଥ ଥିଲେ, କବୀର ସନ୍ନ୍ୟାସୀ ଥିଲେ । ମାତ୍ର ସିଏ କେଉଁ ଜାତିର ଲୋକ ଥିଲେ ? ଧର୍ମଦୀକ୍ଷା ଦେଇ ସେ ଆମକୁ ଏହି ଚିହ୍ନା ସଂସ୍କାରଗୁଡ଼ିକର ନିୟତ ସଂସାରଟିରେ କିଳିଦେଇ ରଖିବାଲାଗି ପ୍ରକୃତରେ କୌଣସି ଇଚ୍ଛା କରୁଥିଲେ କି ? କବୀର ବାଡ଼ ଭାଙ୍ଗିବାକୁ ଆସିଥିଲେ । ଜାତି ଛଡ଼ାଇବା ଲାଗି ଆସିଥିଲେ । କିମ୍ବଦନ୍ତୀ ଅନୁସାରେ ସେ ଜଣେ ବିଧବା ବ୍ରାହ୍ମଣୀଙ୍କର ସନ୍ତାନ ଥିଲେ, ମୁସଲମାନ ବାପ ମାଆଙ୍କ ଦ୍ୱାରା ପ୍ରତିପାଳିତ ହୋଇଥିଲେ । ଆପଣାର ରଚିତ ଗୋଟିଏ ଭଜନରେ ସେ ଆପଣାକୁ ପ୍ରାୟ ସବୁ ଜାତିର ସହିତ ନେଇ ଯୋଡ଼ି ଦେଇଛନ୍ତି, ଅର୍ଥାତ୍ ଖାସ୍ କୌଣସି ଗୋଟିଏ ଜାତିର ନୁହନ୍ତି ବୋଲି ଅତି ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି । ସିଏ କହିଛନ୍ତି, "କୁମ୍ଭାର ହୋଇ ମୁଁ ହାଣ୍ଡି ଗଢ଼େ, ଧୋବା ହୋଇ ମହଳ କାଚେ; ମୁଁ ମୋଚି ହୋଇ ଚମଡ଼ା ପାଗ କରେ । ମୁଁ ସବୁ ଜାତି ଉଜେଇଁ ଦେଇ ସାରିଛି । ମୁଁ ତେଲି ହୋଇ ତେଲ ପେଡ଼େ । ପାପ ଓ ପୁଣ୍ୟ ମୋ'ର ଦୁଇଟି ଆସନ; ପାଞ୍ଚଣ ବାଡ଼େଇ ମୁଁ ପାଞ୍ଚ ବଳଦଙ୍କୁ ଚଳାଏ । କ୍ଷତ୍ରିୟ ହୋଇ ଖଣ୍ଡା ଧରି ମୁଁ ସକଳ ଯୋଗଯୁଗତିକୁ କାଟି ପକାଏ । ମୁଁ ଭଣ୍ଡାରି, ମୁଁ ବଢ଼େଇ, ମୁଁ ଅବଧୂତ । ଜୁଆ ଖେଳରେ ମୁଁ ଯମକୁ ହରାଇ ଦିଏ । ଶରୀରକୁ ଡଙ୍ଗା କରି ମନର ମଙ୍ଗ ଧରି ଜିହ୍ୱାର ଆହୁଲା ପକାଇ ମୁଁ ଭବସାଗର ପାରି ହୁଏ ଓ ସମସ୍ତଙ୍କୁ ପାର କରାଏ ।"

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର—ଭାରତର ସାମାଜିକ ବ୍ୟବସ୍ଥା—ଧର୍ମରେ ଏଗୁଡ଼ିକ ହେଉଛନ୍ତି ଚାରୋଟି ପାରମ୍ପରିକ ବର୍ଣ୍ଣ । ବ୍ରାହ୍ମଣ ସବୁଠାରୁ ବଡ଼, ତା'ପରେ କ୍ଷତ୍ରିୟ, ତା'ପରେ ବୈଶ୍ୟ ଓ ତା'ପରେ ଶୂଦ୍ର । ଏହି ବିଶ୍ୱାସଟିକୁ ଆମର ମନରେ ବଦ୍ଧମୂଳ କରି ବସାଇ ଦେବାକୁ ଆମ ଶାସ୍ତ୍ରରେ କେତେ ପଟୁତାର ସହିତ କେତେ ନୀତିବ୍ୟୂହର ରଚନା କରାଯାଇଛି, ଆମକୁ କେତେ ପ୍ରକାର ଧମକ ଦିଆଯାଇଛି, କେତେଭଳି ପ୍ରଲୁବ୍ଧ କରାଯାଇଛି । ପ୍ରାୟ ସାଢ଼େ ଚାରିଶହ ବର୍ଷ ତଳେ, ଅର୍ଥାତ୍ ଓଡ଼ିଶାରେ ପଞ୍ଚସଖାଙ୍କ ସମୟରେ ଏଠି ଆମର ସମାଜ ଠିକ୍ ଏହି ବିଶ୍ୱାସଟିକୁହିଁ ଅଙ୍କୁଶ ପରି ମାନୁଥିଲା । ପଞ୍ଚସଖା ସେହି ଅଙ୍କୁଶଟିକୁ ସ୍ୱୀକାର କରି ନଥିଲେ । ସେମାନେ କିଏ କେଉଁ କୁଳରେ ଜନ୍ମଗ୍ରହଣ କରିଥିଲେ, ସେ କଥାଟିକୁ ପ୍ରାୟ ପାସୋରି ପକାଇଥିଲେ ଏବଂ ଆପଣାକୁ "ଦାସ" ବୋଲି ଘୋଷଣା କରିଥିଲେ । ଦାସ ଅର୍ଥାତ୍ ପରିକର, ସେହି ଭଗବାନଙ୍କର ପରିକର, ମନୁଷ୍ୟକୁ ବାଟ ଚଲାଇ ନେଉଥିବା ଶୁଭତମ ଓ ଗଭୀରତମ ପ୍ରେରଣାଟିର ପରିକର । ଅନ୍ୟତମ ପଞ୍ଚସଖା ଅଚ୍ୟୁତାନନ୍ଦ ତାଙ୍କର ଗୋଟିଏ ବହିରେ ଅତ୍ୟନ୍ତ ସ୍ପଷ୍ଟ ଓ ଅପ୍ରମତ୍ତ ହୋଇ ଏଇଟିର ଘୋଷଣା କରିଛନ୍ତି । ଆପଣାକୁ ସିଏ ଶୂଦ୍ର ବୋଲି ସ୍ୱୀକାର କରି ନେଇଛନ୍ତି । ଶୂଦ୍ର ସମସ୍ତଙ୍କର ସେବା କରେ, ସମସ୍ତଙ୍କର ସହେ,

ସଂସାରଯାକର ପରିଚର୍ଯ୍ୟା ମଧ୍ୟରେ ରହିଥାଏ, ତେଣୁ ସେଇ ହେଉଛି ଯଥାର୍ଥ ଭକ୍ତ । ନିଜକୁ ଭକ୍ତ ରୂପେ ପ୍ରସ୍ତୁତ କରିଥିବା ପଞ୍ଚସଖା ମଧ୍ୟ ସେହିପରି ଶୂଦ୍ର ଭାବରେ ହିଁ ଭଗବାନଙ୍କୁ ଦେଖୁଥିଲେ, ଭଗବାନଙ୍କର ଏହି ସଂସାରରେ ଶୂଦ୍ରଭାବ ବହନ କରି ବିଚରଣ କରିବାକୁହିଁ ଧର୍ମରୂପେ ଗ୍ରହଣ କରି ନେଇଥିଲେ । ଯେଉଁ ଜାତିକୁ ସମାଜ ସବୁଠାରୁ ନିକୃଷ୍ଟ ବୋଲି ଦେଖୁଥିଲା, ପଞ୍ଚସଖା ସେହି ଜାତିକୁ ହିଁ ଆପଣାର ଜାତିରୂପେ ବରଣ କରି ନେଇଥିଲେ ।

ସବୁଦିନେ ଯବନମାନେ ଠିକ୍ ଏହିପରି ଭାବରେ ସବୁକିଛିକୁ ଗୋଳେଇ ଘାଣ୍ଟି ଦିଅନ୍ତି, ଠିକ୍ ଏହିପରି ଭାବରେ ଗୁଳାଗୁଡ଼ାକୁ ଭାଙ୍ଗି ଦିଅନ୍ତି, ପ୍ରଚଳିତ ଅନେକ ବୁଢ଼ା ସଂସ୍କାରକୁ ସେମାନେ ଠିକ୍ ଏହିପରି ଭାବରେ ଭଣ୍ଡୁର କରିଦିଅନ୍ତି । ଭୀରୁମାନଙ୍କୁ ଠିକ୍ ଏହିପରି ଭାବରେହିଁ ଅତିକ୍ରମ କରି ଯାଆନ୍ତି । ଚିରାଚରିତ ଚକ୍ଷୁକୁ ଗୋଟିଏ ଅସମ୍ଭବତା ବୋଲି ଦେଖା ଯାଉଥିବା ଅନେକ କାମ୍ୟ ଓ ଅନେକ ସମ୍ଭାବ୍ୟକୁ ସେମାନେ ଠିକ୍ ଏହିପରି ଭାବରେ ସମ୍ଭବ କରାଇ ଆଣନ୍ତି ।

ତା ୧୦ ।୦୩ ।୭୫ରିଖ



# ତିନି

ଯୋଉଦିନଠାରୁ ସାହିତ୍ୟ ଭିତରକୁ ଜାତିର ବାଛବିଚାରଗୁଡ଼ାକ ପଶିବାକୁ ଆରମ୍ଭ କଲା, ସେହିଦିନଠାରୁ କ'ଣ ସାହିତ୍ୟର ଜାତି ଯିବାକୁ ମଧ ଆରମ୍ଭ କଲା କି ? ବାଲ୍ମିକୀ କବି ଥିଲେ, ବେଦବ୍ୟାସ ବି କବି ଥିଲେ, କିନ୍ତୁ ଏମାନେ ଆଦୌ କୌଣସି ଜାତିର ଥିଲେ କି ନାହିଁ, ସେହି ବିଷୟରେ ବିଚାର କରିବସିଲେ ବିଚାର ଲମ୍ବିବ ସିନା, ବିଚାର ଆଦୌ ଛିଡ଼ିବ ନାହିଁ । ଆମ ଦେଶର ବେଦ ଓ ଉପନିଷଦକୁ ଆମ ଭିତରୁ ଅନେକେ ସେଗୁଡ଼ାକର ଜାତିଦେଇ ଚିହ୍ନିବା ଲାଗି ମନ କରିଥାନ୍ତି । ଅର୍ଥାତ୍ ଗୋଟାଏ ନିର୍ଦ୍ଦିଷ୍ଟ ଦେଶରେ ସେହିସବୁ ସମ୍ପଦର ସୃଷ୍ଟି ହୋଇଥିଲା ବୋଲି ସେମାନେ ସେସବୁକୁ ସେହି ଦେଶର ସମ୍ପଦ ବୋଲି କେଡ଼େ ଗରବର ସହିତ କହିବାକୁ ଚେଷ୍ଟା କରନ୍ତି । ସେମାନେ ବେଦକୁ ଏହି ଭାରତର ବୋଲି କହନ୍ତି ଏବଂ ସେହି ନ୍ୟାୟ ଦ୍ୱାରା ହିଁ ପରିଚାଳିତ ହୋଇ ରାମାୟଣ ଓ ମହାଭାରତର ଜାତି ନିରୂପଣ କରିବାକୁ ଯାଇ ସେଗୁଡ଼ାକୁ ଗୋଟାସୁଦ୍ଧା ଆମ ନିଜର ଗୋଟାଏ ଗୋଟାଏ ସମ୍ପତ୍ତି ବୋଲି ଘୋଷଣା କରନ୍ତି ।

ଜାତି କଥାଟି ଅନେକ ପୁରୁଣା, ସାହିତ୍ୟ ସମ୍ଭବତଃ ତା'ଠାରୁ ଆହୁରି ଅଧିକ ପୁରୁଣା । କିନ୍ତୁ ସାହିତ୍ୟକୁ ଆଣି ଜାତି ସହିତ ଏକାଠି ଯୋଡ଼ିବା ଏବଂ ସାହିତ୍ୟର ଜାତିରୁ ହିଁ ସାହିତ୍ୟକୁ ଚିହ୍ନିବାର ଏହି ଖୋଇ ବା ଏହି ଦୃଷ୍ଟିଟି ଆଦୌ ସେତେ ପୁରୁଣା ନୁହେଁ । ଆମ ଦେଶରେ ତ ଏହାକୁ ବେଶ୍ ଏକ ଆଧୁନିକ ଖୋଇ ବା ଆଧୁନିକ ଅଭ୍ୟାସ ବୋଲି ମଧ କୁହାଯାଇ ପାରିବ । ଲବ କୁଶଙ୍କୁ ସାଙ୍ଗରେ ନେଇ ଯେତେବେଳେ ବାଲ୍ମିକୀ ଅଯୋଧ୍ୟାର ଦରବାରକୁ ରାମାୟଣ ଗାନ କରିବା ଲାଗି ଆସିଥିଲେ, ସେତେବେଳେ ରାଜା ରାମଚନ୍ଦ୍ରଙ୍କର ଯଜ୍ଞ-ସଭାରେ ତାଙ୍କୁ କେତେ ଆଦର ମିଳିଥିଲା । ସ୍ୱୟଂ ରାମଚନ୍ଦ୍ରଙ୍କଠାରୁ ମଧ କବି ଓ ତାଙ୍କର କାବ୍ୟକୁ କେତେ ପ୍ରଶସ୍ତି ମିଳିଲା । ଲବ ଆଉ କୁଶ ଅଯୋଧ୍ୟାର ଦାଣ୍ଡେ ଦାଣ୍ଡେ ରାମାୟଣ ଗାନ କରି ଗଲାବେଳେ ଅଯୋଧ୍ୟାବାସୀଙ୍କର ନୟନ ଭରି ଆସିଥିବ, ହୃଦୟ ଭରି ଆସିଥିବ, କେଉଁ ଦରଦୀ କାହାଣୀର ସ୍ପର୍ଶନରେ ସେମାନଙ୍କର ଅନ୍ତରଗଭୀର ନିଶ୍ଚୟ ଅନୁସ୍ପନ୍ଦିତ ହୋଇ ଉଠିଥିବ । ସେମାନେ ପୁଷ୍ପ ବୃଷ୍ଟି

କରିଥିବେ, ସାଧୁ ସାଧୁ ବୋଲି କହିଥିବେ, କିନ୍ତୁ ରାମଚନ୍ଦ୍ର ହୁଏତ କେବେହେଲେ ବାଲ୍ମିକୀଙ୍କୁ ଅଯୋଧ୍ୟାର କବି, ସଂସ୍କୃତ ଭାଷାର କବି ଅବା ଭାରତବର୍ଷର ମହାନ୍ କବି କହି ତାଙ୍କୁ କଦାପି କୌଣସି ଭାଡ଼ି ଭିତରେ ଆଣି ପୂରାଇ ଦେବାକୁ କୌଣସି ଚେଷ୍ଟାକରି ନଥିବେ । ଇଏ ହେଉଛନ୍ତି ଆମର କବି, ତେଣୁ ଇଏ ହେଉଛନ୍ତି ଏଡ଼େ ବଡ଼ କବି, ଏପରି କହି ଅଯୋଧ୍ୟାବାସୀ ସେହି କ୍ଷେତ୍ରରେ ଆଦୌ କୌଣସି ରସଭଙ୍ଗ ସୃଷ୍ଟି କରି ନ ଥିବେ ।

ଇତିହାସ ପରି ସାହିତ୍ୟ ଭିତରେ ମଧ ଜାତୀୟତାର ଏକ ଯୁଗ ରହିଛି । ଜାତିର ନାମରେ ଇଉରୋପୀୟ ରାଷ୍ଟ୍ରଗୁଡ଼ାକ ଯେତେବେଳେ ପୃଥିବୀଯାକ ଖେଦି ଯାଇ ସାମ୍ରାଜ୍ୟ ବିସ୍ତାର କରିବାରେ ଲାଗିଥିଲେ, ଯେତେବେଳେ ଆଟ୍‌ଲାଣ୍ଟିକ୍ ମହାସାଗରର ମଝି ବାଟରେ ଆମେରିକାରୁ ଅପହୃତ ସୁନା ଓ ରୂପା ଲାଗି ଜାତିର ପତାକା ଧରି ଦସ୍ୟୁ ଓ ଦସ୍ୟୁଙ୍କ ମଧରେ ଖଣ୍ଡଯୁଦ୍ଧ ହେଉଥିଲା, ଠିକ୍ ସେତିକିବେଳେ ୟୁରୋପରେ ସାହିତ୍ୟକୁ ଜାତୀୟ ସାହିତ୍ୟ ବୋଲି କୁହାଯାଇ ଜାତି ଅନୁସାରେ ସାହିତ୍ୟ ଲାଗି ଅଲଗା ଅଲଗା ଦେଉଳ ତୋଳା ହେଉଥିଲା । ଇଂଲଣ୍ଡରେ ଇଂରାଜୀ ସାହିତ୍ୟ ଓ ଫ୍ରାନ୍‌ସରେ ଫରାସୀ ସାହିତ୍ୟ ତିଆରି ହେଉଥିଲା । ଇଂରାଜୀ ସାହିତ୍ୟ ଯେ ଆଦୌ ଫରାସୀ ସାହିତ୍ୟ ନୁହେଁ, ଏବଂ ଫରାସୀ ସାହିତ୍ୟ ଯେ ଆଦୌ ଇଂରେଜୀ ସାହିତ୍ୟ ନୁହେଁ, ସେତେବେଳେ ତାହାହିଁ ପ୍ରମାଣ କରି ଦେବାକୁ ପାଣ୍ଡିତ୍ୟ ବୋଲି କୁହାଯାଉଥିଲା । ସେହି ଅନୁସାରେ ସେଇ ଗୋଟାଏ ଭୂଖଣ୍ଡ ୟୁରୋପରେ ଜାତି ବା ଦେଶର ସନ୍ତକଗୁଡ଼ାକୁ ଧରି ସେତେବେଳେ ସାନ ଓ ବଡ଼ ଯେତେଖଣ୍ଡ ଡ଼ିହ ମଡ଼ା ହୋଇପାରିଲା, ଏଣେ ଖଞ୍ଜା ଭିତରୁ ସାହିତ୍ୟିକ ଓ ସାହିତ୍ୟ-ସମୀକ୍ଷକମାନେ ମଧ ଆପଣା ଆପଣାର ସାହିତ୍ୟକୁ ପ୍ରାୟ ସେତିକି ଖଣ୍ଡ କରି ଦେଖିବାକୁ ଆରମ୍ଭ କଲେ । ଖଣ୍ଡ ଖଣ୍ଡ ହୋଇ କେତେ ବେଦୀ ତିଆରି ହେଲା । ଜର୍ମାନୀ ଦେଶରେ ଜର୍ମାନ ସାହିତ୍ୟ ଗଢ଼ାହେଲା । ରୁଷିଆ ଦେଶରେ ଅଲଗା କରି ରୁଷିଆ ସାହିତ୍ୟ ମଧ କରାଗଲା । ଭୂଇଁକୁ କାଟି ଡ଼ିହ କରାଗଲା, ପୁଣି କ୍ରମଶଃ ଗୋଟିଏ ଡିହକୁ କାଟି ଅନେକ ଡିହ ବି କରାଗଲା । କୁନି ବେଲଜିୟମରେ ବେଲଜିଆନ୍ ସାହିତ୍ୟର ଧ୍ୱଜା ପୋତାଗଲା, ପୁଣି ସେଇଟାଠାରୁ ଫିଡ଼ିକି ଯାଇ ବେଲଜିୟମର ଗୋଟିଏ ଭାଗରେ ନୂଆ ଉନ୍ମାଦନାରେ ଫ୍ଲେମିଶ୍ ସାହିତ୍ୟ କରାଗଲା । ଚେକୋସ୍ଲୋଭାକିଆ ଗଢ଼ା ହେବା ସଂଗେ ସଂଗେ ଚେକୋସ୍ଲୋଭାକ ସାହିତ୍ୟ ମଧ ଇଉରୋପୀୟ ସାହିତ୍ୟ ଭିତରେ ଗୋଟିଏ ମୁଣ୍ଡ ବୋଲି ସୁମାରି ହେଲା । ମାତ୍ର ପୁଣି କେତେଦିନ ପରେ ଗୋଟିଏ ନାଆଁ ଦୁଇଟା ନାଆଁରେ ବାଣ୍ଟି ହୋଇଗଲା । ଗୋଟାକୁ ଚେକ୍ ସାହିତ୍ୟ କୁହାଗଲା, ଆରଟାକୁ ତାଙ୍କ ଡିହଟା ଅନୁସାରେ ସ୍ଲୋଭାକ୍ ସାହିତ୍ୟ ବୋଲି କୁହାଗଲା । ଗୋଟାଏ ଘରେ ସତେ ଅବା ଦୁଇଟା

ଭୁଆ ପରସ୍ପର ଆଡ଼କୁ ଅନାଇ ଏବଂ ପରସ୍ପରକୁ ଉଦ୍ଦେଶ୍ୟ କରି ମହୋଲ୍ଲାସରେ ଗର୍ଜନ କରି ଉଠିଲେ । ଭୂଗୋଳ ଅନୁସାରେ ବିଶେଷତଃ ଭୌଗୋଳିକ ରାଜନୀତିର ନ୍ୟାୟ ଅନୁସାରେ ସାହିତ୍ୟ ଭିତରେ ଏହି ଜାତିଗତ କୁଳଭିଆଣର ଇତିହାସଟି ପ୍ରକୃତରେ ଏକ ମନୋରମ ଇତିହାସ ।

ଆମେ ଆମ ଜାତିକୁ ଭଲ ପାଇବା, ଅର୍ଥାତ୍ ଜାତିର ଭୌଗୋଳିକ ଆଭରଣଟା ଭିତରେ ଯୋଉଠି ଯେତେ ବାଡ଼, ହିଡ଼, ପର୍ବତ, ଅରଣ୍ୟ, ନଦ ଓ ନଦୀ ରହିଛି, ଆମେ ସେଗୁଡ଼ାକୁ ଭଲ ପାଇବା । ଜାତୀୟତାର ଯୁଗରେ ଏହିଭଳି ଗୋଟିଏ ସ୍ଲୋଗାନ୍ ଆମ ପୃଥିବୀଟାକୁ ଆଦୌ କମ୍ ନଚାଇବାକୁ ଓ କମ୍ କଚାଡ଼ିବାକୁ ଚେଷ୍ଟା କରି ନାହିଁ । ଲୋକେ ଆଗେ ପ୍ରକୃତିକୁ ଭଲ ପାଉଥିଲେ; ଅର୍ଥାତ୍ ପ୍ରକୃତି ଭିତରେ ଯେଉଁଠି ଯେତେ ରକ୍ତିମା, ନୀଳିମା ବା ସବୁଜିମା ରହିଛି, ସେହି ସବୁ ଲାଗି ଯଥାସମ୍ଭବ ଅଧିକରୁ ଅଧିକ ସ୍ୱାଭାବିକ ଭାବରେ ଗ୍ରହଣଶୀଳ ହୋଇ ପାରିବାକୁ ସମସ୍ତେ ସୌନ୍ଦର୍ଯ୍ୟାନୁଭୂତି ବୋଲି କହୁଥିଲେ । ରାତ୍ରିର ନିସ୍ତବ୍ଧ ଆକାଶ ତଳେ ଘଡ଼ିଏ ନିସ୍ତବ୍ଧ ହୋଇ ଉପରକୁ ଅନାଇ ଆପଣା ଭିତରର ସବୁ ଆଞ୍ଜୁଳା ଗୁଡ଼ାକୁ ଭରାଇ ଦେବା ଲାଗି ସେତେବେଳେ ଆମର ଦ୍ୱାରଗୁଡ଼ିକୁ ଅନୁରୂପ ଭାବରେ ମଣାଇ ନେବାଲାଗି କୁହାଯାଉଥିଲା । ଏବେ ଠିକ୍ ସେହି ସବୁ କଥା ହିଁ କୁହା ଯାଉଛି । ମାତ୍ର ସେଗୁଡ଼ିକରେ ଜାତିତ୍ୱର ଗୋଟିଏ ପୁଟ ବୋଲି ଦିଆ ହୋଇ ଆମକୁ ସେକଥା କୁହାହେଉଛି । ଆମେ ଆମ ଦେଶର ପର୍ବତକୁ ଭଲ ପାଇବା, ନଦୀକୁ ଭଲ ପାଇବା, ସମୁଦ୍ର ଆଉ ଆକାଶକୁ ଭଲ ପାଇବା, ଧାନ ବିଲ ଆଉ ଆମ୍ବ-ତୋଟାକୁ ଭଲ ପାଇବା, ସୂର୍ଯ୍ୟ ଚନ୍ଦ୍ର ଓ ନକ୍ଷତ୍ରକୁ ଭଲ ପାଇବା । ଏଗୁଡ଼ାକ ଆମ ଭିତରେ ପ୍ରକୃତରେ କୌଣସି ପ୍ରକାର ଅନୁପ୍ରେରଣା ଅଥବା ଅନୁସ୍ପନ୍ଦନ ସୃଷ୍ଟି କରୁଛନ୍ତି ବୋଲି ଯେ ଆମେ ଏଗୁଡ଼ାକୁ ଭଲ ପାଇବା, ସେକଥା ତ ଆଗରୁ ଆବହମାନ କାଳରୁ କୁହା ହୋଇ ଆସିଥିଲା; ତେଣୁ ସେଥିରେ ଆଦୌ କୌଣସି ନୂତନତା ନାହିଁ । ନୂତନତା ହେଉଛି ଯେ ଏଗୁଡ଼ାକୁ ଆମେ ଆମରି ବୋଲି ଭଲ ପାଇବା । ଆମର ସମ୍ପତ୍ତି ବୋଲି ଭଲ ପାଇବା, ଆମ ଜାତିର ବା ଆମ ଦେଶର ବୋଲି ଭଲ ପାଇବା । ଆମର ବାରିପଟେ ଯେଉଁ ଗଡ଼ିଆ ଗୁଡ଼ାକ ରହିଛି, ସେଗୁଡ଼ାକ ଆମର ବୋଲି ହିଁ ଯେ ମୋତେ ନିଶ୍ଚୟ ଭାରି ସୁନ୍ଦର ଦିଶିବ, ମୁଁ ସେଗୁଡ଼ାକ ମଧ୍ୟରେ ଭୁବନଯାକର ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହେବି, ଥରେ ସିଆଡ଼କୁ ବୁଲିଗଲେ ମୁଁ ଏତେ ବଡ଼ କାବ୍ୟଟାଏ ଲେଖି ପକାଇବି, ଏସବୁ ଦୃଷ୍ଟାନ୍ତ ଜାତିମାର୍କା ସାହିତ୍ୟ-ଯୁଗରେ ଆମ ଲାଗି ଆଦୌ ବିରଳ ହେବ ନାହିଁ । ଆମ ଓଡ଼ିଶାରେ ଏହି କଥା ଯେପରି ଦେଖିବାକୁ ମିଳିବ, ଇଂଲଣ୍ଡ, ସ୍କଟଲାଣ୍ଡ ବା ଇଉକ୍ରେନ୍‌ରେ ମଧ୍ୟ ସେହିପରି ଦେଖିବାକୁ ମିଳିବ ।

କୌଣସି କଥା ପ୍ରକୃତରେ ସୁନ୍ଦର ବୋଲି ମୋତେ ସୁନ୍ଦର ଲାଗୁ ନାହିଁ, ମାତ୍ର ତାହା ମୋର ଆପଣାର ହୋଇଥିବାରୁ ହିଁ ମୋତେ ସୁନ୍ଦର ଲାଗୁଛି ବା ସୁନ୍ଦର ଦେଖା ଯାଉଛି, ସାହିତ୍ୟକୁ ଜାତି ଅନୁସାରେ ଭାଗ କରି ଦେବା ପରେ ଆମ ସାହିତ୍ୟ ଗୁଡ଼ାକରେ ଏହି ପ୍ରବୃତ୍ତିଟା ବଡ଼ ପ୍ରବଳ ହେବାକୁ ଆରମ୍ଭ କରିଛି । ଏହି ପ୍ରବୃତ୍ତିର ତାଡ଼ନାରେ ପଡ଼ି ଇତିହାସ ଭିତରେ କୋଉଠି କିଛି ନଥିଲେ ମଧ୍ୟ ଗୋଟାଏ ଦେଶରେ ଇତିହାସ ନାମରେ ଶଗଡ଼େ ଶଗଡ଼େ ବହି ଲେଖା ଯାଇଛି, ଘଟଣାର ସଂଗ୍ରହ ଓ ସ୍ତୂପୀକରଣକୁ ହିଁ ଇତିହାସ ବୋଲି କୁହାଯାଇଛି । ସଂଗ୍ରହାଳୟ ଖୋଲା ଯାଇଛି, ତିଳ ଗୁଡ଼ାକୁ ଆଣି ତାଳ ପରି ଦେଖାଇ ଦିଆଯାଇଛି ଏବଂ ସେହିପରି ଗୋଟାଏ ରସହୀନ ତାମସା ଭିତରେ ହିଁ ମଣିଷର ଐତିହାସିକ ଆଗ୍ରହ ଗୁଡ଼ାକୁ ଶାନ୍ତ କରି ରଖି ଦେବା ଲାଗି ଚେଷ୍ଟା କରାଯାଇଛି । ଆମ ଘରେ ଯେଉଁଠି ଯାହା ରହିଛି, ସେଇଗୁଡ଼ାକୁ ହିଁ ବାଧ୍ୟ ହେଲା ପରି ବଡ଼, ମହାନ୍ ଓ ସୁନ୍ଦର ବୋଲି କହିବାକୁ ଶିକ୍ଷା କରି, ଆମ ଭିତରେ ବଡ଼, ମହାନ୍ ଓ ସୁନ୍ଦରକୁ ଖୋଜିବାର ଯେଉଁ ସ୍ୱାଭାବିକ୍ ପ୍ରବୃତ୍ତିଗୁଡ଼ିକ ହୁଏତ କେଉଁଠି କିଛିହେଲେ ଅନ୍ୱେଷଣ କରିବାକୁ ବାହାରି ଥାଆନ୍ତା, ସେଗୁଡ଼ାକୁ ବଡ଼ ଅଶାଳୀନ ଭାବରେ ଦଳୁଡ଼ା କରି ଦିଆଯାଉଛି । ସାହିତ୍ୟ କ୍ଷେତ୍ରରେ ଭଲ ପାଇବାଟାକୁ ମଧ୍ୟ ଠିକ୍ ସେହିପରି ବଡ଼ ସ୍ଥାନୀୟ ଓ ବଡ଼ ପ୍ରମତ୍ତତାପୂର୍ଣ୍ଣ କରି ରଖାଯାଉଛି । ଏଇଟା ମୋ ଜାତିର ସାହିତ୍ୟ, ଏଇଟା ମୋର ଜାତୀୟ ସାହିତ୍ୟ ଏବଂ ଏହି ସାହିତ୍ୟକୁ ମୁଁ ଅବଶ୍ୟ ଭଲ ପାଇବି, କାରଣ ମୁଁ ମୋ ସାହିତ୍ୟଟିକୁ ଭଲ ନ ପାଇଲେ ମୋ ସାହିତ୍ୟ ପୁଣି ପାଣି କିପରି ପାଇବ, ମୋ ସାହିତ୍ୟ ପୁଣି ବିଶ୍ୱଦରବାରରେ କିପରି ପରିଚିତ ହୋଇ ପାରିବ ? ଇତ୍ୟାଦି ଇତ୍ୟାଦି କେତେ ସାଉଁଳିଆ ସମ୍ମୋହନ-କଥାରେ ମୋର ଗ୍ରହଣମନକୁ ପିଲାଟି ଦିନରୁ ଏପରି ଅଳ୍ପଗ୍ରାହୀ ଓ ଅପଲ୍ଲବୀ କରି ରଖି ଦିଆଯାଉଛି ଯେ ମୋ ଭିତରେ ଅସଲ ଗ୍ରହଣଶୀଳତା ଗୁଡ଼ିକୁ କ୍ରମେ ମାରି ଦିଆଯାଉଛି, ମୋର ସ୍ପର୍ଶନ-ଶକ୍ତିଗୁଡ଼ିକୁ କ୍ରମେ ଅକାମୀ କରି ରଖି ଦିଆଯାଉଛି । ଭଲ ପାଇବା ନାମରେ ଅନେକ ସମୟରେ ମୋତେ କେତେଟା ମୁଗ୍ଧତା ଓ ଉଗ୍ରତା ଭିତରେ ହିଁ ବଡ଼ ଅସୁସ୍ଥ ଭାବରେ ଅବରୁଦ୍ଧ କରି ରଖି ଦିଆଯାଉଛି ।

ଇଂଲଣ୍ଡରୁ ଫ୍ରାନ୍ସ୍ ମୋଟେ ବାଇଶି ମାଇଲ ବାଟ । ସେହି ବାଇଶି ମାଇଲର ସମୁଦ୍ର-ବ୍ୟବଧାନକୁ ଏବେ କେତେ ଲୋକ ଗୋଟାଏ ପହଁରାରେ ପାରି ହୋଇଯାଇ ସାରିଲେଣି । ତଥାପି ଇଂଲଣ୍ଡର ଜାତିସଚେତ ମନ ଫ୍ରାନ୍ସର କୂଳକୁ ଛୁଇଁପାରି ନାହିଁ ବା ଫ୍ରାନ୍ସର ଜାତି-ସଚେତ ମନ ଇଂଲଣ୍ଡର କୂଳଗୁଡ଼ାକୁ ବି ସ୍ପର୍ଶ କରି ପାରିନାହିଁ । ଇଂଲଣ୍ଡ ଫ୍ରାନ୍ସଠାରୁ ସତେଅବା ଯୋଜନ ଯୋଜନ ଅନ୍ତର ହୋଇ ରହିଛି । ଏମାନେ ଆପଣା ଆପଣାର ଗଡ଼ିଆଗୁଡ଼ାକୁ ଗଙ୍ଗା ମନେକରି ତାହାରି ମଧ୍ୟରେ ଅବଗାହିବାରେ

ଲାଗିଛନ୍ତି; ମାତ୍ର ପରସ୍ପରର ଅନ୍ତର ଭିତରେ ଅବଗାହି ପାରୁ ନାହାନ୍ତି । ଜର୍ମାନୀ ଆଉ ଫ୍ରାନ୍ସ୍‌ର ସୀମା ସେହିପରି ପରସ୍ପରକୁ ଲାଗିକରି ରହିଛି । ମାତ୍ର ଜର୍ମାନୀ ଫ୍ରାନ୍ସ୍‌ଠାରୁ ଯୋଜନ ଯୋଜନ ଅନ୍ତର ହୋଇ ରହିଛି । ଏଗୁଡ଼ାକ ହେଉଛି ଇତିହାସରେ ଅନେକ ପ୍ରକୋପ ଏବଂ ପ୍ରକ୍ଷେପଣର ସୃଷ୍ଟି କରି ମଣିଷର ବୋଧଶକ୍ତିଗୁଡ଼ାକୁ କାମୁଡ଼ି ଧରିବା ଲାଗି ଆସିଥିବା ଜାତୀୟତା ଯୁଗର ହିଁ କରାମତି ।

ଏହି ଅସୁନ୍ଦର ପ୍ରସଙ୍ଗଗୁଡ଼ାକର ନଜିର ପାଇବା ଲାଗି ଆମ ଭାରତବର୍ଷରେ ମଧ୍ୟ ଆମକୁ ଆଦୌ ପରିଶ୍ରମ କରିବାକୁ ପଡ଼ିବ ନାହିଁ । ଆମର ଏଠି ରାଜନୀତିକ ଦୃଷ୍ଟିରୁ ଦେଖିଲେ ଗୋଟିଏ ଦେଶ ଏବଂ ତା' ଭିତରେ ଅଲଗା ଅଲଗା ଚଉଦ କି ପନ୍ଦରଟା ଭାଷା ଏବଂ ସେହି ଅନୁସାରେ ଚଉଦଟା କି ପନ୍ଦରଟା ସରିକି ମାନ୍ୟତାପ୍ରାପ୍ତ ଜାତୀୟ ସାହିତ୍ୟ । ଏହିସବୁ ସାହିତ୍ୟର ପୁଣି କୁଆଡ଼େ ଗୋଟାଏ ଗୋଟାଏ ସ୍ୱତନ୍ତ୍ର ଇତିହାସ ରହିଛି । ଅବଶ୍ୟ ଏକଥା ସତ ଯେ ମାତ୍ର ଏହି ଅମଳରେ ଅର୍ଥାତ୍ ସାହିତ୍ୟ ଭିତରକୁ ଜାତିଆଣ ବିଚାରଗୁଡ଼ାକ ପ୍ରବେଶ କରିବାର ଏହି ଅମଳଟିରେ ହିଁ ପାଶ୍ଚାତ୍ୟ ପୂର୍ବସୂରୀମାନଙ୍କର ଅନୁସରଣ ତଥା ଅନୁକରଣରେ ଏହିସବୁ ଇତିହାସ ଖୋଜା ହେଉଛି, ସଜଡ଼ା ଓ ସାଉଁଟା ହେଉଛି, ଘଷାମଜା ହେଉଛି ଓ ସୃଷ୍ଟି କରାଯାଉଛି । ଏମାନେ, ଅର୍ଥାତ୍ ଅମୁକ ସିଦ୍ଧାଚାର୍ଯ୍ୟ ବା ଅମୁକ ସାଧକମାନେ ଆମର ଥିଲେ ଓ ତାଙ୍କର କଦାପି ନ ଥିଲେ ବୋଲି ଦୁଃସାହସିକ କେତେ କେତେ ଶାସ୍ତ୍ର-ପ୍ରମାଣ ଜମାକରି ଆମେ ପରସ୍ପର ମଧ୍ୟରେ ବେଶ୍ ଏକ ବଚସା ମଣ୍ଡାଇ ରଖିଛୁ; କେତେ କଜିଆ କରୁଛୁ, ଗୋଡ଼ିଆଗୋଡ଼ି ହେଉଛୁ ଏବଂ ଏହିସବୁ ଧନ୍ଦାକୁ କେଡ଼େ ରମଣୀୟ ତଥା ଉପଭୋଗ୍ୟ ବୋଲି ଜାଣୁଛୁ । ଆମ ପ୍ରତ୍ୟେକଙ୍କର ଖଞ୍ଜାରେ ଗୋଟାଏ ଗୋଟାଏ ସଂଗ୍ରହାଳୟ ଖୋଲିବାରେ ଲାଗିଛି, ପରସ୍ପର ସହିତ ପ୍ରତିସ୍ପର୍ଦ୍ଧା ଜଣାଇବାକୁ ତାହା କ୍ରମଶଃ ବଡ଼ ହେବାରେ ଲାଗିଛି ଓ ତାହାରି ଦ୍ୱାରା ହିଁ ଆମେ ଆମ ଜାତି, ଆମ ଭାଷା ଓ ଆମ ସାହିତ୍ୟ ପ୍ରତି ଆପଣାର କର୍ତ୍ତବ୍ୟଗୁଡ଼ାକୁ କରି ଯିବାରେ ଲାଗିଛୁ ଏବଂ ଆମର ଆପଣାର ସମ୍ପତ୍ତିସ୍ୱରୂପ ଏଗୁଡ଼ାକ ପ୍ରତି ଆମର ଭଲ ପାଇବାଟା ଯେତିକି ବହଳ ଓ ଯେତିକି ସାକାର ହେବାରେ ଲାଗିଛି, ଅନ୍ୟ ଜାତି, ଅନ୍ୟ ଭାଷା ଓ ଅନ୍ୟ ସାହିତ୍ୟଗୁଡ଼ିକ ପ୍ରତି ଆମର ଉପେକ୍ଷା ଠିକ୍ ସେତିକି ପରିମାଣରେ ଅଧିକ ହେବାରେ ଲାଗିଛି । ଏଠାରେ ଉପେକ୍ଷା କହିଲେ କମ୍ କୁହାଯିବ, କାରଣ ଏହି ଉପେକ୍ଷାର ଆଧାର-ଚକ୍ରରେ ଏକ ଅତି ବହଳ ଅବଜ୍ଞାଭାବ ରହିଛି, ଗୋଟାଏ ପ୍ରକୁପିତ ଅଶ୍ରଦ୍ଧାଭାବ ମଧ୍ୟ ରହିଛି । ଆପଣାର ସାହିତ୍ୟକୁ ଆପଣାର ବୋଲି କହିବାକୁ ହେଲେ ପ୍ରତିବେଶୀ ଆଉ ଯାବତୀୟ ସାହିତ୍ୟକୁ ଯେ ଆଖି ବୁଜି ଉପେକ୍ଷା କରିବାକୁ ହେବ, ଆପଣାଟାକୁ ନେଇ ବିହ୍ୱଳ ଏବଂ ବିଗଳିତ ହୋଇ ପାରିବା ଲାଗି ପ୍ରତିବେଶୀ ଆଉ

ସବୁକିଛିକୁ ଯେ ସପତ୍ନୀତୁଲ୍ୟ ଅନାଦର ବା ହତାଦର ଦେଖାଇବାକୁ ପଡ଼ିବ, ସାହିତ୍ୟକୁ ଭୂଗୋଳ ଏବଂ ତିହ ଅନୁସାରେ ଚେନା ଚେନା କରି ଅଲଗା କରି ଦେଖାଇବାକୁ ଚେଷ୍ଟା କରୁଥିବା ଜାତିଆଣ ବିଚାରଟା ଆମକୁ ସେହି ବିଦ୍ୟାରେ କ୍ରମଶଃ ଭାରି ପାକଳ କରି ଆଣିଛି । ଆମର ଆବଶ୍ୟକତା ଗୁଡ଼ାକୁ ତାହା ଅତ୍ୟନ୍ତ ସ୍ୱଳ୍ପ କରି ଆଣିଛି । ଆମର ସମ୍ବେଦନଶୀଳତାକୁ ବଡ଼ କ୍ଷୀଣ କରି ପକାଇଛି । ଆମକୁ ପ୍ରକୃତରେ ଅତ୍ୟନ୍ତ ନିର୍ଲଜ୍ଜ ଭାବରେ ମୂଳତଃ ଅତିମାତ୍ରାରେ ବହିଷ୍କାରଧର୍ମୀ କରି ରଖିଛି ।

ଭଲ ପାଇ ଶିଖିଲେ ମଣିଷର ଆଖି ବଦଳିଯାଏ । ଭଲ ପାଇବା ପୂର୍ବରୁ ଭଲ ପାଇବା ବିଷୟରେ ଲେଖାଯାଇଥିବା ଶାସ୍ତ୍ରଗୁଡ଼ାକର ପାରାୟଣ କରୁଥିବା ସମୟରେ କାହାକୁ ଭଲ ପାଇବା ଉଚିତ ଓ କାହିଁକି ଉଚିତ, ଆମେ କାହାକୁ ଆଗ ଭଲପାଇବା ଓ କାହାକୁ ତା'ପରେ ଯାଇ ଭଲ ପାଇବା, ଏହିସବୁ ସୂତ୍ର ବିଷୟରେ ଆମେ କେତେ କ'ଣ ଶାସ୍ତ୍ରବାଣୀ ଶୁଣିବାରେ ଲାଗିଥାଉ । ଏବଂ ଏହି ସୂତ୍ରଗୁଡ଼ାକୁ ପ୍ରାରବ୍ଧ ରୂପେ ମୁଣ୍ଡରେ ମୁଣ୍ଡାଇ ହିଁ ଆମେ ସଂସାରରେ ଭଲ ପାଇବାକୁ ଯାଉ । ମାତ୍ର ଭଲ ପାଇବାର ପଥଟି ଉପରେ ଆଗକୁ ଯ ।ଉ ଯାଉ ପଇଟାଇ ଥିବା ଏହି ସୂତ୍ରଗୁଡ଼ାକ କ୍ରମେ କୁଆଡ଼େ ଭୁଲି ହୋଇଯାଏ, ଫର୍ମୁଲାଗୁଡ଼ାକ କୁଆଡ଼େ ପାସୋର ଯାଏ, ଗୋଡ଼ରୁ ବେଡ଼ୀଗୁଡ଼ାକ କୁଆଡ଼େ ଖସିପଡ଼େ । ସେତେବେଳେ ଭଲ ପାଇବାଟା ଏକ ଜୀବନ-ଦୃଷ୍ଟିରେ ପରିଣତ ହୋଇଯାଏ । କେବଳ ଗୋଟାଏ ଜାଗାରେ ବାଧ ହୋଇ ବନ୍ଧାହେବା ପରିବର୍ତ୍ତେ ମଣିଷ ଆପଣା ଇଚ୍ଛାରେ କେତେ ନା କେତେ ଥାନରେ ନେଇ ଆପଣାକୁ ବାନ୍ଧି ପକାଏ, କୌଣସି ପ୍ରକାର କୃପଣତା ନ ରଖି କେତେ ନା କେତେ ଥାନରେ ସେ ଅବଗାହି ଆସିପାରେ । ସେତେବେଳେ ମଣିଷ ଭଲ ଲାଗନ୍ତି, କେବଳ ଅମୁକ ଜାତିର ମଣିଷଗୁଡ଼ାକ ହିଁ ଭଲ ଲାଗନ୍ତି ନାହିଁ । ହଁ, ସେତେବେଳେ ସବୁ ଆକାଶ ଭଲ ଲାଗେ, ସବୁ ପର୍ବତ ଭଲ ଲାଗେ, ସବୁଠାରେ ସମୁଦ୍ରର ଦର୍ଶନରେ ଆପଣା ଭିତରେ କେଉଁ ଅତି ଅନ୍ତରଙ୍ଗ ଧ୍ୟାନରତ ବନ୍ଧୁଟି ସହିତ ସାକ୍ଷାତ ହୋଇଯାଏ । ବାଛବିଚାରର ସବୁ ବାଡ଼ ଚୂଲୀକୁ ଯାଏ, ଭାଷାର ବାଡ଼ଗୁଡ଼ାକ ମଧ୍ୟ ରସଗ୍ରାହିତାର ଉତ୍ସାହୀ ଆକାଂକ୍ଷା ଆଗରେ କୁଆଡ଼େ ଉଡ଼ିଯିବାରେ ଲାଗନ୍ତି । ଜୀବନ ରସୋତ୍ତୀର୍ଣ୍ଣ ହୁଏ, ରସଗ୍ରାହୀ ହୁଏ । ସେତେବେଳେ ସେ ରାଧାନାଥଙ୍କୁ ଯେପରି ଚିହ୍ନେ, ସେକ୍ସପିଅରଙ୍କୁ ମଧ୍ୟ ଠିକ୍ ସେହିପରି ଭାବରେ ଚିହ୍ନେ । ସେତେବେଳେ ସିଏ ଏଠୁ ନାକ ଟେକି ସେଠାକୁ ଧାଇଁ ଯାଏନାହିଁ ଅଥବା ସେଠୁ ନାକ ଟେକି ଏହି ଗୋଟିଏ ଘର ଭିତରେ ଆପଣାକୁ କଦାପି କିଳି ଦେଇ ରଖିବାକୁ ଇଚ୍ଛା କରେନାହିଁ । ତେଣୁ, ମୁଁ ମୋ ଘରକୁ ଭଲ ପାଇଲେ ବିଦେଶକୁ ଭଲ ପାଇବି ନାହିଁ, ଆପଣା ଘରକୁ ଚିହ୍ନିବି ବୋଲି ବିଦେଶକୁ ଚିହ୍ନିବା ଲାଗି ମନ ବି ବଳାଇବି ନାହିଁ, ସେତେବେଳେ ଏହି ବାକ୍ୟଗୁଡ଼ାକ ସତେଅବା ଖଳବଚନ ପରି ମନେହୁଏ ।

ଯବନର ଜାତି ନ ଥାଏ, ତେଣୁ ସେ ଅନ୍ତରର କ୍ଷେତ୍ରରେ ସବୁଥାନରେ ଯାଇ ପଙ୍ଗତରେ ବସିପାରେ । ଯବନର ଆପଣା ଘରେ ସୀମାସୂଚକ କୌଣସି କାନ୍ଥ ନ ଥାଏ । ତେଣୁ ସିଏ ସବୁ ଘରକୁ ଆପଣାର ଘର ବୋଲି ବଡ଼ ସହଜରେ ଅନୁଭବ କରି ନେଇପାରେ । ଯବନର ଘରେ ଅନେକ ଦ୍ୱାର, ଅନେକ ଗବାକ୍ଷ । ଯବନର ଆକାଶ ଜାତିର ଆକାଶ ନୁହେଁ, ଯବନର ପବନ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଜାତିର ମାର୍କା ଦିଆଯାଇଥିବା ପବନ ନୁହେଁ । ଯବନ ଅର୍ଥାତ୍ ସ୍ୱଚ୍ଛନ୍ଦ ମଣିଷ, ଦରଜୀର କଇଁଚିରେ କଟା ନ ହୋଇଥିବା ମଣିଷ, ସ୍ପର୍ଶକାମୀ ମଣିଷ, ସଖ୍ୟକାମୀ ମଣିଷ । ତେଣୁ ଯବନ ଯେତେବେଳେ ସାହିତ୍ୟ ଭିତରକୁ ଆସେ, ସେଠାରେ ସେ କୌଣସି ପ୍ରକାର ଜାତି ବାରି ସେଠାକୁ ଆସେ ନାହିଁ । ସିଏ ଅବଗାହିବାକୁ ଆସେ, ଅନ୍ତରଙ୍ଗ ହୋଇ ପାଖରେ ବସିବାକୁ ଆସେ; ଅନ୍ତରଙ୍ଗ ଭାବରେ ଦେବାକୁ ଆସେ ଓ ଅନ୍ତରଙ୍ଗ ଭାବରେ ନେବାକୁ ମଧ୍ୟ ଆସେ । ଯବନ ଅନେକ ଚକ୍ଷୁଦେଇ ଜଗତକୁ ଦେଖେ, ଅନେକ ରନ୍ଧ୍ର ଦେଇ ଜଗତକୁ ଆପଣା ଭିତରକୁ ଆମନ୍ତ୍ରଣ କରିଆଣେ । ଯବନ ସବୁଠାରୁ ପ୍ରସାଦ ପାଏ, ସବୁଠାରୁ ଗ୍ରହଣ କରି ଧନ୍ୟ ହୁଏ,–ଦେଉଳର ଜାତି ବାରେ ନାହିଁ, ଦିଅଁଙ୍କର ବି ଜାତି ବାରେ ନାହିଁ ।

ସାହିତ୍ୟରେ ଯବନ ପଶିଲେ ଯାଇ ସାହିତ୍ୟର ଉଦ୍ଧାର ହୁଏ । ଜାତି ବାରୁଥିବା ଅନ୍ୟମାନେ ନୂଆ ପବନକୁ ଡ଼ରନ୍ତି, ସ୍ପର୍ଶକାତର ହୋଇ ଯାବତୀୟ ନୂଆ ସ୍ପର୍ଶକୁ ଡରନ୍ତି, ମୋହରଦିଆ ସିନ୍ଦୁକଗୁଡ଼ାକୁ ହିଁ ପରମାସ୍ପଦ ସମ୍ପଦ ଭଳି ଭାବୁଥାନ୍ତି । ଭଲ ପାଇବା ନାଆଁରେ ସେମାନେ କେତେଟା ମୋହକୁ ହିଁ ନାନା ଗଣ୍ଠି ଓ ନାନା ବ୍ୟୂହ-ବନ୍ଧ ଭିତରେ ସଜାଇ ଧରିଥାନ୍ତି । ପ୍ରେମରେ ପଡ଼ିବା ନାଆଁରେ ସେମାନେ କେବଳ ଆପଣାର ହିଁ ଗୋଡ଼ ଦୁଇଟାକୁ କଷିକରି ଯାବୁଡ଼ି ଧରିଥାନ୍ତି । ଆପଣାକୁ ମୋଟେ ଆଗକୁ ଯିବାକୁ ଦିଅନ୍ତି ନାହିଁ । ଏହି କ୍ଷେତ୍ରରେ ଯବନ ଆସିଲେ ଯାଇ ଅହଲ୍ୟାର ଶାପମୁକ୍ତି ହୁଏ, ଜଳାଶୟର ଶାପମୁକ୍ତି ହୁଏ । ଭାଷା ଓ ସାହିତ୍ୟର ଚାରିପାଖରେ ଦିଆ ଯାଇଥିବା ବନ୍ଧଗୁଡ଼ାକ ଭାଙ୍ଗିଯାଏ, ଆଖି ନୂତନ ସାହସ କରିବାକୁ ସମର୍ଥ ହୁଏ । ହୃଦୟ ଆଖି ପୂରାଇ ଦେଖିବାକୁ ସମର୍ଥ ହୁଏ । ଏହାରି ଫଳରେ ହିଁ ପରିଧିଗୁଡ଼ାକ କ୍ରମଶଃ ମେଲାଇ ହୋଇଯାଏ, ପ୍ରସ୍ଥଗୁଡ଼ାକ ସମ୍ପ୍ରସାରିତ ହୋଇଯାଏ । ଯାହା ଥିଲା, ତାହା କଦାପି ଭୁଷୁଡ଼ି ପଡ଼େନାହିଁ, କଦାପି ବିଲୁପ୍ତ ବା ବିଦୂଷିତ ହୋଇଯାଏ ନାହିଁ; ମାତ୍ର ତାହା ଅଧିକ ପରିମାଣରେ ସଚେତନ ହୁଏ, ସ୍ୱୟଂସଚେତନ ହୁଏ, ଅଧିକ ପରିମାଣରେ ଉନ୍ମୋଚିତ ହୋଇ ରହେ ।

ସାହିତ୍ୟ ମଧ୍ୟରେ ଜାତିଆଣ ବିଚାର କରିବାରେ ଲାଗିଥିବା ଅପକର୍ତ୍ତାମାନେ ଯବନମାନଙ୍କୁ ସବୁବେଳେ ଡରିବାରେ ଲାଗିଥାନ୍ତି । ଆପଣାର ରୀତିଗୁଡ଼ାକୁ ହିଁ ସେମାନେ

ରୀତି ବୋଲି କହନ୍ତି, ଅନ୍ୟ ସବୁକିଛିକୁ ଅରୀତି ବୋଲି ମଣି ଭୟ କରନ୍ତି । ଏମାନେ ପଣ୍ଡିତ ବୋଲାନ୍ତି, ସାହିତ୍ୟର ପିଣ୍ଡାଗୁଡ଼ାକୁ ଯଥାସମ୍ଭବ ଦୃଢ଼ କରି ସେମାନେ ତାହାରି ଉପରେ ମଜବୁତ ହୋଇ ବସିବାକୁ ହିଁ ମହାଜନ-ପନ୍ଥା ବୋଲି ଗ୍ରହଣ କରି ନିଅନ୍ତି । ଭିନ୍ନଦେଶୀ ସକଳ ସଂସ୍ରବରୁ ଆପଣାର ଡ଼ିହଟିକୁ ସୁରକ୍ଷିତ କରି ରଖିବାଲାଗି ସେମାନେ ଆପଣାକୁ ଦ୍ୱୀପଟିଏ କରି ରଖିବାକୁ ହିଁ ଅମୋଘ ମାର୍ଗ ବୋଲି ବିଚାର କରୁଥାନ୍ତି । ମାତ୍ର ଏମାନଙ୍କର ସକଳ ସତର୍କତା ସତ୍ତ୍ୱେ ତଥାପି ଯବନ ଆସେ । ଜଳାଶୟରେ ନୂତନ ମର୍ମର ଓ ନୂତନ ଗତିଶୀଳତାର ସଞ୍ଚାର ହୁଏ । ବୃଦ୍ଧ ଆମ୍ବଗଛ ଗୁଡ଼ାକରେ ତଥାପି ନୂଆ ପବନ ବାଜେ । ନୂଆ ମୁକୁଳ କଅଁଳେ, ଫାଶ ଫିଟିଯାଏ ।

ତେଣୁ ଏହା ଅତ୍ୟନ୍ତ ସୌଭାଗ୍ୟର କଥା ଯେ ସାହିତ୍ୟ ଭିତରେ ସବୁ କାଳରେ ଜାତିଆଣ ବିଚାରର ବୀରମାନଙ୍କ ସହିତ ଯବନମାନେ ମଧ୍ୟ ରହିଥାନ୍ତି । ତେଣୁ ବାହାରକୁ ସବୁ ଦୋରସ୍ତ ହୋଇ ରହିଥିବା ପରି ପ୍ରତୀତ ହେଉଥିଲେ ମଧ୍ୟ ଭିତରେ ତଥାପି କେତେ କ'ଣ ବଦଳି ଯିବାରେ ଲାଗିଥାଏ, କେତେ ଗବାକ୍ଷ ଖୋଲି ଯିବାରେ ଲାଗିଥାଏ । ଜାତି ଥାଏ, ତଥାପି ଜାତି ଚାଲି ଯାଉଥାଏ । ମୂଳଦୁଆଟି ଉପରେ ତଥାପି ନୂଆ ମାଟି ପଡୁଥାଏ । ପୁରୁଣା ଡ଼ାଳଗୁଡ଼ାକରେ ତଥାପି ନୂଆ କଢ଼ିଟିଏ ବାହାରି ଆସିବା ପାଇଁ ସଜବାଜ ହେଉଥାଏ ।

ତା ୮ ।୪ ।୭୯ରିଖ



# ଚାରି

ଯେଉଁମାନେ ଜାତି ଦେଖି ଓ ଜାତି ବାରି ଜୀବନରେ ସଂସାରବେଭାର କରି ବାହାରନ୍ତି, ସେମାନେ ସଂସାରକୁ କେବେହେଲେ ବୁଝିପାରନ୍ତି ନାହିଁ । ସେମାନଙ୍କର ପେଟ କେତେବେଳେ ହେଲେ ପୂରେ ନାହିଁ । କାରଣ ଏହି ସଂସାରରେ ଜାତି ଗଲେ ଯାଇ ପେଟ ପୂରେ ।

ହଁ, ଜାତି ଗଲେ ଯାଇ ପେଟ ପୂରେ । ଲାଜ ଗଲେ ଯାଇ ଲାଜ ରହେ ! ଆପଣାର ସବୁ ମୁଖାଗୁଡ଼ାକୁ କାଢ଼ି ଫିଙ୍ଗି ଦେଇ ପାରିଲେ ଯାଇ ସଂସାରରେ ସବୁଠାରେ ପ୍ରବେଶ କରିହୁଏ, ସଂସାରକୁ ଅନ୍ତରଙ୍ଗ ଭାବରେ ଦେଖି ହୁଏ, ଅନ୍ତରଙ୍ଗ ଭାବରେ ଅନୁଭବ କରିହୁଏ । ଆମେସବୁ ଅନେକ ସମୟରେ ଜୀବନ ବଞ୍ଚିବା କହିଲେ ଗୋଟାଏ ମୁଖାକୁ ମୁହଁ ଉପରେ ବାନ୍ଧିରଖି ସେହି ମୁଖାଟାର ମାଧ୍ୟମରେ ହିଁ ଜଗତକୁ ମଧ୍ୟ ଛୁଇଁବାର ଚେଷ୍ଟା କରିବା ବୋଲି ବୁଝିଥାଉ ଏବଂ ସେହିପରି ଭାବରେ ଜୀବନକୁ ଛୁଇଁବାର ଚେଷ୍ଟା କରିଥାଉ । ଏବଂ ମୁଖାଟାକୁ ହିଁ ଆମେ ଆମର ଜାତି ବୋଲି କହୁ । ସେହି ମୁଖାଟା ବ୍ୟତୀତ ଆମର ବୋଲି କହିବା ଲାଗି ସତେ ଯେପରି ଆଉ କୋଉଠି କିଛି ହେଲେ ନାହିଁ, ସେହିପରି ଗୋଟାଏ ଦୈନ୍ୟକୁ ଦାନ୍ତରେ କାମୁଡ଼ି ଧରି ଆମେ ଉପରେ ପୋଷାକୀ ଜୀବନରେ ଯାବତୀୟ ପ୍ରକାରର ଉଗ୍ରପଣ ଦେଖାଇ ବାହାରିଥାଉ । ଗୋଟାଏ ରାଜାବେଶ ବା ରାଜାମୁଖା ପିନ୍ଧି ଆମ ଜୀବନର ନାଟକଟାରେ ଆମେ ଜିତାପଟ ମାରି ଆସିବୁ ବୋଲି ଆଣ୍ଟ ରଖିଥାଉ । ସେହି ଆଣ୍ଟଟାକୁ କେବେହେଲେ ନ ଭାଙ୍ଗିବାକୁ ହିଁ ଆପଣାର ସର୍ବୋଚ୍ଚ ଜିଦ୍ ବୋଲି ଧରି ବସିଥାଉ । ତେଣୁ ସଂସାର ଭିତରେ ଆମର ଜିଦ୍ ରହିଯାଏ ସତ, ମାତ୍ର ସଂସାରଟାଯାକ ଆମଲାଗି ଅତ୍ୟନ୍ତ ଦୟନୀୟ ଭାବରେ ଅମଣୋହି ହୋଇ ରହିଯାଏ, ଜୀବନଟା ମଧ୍ୟ ଅମଣୋହି ହୋଇ ରହିଥାଏ । ଆମର ମାନ ବଢ଼େ, ଦର୍ପ ବଢ଼େ, ବଡ଼ପଣିଆ ବଢ଼େ, ନାଆଁ ଡ଼ାକ ବଢ଼େ, ଆମକୁ ଖୁସାମତ କରିବା ଲାଗି କପଟୀ ସ୍ତାବକପଲ ମଧ୍ୟ ବଢ଼ନ୍ତି, ସ୍ତାବକର ମୁଖାଗୁଡ଼ାକୁ ପିନ୍ଧି ସେମାନେ ଆମରି ଭୁକିବା ସହିତ ସମସ୍ୱର ହୋଇ ଭୁକିବା ଲାଗି ସଦାସଜ୍ଜିତ ହୋଇ ରହିଥାନ୍ତି । ମାତ୍ର ତେଣେ ମୁଖାତଳେ ଅସଲ

ମଣିଷଟା ଝାଉଁଳି ପଡ଼ିଥାଏ, ଅସଲ ମଣିଷଟା ସଂସାରକୁ ଡରୁଥାଏ, ମଣିଷକୁ ଡରୁଥାଏ, ଆପଣାର ବୁଦାଗୁଡ଼ାକର ଚତୁର୍ଦ୍ଦିଗରେ ପାଚେରୀ ଘେରାଇ ରଖି ସେ ଭିତରେ ଏକୁଟିଆ ଓ ନିଅଁଶିଆଟି ହୋଇ ବସିଥାଏ । ଆପଣାର ମିଛ ଜାତିତ୍ୱ ଗୁଡ଼ାକର ମିଛ କାତିଟା ବ୍ୟତୀତ ସଂସାରରେ ଯେପରି ତା'ର ଅର୍ଜ୍ଜିଲା ଧନ କିଛିହେଲେ ନ ଥାଏ ।

ସିଏ, ଅର୍ଥାତ୍ ମୁଖାପିନ୍ଧା ଜାତିମୁହାଁ ମଣିଷ ଏହି ସଂସାରରେ ଫୁଲଟି ପାଖରେ କିଛି କହି ପାରେନାହିଁ । ଚଢ଼େଇଟି ପାଖରେ କିଛିହେଲେ କହି ପାରେ ନାହିଁ । ସେ ଦିନରାତି ପାଖରେ କିଛି କହିପାରେ ନାହିଁ । ଆପଣା ପାଖରେ, ଅର୍ଥାତ୍ ଆପଣା ଭିତରେ ବସିଥିବା ସୁହୃତ୍ତମ ସଖାଟି ପାଖରେ ମଧ୍ୟ ସେ କିଛିହେଲେ କହିପାରେ ନାହିଁ । ପ୍ରତିବେଶୀର ଆଖିକୁ ଝଲସାଇ ପକାଇବାକୁ ଓ ସେମାନଙ୍କର ଛାତିକୁ ଧଡ଼କାଇ ଦେବାକୁ ସେ ପ୍ରତିବେଶୀର ଆଖି ନ ପାଇବା ପରି କେଡ଼େ ବଡ଼ କୋଠାଟାଏ କରିଥାଏ, ତା' ଚାରିପାଖରେ କେଡ଼େବଡ଼ ଗୋଟାଏ ପାଚେରୀ ଘେରାଇ ସେଥିରେ କେତେବଡ଼ ଫାଟକଟାଏ ଲଗାଇଥାଏ ଏବଂ ଫାଟକ ପାଖରେ କେଡ଼େ ବଡ଼ ଜଗୁଆଳିଟାଏ ନେଇ ବସାଇ ଦେଇଥାଏ । ଆପଣାର ମାନଟାକୁ ଦେଖାଇ ଆପଣା ପାଖକୁ ସମସ୍ତଙ୍କୁ ବାନ୍ଧି ଆଣିବ ବୋଲି ସିଏ ବିଚରା କେତେକେତେ ଫିକର କରି ନଥାଏ । କିନ୍ତୁ ସିଏ କୋଉଠି ହେଲେ ଆପଣାର ଦୁଆରଟିକୁ ଫିଟାଇ ପାରେ ନାହିଁ, ଚାରିଟା ନୟନରେ କେବେହେଲେ ସଂସାରକୁ ଦେଖିପାରେ ନାହିଁ, କାହାରି ପାଖରେ କଥା କହି ପାରେନାହିଁ । ସେ ସତେଅବା ଅଛୁଆଁ ହୋଇ ରହିଯାଏ । ବଡ଼ଲୋକ ହୁଏ, ବଡ଼ ପଣ୍ଡିତ ହୁଏ, ବଡ଼ ନେତା ହୁଏ ବା ବଡ଼ ଚଉକୀରେ ଯାଇ ବସେ । କିନ୍ତୁ ତଥାପି ଅଛୁଆଁ ହୋଇ ରହିଯାଏ ।

ଆପଣ କେବେ ଜଣେ ବଡ଼ ଅଧ୍ୟାପକଙ୍କୁ ଦେଖିଛନ୍ତି, ବଡ଼ ନେତାଙ୍କୁ ଦେଖିଛନ୍ତି, ବଡ଼ ସାହିତ୍ୟିକଙ୍କୁ ଦେଖିଛନ୍ତି ? ତାଙ୍କ ଜାତି ଗୁଡ଼ାକ ସବୁବେଳେ ମଣିଷଠାରୁ ଅଲଗା ହୋଇ ରହିଥାଏ । ଅଧ୍ୟାପକଙ୍କର ଜାତି ସେମାନେ ଯେଉଁମାନଙ୍କୁ ନେଇ ଅଧ୍ୟାପନା କରିବାକୁ ରହିଥାନ୍ତି, ସେମାନଙ୍କଠାରୁ ଅଲଗା ହୋଇ ରହିଥାଏ । ବଡ଼ ନେତାଙ୍କର ଜାତି ଅଧସ୍ତନ ଆଉ ସମସ୍ତଙ୍କଠାରୁ ଅଲଗା ହୋଇ ରହିଥାଏ ଏବଂ ବଡ଼ ସାହିତ୍ୟିକମାନେ ଆପଣାର ବଡ଼ପଣ ଗୁଡ଼ାକୁ ଭଲ କରି ଦେଖାଇ ପାରିବା ସକାଶେ ଅର୍ବାଚୀନ ତଥା ଅପ୍ରବୀଣ ଆଉ ସମସ୍ତଙ୍କ ଠାରୁ ଅଲଗା ହୋଇ ରହିଥାନ୍ତି । ଆପଣାର ଫମ୍ପାଗୁଡ଼ାକୁ ଲୁଚାଇବା ପାଇଁ ଅଧ୍ୟାପକେ ଏତେ ବଡ଼ ମୁଖାଟାଏ ପିନ୍ଧି ବସିଥାନ୍ତି, ଆପଣାକୁ ପ୍ରତାପଶାଳୀ ବୋଲି ଦେଖାଇ ପାରିବା ଲାଗି ମୁଖାଟାର ଉପରେ ସେ ଆପଣାର ବିଲେଇ ନିଶଗୁଡ଼ାକୁ ଫୁଲାଇ କରି ବସିଥାନ୍ତି । ଆପଣାର ଚାରିପାଖରେ ବହି ଗଦା କରି ବସିଥାନ୍ତି; ବହିଗୁଡ଼ାକ

ଯେ ଜଣେ ମଣିଷକୁ ଅନ୍ୟ ମଣିଷଙ୍କର ନିକଟ କରାଇ ଆଣେ, ବହିଗୁଡ଼ାକ ଯେ ମଣିଷର ହୃଦୟକୁ ଛୁଇଁପାରିବାରେ ଆଖି ଆଣିଦିଏ, ସେମାନେ ସେ କଥାକୁ ଗୋଟାସୁଦ୍ଧା ଭୁଲି ସାରିଥାନ୍ତି । ଜିଜ୍ଞାସୁ ଲାଗି ସେମାନଙ୍କର ଫାଟକ ଗୁଡ଼ାକ ସବୁବେଳେ ବନ୍ଦ ହୋଇ ରହିଥାଏ । ସେମାନେ ସଭାକୁ ଯାଆନ୍ତି, କମିଟିରେ ବସନ୍ତି, ଆଜି ଅମୁକ ହୁଅନ୍ତି ତ କାଲି ସମୁକ ହୁଅନ୍ତି, ମାତ୍ର ଆପଣାର ବଡ଼ ମୁଖାଟା ତଳେ ସେମାନେ କ୍ରମଶଃ ଶୁଖି ଶୁଖି ଯାଉଥାନ୍ତି । ଯେତିକି ବଡ଼ ହେଉଥାନ୍ତି, ସେତିକି ଅଧିକ ପରିମାଣରେ ଅକର୍ମଣ୍ୟ ଓ ଅବ୍ୟବହାର୍ଯ୍ୟ ହେବାରେ ମଧ ଲାଗିଥାନ୍ତି । ତେଣୁ ସେମାନେ ଯେଉଁଠି ଭାଡ଼ି ଭିତରେ ପାଟଯଥା ହୋଇ ପଗଡ଼ି ବାନ୍ଧି ଥାକକୁ ଥାକ ହୋଇ ବସିଥାନ୍ତି, ଚଳନ୍ତି ଚିତ୍ରକଳ୍ପଟି ଅନୁସାରେ ସେଗୁଡ଼ିକୁ ବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟ ବୋଲି କୁହାଯାଉଥିଲେ ମଧ, ସେଠି ପ୍ରକୃତରେ ବିଲୁଆ ଡ଼େଉଁଥାନ୍ତି, ମଣିଷମାନେ ନଥାନ୍ତି, ମଣିଷ ମଣିଷ ଭିତରେ ସେଠି କେବେହେଲେ ଭେଟ ହୁଏ ନାହିଁ । ସେଠି ପରୀକ୍ଷା ହେଉଥାଏ, ପାସ୍ ଫେଲ୍ ହେଉଥାଏ, ମାହାଳ ଓ ସଂସାରଗୁଡ଼ାକ ସମ୍ଭାଳି ହୋଇ ନ ପାରିଲେ ଆଖିପିଛୁଳାକେ ପୋଲିସ୍ ମାଡ଼ି ଆସନ୍ତି, ଭୟାଳୁମାନଙ୍କୁ ଅଭୟ ଦାନ କରନ୍ତି, ଏକୁଟିଆମାନଙ୍କୁ ସଙ୍ଗ ଦିଅନ୍ତି । ଅସଲ ଘରଟି କୋଉଦିନୁ ଭାଙ୍ଗି ସାରିଥାଏ, କିନ୍ତୁ ତଥାପି ମୁଖା ପିନ୍ଧି ବସିବାର ଛଇଗୁଡ଼ାକ ଛାଡ଼ି ନଥାଏ ।

ଜାତିଟାକୁ ହିଁ ଜୀବନର ସର୍ବୋତ୍ତମ ଅବଲମ୍ବନ ରୂପେ ମାନୁଥିବା ସମାଜରେ ବା ସଂସାରରେ ପଙ୍କଜ ଓ ପଦ୍ମନାଭ ସମସ୍ତେ ନେତା ହୋଇ ରହିବାକୁ ଇଚ୍ଛା କରୁଥାନ୍ତି ଏବଂ ନେତାଗୁଡ଼ାକ ବି ଘଡ଼ିକ ଭିତରେ ବଡ଼ ନେତା ହୋଇ ଯିବାକୁ ଚାହୁଥାନ୍ତି । ସେମାନେ ମଣିଷଙ୍କ ଉପରେ ରାଜତ୍ୱ କରି ବାହାରି ଥାଆନ୍ତି, ମଣିଷଙ୍କ ଉପରେ ଶାସନ କରି ସେମାନଙ୍କର ଭାଗ୍ୟଗୁଡ଼ାକୁ ବଦଳାଇ ଦେବେ ବୋଲି ବାହାରିଥାନ୍ତି ଓ ଏହି ଦେଶର ଭାଗ୍ୟଟାକୁ ମଧ ବଦଳାଇ ଦେବେ ବୋଲି ବାହାରିଥାନ୍ତି । ମାତ୍ର ସେମାନେ ଆଉ ଯାହା କରି ପାରନ୍ତୁ ବା ନ ପାରନ୍ତୁ ପଛକେ, ସେମାନେ ଅତି ସୁନିଶ୍ଚିତ ଭାବରେ ମଣିଷଙ୍କଠାରୁ ଅଲଗା ହୋଇ ରହି ଯାଆନ୍ତି । ସେମାନଙ୍କର ଘ୍ରାଣେନ୍ଦ୍ରିୟ ଭିତରେ କେଉଁଠି କି ଅଲକ୍ଷଣା ଗନ୍ଧଟାଏ ପଶି ଯାଇଥାଏ କେଜାଣି, ମଣିଷଗୁଡ଼ାକ ସେମାନଙ୍କୁ ପ୍ରକୃତରେ ଖାଲି ଗନ୍ଧାଇବାରେ ହିଁ ଲାଗନ୍ତି । ମଣିଷକୁ ଯେ ସାଙ୍ଗରେ ନେବାକୁ ହୁଏ, ମଣିଷ ସହିତ ଯେ ଏକା ପଂକ୍ତିରେ ବସିବାକୁ ହୁଏ, ସେମାନେ ସେଗୁଡ଼ାକ କୋଉକାଳୁ ଏକାବେଳେକେ ପାସୋରି ଦେଇଥାନ୍ତି । ଆପଣାକୁ ନେତା କରି ଗଢ଼ୁ ଗଢ଼ୁ, ଆପଣା କ୍ଷମତାର ଷ୍ଟ୍ରଙ୍ଗ୍-ରୁମ୍ ଗୁଡ଼ାକୁ ସଜାଡ଼ୁ ସଜାଡ଼ୁ ସେମାନେ ମଣିଷକୁ ମଣିଷ ବୋଲି ଗ୍ରହଣ କରିବାର ସହଜ ସତ୍ୟଟିକୁ କୁଆଡ଼େ ପାଟିରେ ପକାଇ ଦେଇଥାନ୍ତି । ମହାରାଜା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ କୁଆଡ଼େ

ଶତ୍ରୁ ଭୟରେ ଅର୍ଥାତ୍ ଅନ୍ୟ ମଣିଷଙ୍କର ଭୟରେ ପ୍ରତ୍ୟେକ ଦିନ ରାତିରେ ଅନ୍ତଃପୁରରେ ଆପଣାର ଶଯ୍ୟା ବଦଳାଉଥିଲେ ଏବଂ ସେଠାରେ କୌଣସି ପୁରୁଷ-ପ୍ରହରୀକୁ ନିଯୁକ୍ତ କରୁ ନ ଥିଲେ । ଆମର ନେତାମାନେ ମଧ୍ୟ ସେହିପରି ହୁଏତ ମୁଖା ଗୁଡ଼ାକ ଖସିଯିବା ଭୟରେ ସର୍ବଦା ମଣିଷଠାରୁ ଦୂରରେ ରହିବାକୁ ଇଚ୍ଛା କରନ୍ତି, ମଣିଷଠାରୁ ନିରାପଦ ହୋଇ ରହିବାକୁ ଚାହାନ୍ତି । ପ୍ରତ୍ୟେକ ଦିନ ପହଡ଼ ବଦଳାଇବାରେ ଲାଗିଥାନ୍ତି । ଆପଣାର ଅତି ଅନ୍ତରଙ୍ଗ ସଙ୍ଗୀମାନଙ୍କଠାରୁ ମଧ୍ୟ ଆପଣା ବାସ–ଗହ୍ବରର ନିଭୃତ ପର୍ଯ୍ୟଙ୍କ ଗୁଡ଼ାକୁ ଅଗୋଚର କରି ରଖିଥାନ୍ତି ।

ମଣିଷ ମଣିଷର ଅଧିକରୁ ଅଧିକ ନିକଟ ହୋଇ ରହିବ ବୋଲି କୁଆଡ଼େ ସାହିତ୍ୟର ଉନ୍ମେଷଣା କରା ହୋଇଥିଲା । ସେତେବେଳେ ସାହିତ୍ୟର ଜାତି ନ ଥିଲା । ପ୍ରେମରେ ପଡ଼ି ଯାଇଥିବା ଓ ସେଇଟିକୁ ପ୍ରକାଶ କରି ପାରୁଥିବା ପ୍ରତ୍ୟେକ ମଣିଷକୁ ସେତେବେଳେ ସାହିତ୍ୟିକ ବୋଲି କୁହାଯାଉଥିଲା । ଏବେ ଆଦୌ ପ୍ରେମରେ ନ ପଡ଼ି କେବଳ ପୋଷାକ ପିନ୍ଧି ପାରିଲେହିଁ ସାହିତ୍ୟ ହୋଇ ପାରୁଛି, ଆପଣାକୁ ସାହିତ୍ୟିକ ବୋଲି ବୋଲାଇ ହୋଇ ପାରୁଛି । କେବଳ ମୃଗୟା କରି ପାରିବାର କୌଶଳଟିକୁ ହିଁ ସାହିତ୍ୟର କୌଶଳ ବୋଲି ସ୍ୱୀକାର କରାଯାଇ ପାରୁଛି । ସାହିତ୍ୟର ଜଙ୍ଗଲ ଓ ସାହିତ୍ୟର ଗଡ଼ିଆଗୁଡ଼ାକହିଁ ସାହିତ୍ୟିକର ମୃଗୟାସ୍ଥାନ ରୂପେ କାର୍ଯ୍ୟ କରୁଛି । ସାହିତ୍ୟିକ ଆପଣାକୁ ଗୋଟାଏ ନିର୍ଧୂମ ଅଲଗା ଜାତି ବୋଲି ଭାବୁଛି । ସତେ ଯେମିତି ସିଏ ସିଆଡୁ ମୁଣ୍ଡରେ ସାହିତ୍ୟିକର ଶିରିପା ବାନ୍ଧି ଓ ହାତରେ ସାହିତ୍ୟିକର ଛତ୍ରୀ ଧରି ଏହି ସଂସାରରେ ଆସି ଅବତୀର୍ଣ୍ଣ ହୋଇ ପଡ଼ିଛି ଏବଂ ଏହିମାନଙ୍କର ଗୌରବ ବଢ଼ିବାକୁ ହିଁ ସିଆଣିଆ ଭାବରେ ସାହିତ୍ୟର ଗୌରବ ବଢ଼ିଲା ବୋଲି କୁହାଯାଉଛି ଓ ସାହିତ୍ୟର ଗୌରବ ବଢ଼ିଲେ ଜାତିର ଗୌରବ ମଧ୍ୟ ବଢ଼ିଗଲା ବୋଲି ହୁଙ୍କାର ଦିଆଯାଉଛି । ସାହିତ୍ୟିକ ଯେପରି ଏଠୁ କିଛି ନେଇ ନାହିଁ, ସାହିତ୍ୟର ବାହାରେ ରହିଥିବା ଅଗଣିତ କଞ୍ଚା ମଣିଷଗୁଡ଼ାଙ୍କର ଯେପରି ସାହିତ୍ୟିକକୁ ଗଢ଼ିବାରେ ଆଦୌ କୌଣସି ଅବଦାନ ନାହିଁ ! ସାହିତ୍ୟ କ୍ରମେ ଗୋଟାଏ ବିଶେଷ ଧନ୍ଦାରେ ପରିଣତ ହୋଇଗଲାଣି ଓ ଏହି ଚମତ୍କାର ନ୍ୟାୟଟି ଅନୁସାରେ ସାହିତ୍ୟିକ ଆପଣାକୁ ସତେଅବା ଗୋଟାଏ ବିଶେଷଜ୍ଞ ବୋଲି ଭାବି ନେଲାଣି ଓ ବିଶେଷଜ୍ଞ ପରି ବିଶେଷ ମର୍ଯ୍ୟାଦାମାନ ଦାବୀ କରିବାକୁ ବାହାରିଲାଣି । ସାହିତ୍ୟିକ ଭାବୁଛି, ଆମ ଦେଶର ପଙ୍କଗୁଡ଼ାକରେ ତା'ର ଆଦୌ କୌଣସି ଭାଗ ନାହିଁ, ଆମ ଦେଶର ଲାଞ୍ଛନାଗୁଡ଼ାକ ଲାଗି ତା'ର ଆଦୌ ଭାଗ ନାହିଁ । କେବଳ ସଭାଗୁଡ଼ାକରେ ହିଁ ତା'ର ସ୍ଥାନ ରହିଛି, କେବଳ ଉତ୍ସବ ମଣ୍ଡାଇବାରେ ହିଁ ତା'ର ଭାଗ ରହିଛି, କେବଳ ମଲ୍ଲୀମାଳଗୁଡ଼ାକ ଉପରେ ତା'ର ଦାବୀ ରହିଛି । ଜୀବନର ପଙ୍କସ୍ତରଗୁଡ଼ାକରେ ସିଏ ଗୋଟାଏ ମହାବଞ୍ଚକ ଓ

ମହାଲୁବ୍‌ଧକ ହୋଇ ରହିଥାଉ ପଛକେ, ଯଦି ସିଏ ସାହିତ୍ୟ-ଖଡ଼ିରେ କୋଉଠି ଗାରଟାଏ ବି ମାରିଦେଇ ପାରିଛି ଏବଂ ଆପଣାର ସେଇ ପାଇଟିଟିକୁ ବଡ଼ମାନଙ୍କର ସୁଦୃଷ୍ଟିକୁ ଆଣି ପାରିଛି, ତେବେ ତା'ର ଆଉ କିଛିହେଲେ ଭାବିବାକୁ ନାହିଁ । ଆପଣାର ଜୀବନଟାକୁ ସେ ବଡ଼ ଚମତ୍କାର ଭାବରେ ଦୁଇଭାଗ କରି ବାଣ୍ଟି ଦେଇଛି । ଗୋଟାଏ ପାଖରେ ସମ୍ମାନ ଥରକି ଅନ୍ୟ ପାଖଟିର ଅଧମତାଗୁଡ଼ାକୁ ସେ ଆପଣାଠାରୁ ଅତି ଚମତ୍କାର ଭାବରେ ବିସ୍ମୃତ କରି ରଖିପାରୁଛି । ଗୋଟାଏ ବଡ଼ ଜାତିଆଣ ସଭାପରି ସାହିତ୍ୟ ଦିବ୍ୟ ଉପଚାରରେ ଚାଲୁଛି । ଯେଉଁ ଦେଶ ତା'ର ସାହିତ୍ୟିକମାନଙ୍କୁ ସମ୍ମାନ ଦେଇ ଜାଣିଲା ନାହିଁ, ସେହି ଦେଶରେ ମଣିଷଗୁଡ଼ାକ କ୍ରମେ ବାନରକୂଳରେ ପରିଣତ ହୋଇ ଯିବେ ବୋଲି ଝିଙ୍କା-ସମାନ ଦିଆଯାଉଛି । ସାହିତ୍ୟର ସେବା କରି ସାହିତ୍ୟିକ ଏ ଦେଶରେ ତା'ର ଉପଯୁକ୍ତ ବର୍ଦ୍ଧନ ପାଉନାହିଁ ବୋଲି ଅଭିଯୋଗ କରାଯାଉଛି । ବାଣରୋଷଣୀ କରାହୋଇ ଏହି ଜାତିଆଣ ସଭାଗୁଡ଼ାକ ଚାଲିଛି । ସଭା-କୋଠାରେ ସଜ୍ଜିତ ହୋଇ ଚହଟୁଥିବା ଓ ନଗରୀକୁ ଉଲୁସାଇ ଦେଉଥିବା ରଙ୍ଗ ଆଲୁଅ ଗୁଡ଼ାକ ନଈ ସେପାରିରୁ ମଧ ଦେଖାଯାଉଛି । ଏ ଜାତି ଯେପରି ଆମ ଜାତି ନୁହନ୍ତି—ଦୂରରୁ ଥାଇ ମଣିଷଗୁଡ଼ାକ ଏଇଆ ଭାବୁଛନ୍ତି ।

ହଁ, ଏମାନେ ଆମ ଜାତିର ନୁହନ୍ତି । ଏ ବଡ଼ ଅଧ୍ୟାପକ, ବଡ଼ ନେତା ଓ ଏହି ବଡ଼ ସାହିତ୍ୟିକ,—ଏମାନେ କେହି ଆମ ଜାତିର ନୁହନ୍ତି । ଏମାନେ ଆପଣାର ଦୁର୍ଗ ଭିତରେ ରହନ୍ତି, କାଳିସୀ ଲାଗିଲା ବେଳେ ଆମ ଦୁଆରକୁ ନାଚିବା ପାଇଁ ଆସନ୍ତି, ଭୋଗ ଖାଇବାକୁ ଆସନ୍ତି ଓ ସ୍ୱୀକୃତି ନେବାକୁ ଆସନ୍ତି । ଯୁଗାଧିକାରର ମୁକ୍ତିମଣ୍ଡପ ଗୁଡ଼ାକରେ ପାଣି ଛିଞ୍ଚି ହୋଇ ପଡ଼ି ଏମାନେ ମଣିଷ ହୋଇ ରହିବାର ଏହି ଅଧମ ଭୂମିଟାରୁ ଅନେକ ଉପରକୁ ଉଠି ଯାଇଛନ୍ତି, ମଣିଷ ସହିତ ମଣିଷ ହୋଇ ରହିବାର ପ୍ରୟୋଜନଟିକୁ ପାର ହୋଇ ଯାଇଛନ୍ତି । ମଣିଷ ହେଲେ ଭଲ ପାଇବାକୁ ହୁଏ, ମଣିଷ ହେଲେ ଅନ୍ୟ ସଭିଙ୍କ ସହିତ ସାଥୀ ହୋଇ ବାହାରିବାକୁ ହୁଏ ଓ ବାଟ ଚାଲିବାକୁ ହୁଏ । ମଣିଷ ହେଲେ ଜୀବନଟାକୁ ଗୋଟାସୁଦ୍ଧା ସ୍ପର୍ଶ କରି ପାରିବାକୁ ହୁଏ ଓ ତାହାରି ଭିତରେ ଗୋଟାସୁଦ୍ଧା ଅବଗାହିବାକୁ ହୁଏ । ଜାତିର ମୁଖା ପିନ୍ଧିଲେ ଏଗୁଡ଼ାକ କିଛି କରିବାକୁ ପଡ଼େ ନାହିଁ । ଖାଲି ଅଲଗା ଓ ଡ଼ୋରଛିଣ୍ଡା ହୋଇ ରହିବାକୁ ହୁଏ, ଖାଲି ସତର୍କ ହୋଇ ରହିବାକୁ ହୁଏ, ଖାଲି ଗଣ୍ଠି ପକାଇ ଆପଣାକୁ ଗୁପ୍ତ କରି ରଖିବାକୁ ହୁଏ । ଆମର ନେତା, ଆମର ଅଧ୍ୟାପକ, ଆମର ବଡ଼ଲୋକ ଓ ଆମର ସାହିତ୍ୟିକ ମାନଙ୍କର ଗଣ୍ଠିଗୁଡ଼ାକ ଯେଉଁଦିନ ଖୋଲି ଯାଇପାରନ୍ତା, ହୁଏତ ସେମାନେ ସେଇଦିନ ଯାଇ ମଣିଷ ହୋଇ ପାରନ୍ତେ । ସେତେବେଳେ ନେତା ମଣିଷକୁ ସାଙ୍ଗରେ ନେଇ ଯିବା ଲାଗି ସାହସ କରି ପାରନ୍ତା, ସାହିତ୍ୟିକ ସାହିତ୍ୟକୁ ଗୋଟାଏ ରମ୍ୟ ସିନ୍ଦୂକ ପରି ବ୍ୟବହାର ନକରି ତାହାକୁ

ସହଭୋଜନର ଏକ ପରମ-ଅବସର ରୂପେ ବ୍ୟବହାର କରି ପାରନ୍ତା । ଆମ ଅଧ୍ୟାପକ ଗୁଡ଼ାକଙ୍କର ଗଣ୍ଠି ଫିଟିଗଲେ ସେମାନେ ଆପଣାର ବିଦ୍ୟାଟିର ମାଧ୍ୟମରେ ଜଗତକୁ ଓ ଜୀବନକୁ ଭଲ ପାଇ ଶିଖନ୍ତେ, ଜଗତ ଓ ଜୀବନଠାରୁ ଏପରି ଭାବରେ ଅନ୍ୟମନା ଓ ଅନ୍ୟରତି ହୋଇ ରହି ଯାଆନ୍ତେ ନାହିଁ । ଗଣ୍ଠି ଫିଟି ଯାଆନ୍ତା, ଅର୍ଥାତ୍ ଜାତି ଚାଲି ଯାଆନ୍ତା, ଦମ୍ଭ ଦୂର ହୋଇ ଯାଆନ୍ତା; ମାନୀର ମାନ ଭାଙ୍ଗନ୍ତା, ଛଦ୍ମବେଶୀର ବେଶଗୁଡ଼ାକ ଫିଟି ତଳେ ପଡ଼ି ଯାଆନ୍ତା । ଆମ ସମସ୍ତଙ୍କ ଭିତରେ ସେମାନେ ସମସ୍ତେ ମଣିଷ ବୋଲି ସ୍ୱୀକୃତ ହୋଇ ଆସନ୍ତେ । ମୁଖା ଭିତରୁ ମଣିଷଯାକ ବାହାରି ଆସନ୍ତେ ।

ସେହି ମଣିଷଗୁଡ଼ାକ ମୁଖା ଭିତରୁ ବାହାରି ଆସିବାହିଁ ଆମର ସବୁଠାରୁ ବଡ଼ ସମସ୍ୟା ଏବଂ ଆମେ ସେଥିଲାଗି ପ୍ରସ୍ତୁତ ହୋଇ ପାରୁ ନଥିବାରୁ ଆମଲାଗି ସବୁଠାରୁ ଅଧିକ ଜଟିଳ ସମସ୍ୟା । ମୁଖାଗୁଡ଼ିକ ଭିତରୁ ବାହାରି ଆସି ପାରିଲେ ଆମର ଅଧ୍ୟାପନା ବଦଳିଯିବ, ଆମର ନେତୃତ୍ୱ ବଦଳିଯିବ, ଆମର ସାହିତ୍ୟଟା ମଧ୍ୟ ବଦଳିଯିବ । ଏଗୁଡ଼ାକ ସମସ୍ତେ ଜୀବନର ଦ୍ୟୋତକ ରୂପେ କାର୍ଯ୍ୟ କରି ପାରିବେ । ବର୍ତ୍ତମାନ ମଣିଷକୁ ମଣିଷଠାରୁ ଦୂରଛଡ଼ା କରି ରଖିବାରେ ଏମାନେ ବୋଧହୁଏ ସବୁଠାରୁ ଅଧିକ ସହାୟତା କରୁଛନ୍ତି । ଗୋଟାଏ ଗୋଟାଏ ମୁଖା ପିନ୍ଧି ବା ଖୋଳ ଗଳାଇ ଦେଇ ଏମାନେ ଗୋଟାଏ ଅଲଗା ଜାତି ହୋଇ ରହିଛନ୍ତି, ସମସ୍ତଙ୍କ ଠାରୁ ଅଲଗା ହୋଇ ରହିବାକୁହିଁ ତିଷ୍ଠି ରହିବାର ଏକମାତ୍ର ପନ୍ଥା ବୋଲି ବିଚାରୁଛନ୍ତି । ଏହି ମୁଖାଗୁଡ଼ାକ ଖସିବ କିପରି ? ଆପଣାର ଖୋଳଗୁଡ଼ାକ ଅପେକ୍ଷା ଆପଣାକୁ ଅନେକ ଅଧିକ ବୋଲି ଅନୁଭବ କଲେ ଯାଇ ମୁଖାଗୁଡ଼ାକ ଖସିଯାଇ ପାରିବ । ଆପଣାର ମଣ୍ଡଣିଗୁଡ଼ାକ ଠାରୁ ଆପଣାକୁ ଅଧିକ ବୋଲି ଆବିଷ୍କାର କରି ପାରିଲେ ଯାଇ ସେହି ମଣ୍ଡଣିଗୁଡ଼ାକର ହୁଏତ କୌଣସି ମୂଲ୍ୟ ରହିବ । ସେତେବେଳେ ସେଗୁଡ଼ାକ ଆମ ଜୀବନକୁ କଦାପି ଗୋଟାସୁଦ୍ଧା ଘୋଡ଼ାଇ ପକାଇବାକୁ ଆସିବେ ନାହିଁ, ଜୀବନକୁ ଆହୁରି ଅଧିକ ସମଗ୍ର କରି ଦେଖାଇବାରେ ହିଁ ସାଧନ ହୋଇ ରହିବେ । ମୋ' ଜାତି ହେଉଛି ମୋ'ର ଗୋଟାଏ ଖୋଳ, ମୋ'ର ଜାତି ହେଉଛି ମୋ'ର ଗୋଟାଏ ମଣ୍ଡଣି ମାତ୍ର, ଆପଣାର ହୃଦୟ ଭିତରୁ ଏହିଭଳି ଏକ ଦୃଢ଼ ପ୍ରତ୍ୟୟର ଭରସା ପାଇବା ସଙ୍ଗେ ସଙ୍ଗେ ଜାତିଟାକୁ କାମୁଡ଼ି ଧରି ବସି ରହିବାଲାଗି ଆମର ସମସ୍ତ ଖୋଇ କୁଆଡ଼େ ଭୁଲି ହୋଇଯିବ ।

ଏବଂ ଆପଣାର ଅସଲ ଦୀକ୍ଷାରେ ଯବନ ହୋଇ ପାରିଲେ ଯାଇ ଏସବୁ ହେବ । ଆପଣାର ଅସଲ ଘରଟିକୁ ଖୋଲା ରଖି ପାରିଲେ ଏକଥା ହେବ । ଜାତି ଚାଲିଗଲେ ଯାଇ ସବୁଠାରେ ସହଜ ହୋଇ ପ୍ରବେଶ କରି ହେବ, ସବୁକୁ ସ୍ପର୍ଶ କରିବାର ଓ ଅନୁଭବ

କରିବାର ଅଧିକାର ମିଳିଯିବ । ଯବନର ଘରେ କୌଣସି କାନ୍ଥ ନଥାଏ, ଯବନର ଆଖିରେ କୌଣସି ପ୍ରକାର ବାଡ଼ ବସି ନଥାଏ । ଯବନ ପୁରୁଣା ଭିତରେ ଯେତିକି ଶ୍ରଦ୍ଧାରେ ପ୍ରବେଶ କରିପାରେ, ନୂଆ ଭିତରେ ମଧ୍ୟ ଠିକ୍ ସେତିକି ଶ୍ରଦ୍ଧାରେ ପ୍ରବେଶ କରିପାରେ । ତା'ର ପଇତା ଗୁଡ଼ାକ କେବେହେଲେ ମାରା ହୁଏ ନାହିଁ, କୌଣସି ପ୍ରକାରର ବାହ୍ୟ ସ୍ପର୍ଶ ତାକୁ ଦୂଷିତ କରିପାରେ ନାହିଁ । ଯବନ ଦେଉଳ ବାରେ ନାହିଁ, ଦିଅଁ ବାରେ ନାହିଁ । ଯେଉଁଠି ତାକୁ ଦେଉଳର ପାହାଚଟି ମନା ହୋଇ ରହିଥାଏ, ସେଠି ସେ ପାହାଚ ତଳେ ହିଁ ଠିଆ ହୋଇ ଦିଅଁଙ୍କର ପ୍ରାର୍ଥନା କରେ, ଦିଅଁଙ୍କୁ ପାଏ । ଏମିତି କେତେ କେତେ ଯବନଙ୍କର କାହାଣୀ ଆମକୁ ଭକ୍ତିଶାସ୍ତ୍ରରେ ଦେଖିବାକୁ ମିଳିବ । କୋଉଠି ଠାକୁରଙ୍କର ଆରତି ବେଳେ ଯବନକୁ ଅଜାତିଆ ବୋଲି କହି ଦେଉଳ ମନା ହୋଇଯାଏ ତ ସିଏ ଯେଉଁଠି ଥାଏ, ସେଇଠି ଠାକୁରଙ୍କର ଆରତି ସଙ୍ଗୀତ ଗାଏ, ସ୍ୱୟଂ ଚନ୍ଦ୍ର ଓ ତପନ ତାଙ୍କର ଆରତି କରିବାରେ ଲାଗିଛନ୍ତି ଓ ସାରା ଆକାଶ ତାଙ୍କରି ପାଇଁ ଚାନ୍ଦୁଆ ହୋଇ ଟଣା ହୋଇଛି ବୋଲି ସ୍ତୋତ୍ର ଗାନ କରେ । ସିଏ ଇତିହାସରେ ଯବନକୁ ପ୍ରତିଷ୍ଠିତ କରାଏ, ସିଦ୍ଧ କରାଏ ।

ଯବନ ହେଉଛି ଇତିହାସରେ ଭକ୍ତ । ପ୍ରତିଷ୍ଠିତର ଭକ୍ତ ନୁହେଁ, ଅନାଗତର ଭକ୍ତ । ଯବନର ପରିଚୟ ସବୁ ଯୁଗରେ ଜଣେ ଶ୍ରଦ୍ଧାବାନ୍ ମଣିଷର ପରିଚୟ । ଜାତିଆଣ ମଣିଷ ସବୁବେଳେ ସତର୍କ ସୁନିରାପଦ ହୋଇ ରହିବାକୁ ହିଁ ପରମଧର୍ମ ବୋଲି ଧରି ନେଇଥାଏ । ଯବନ ଯେତିକିରେ ଥାଏ, ତା'ଠାରୁ ଅଧିକରେ ବିଚରଣ କରିବା ଲାଗି ଇଚ୍ଛା କରେ, ଆହୁରି ଅଧିକ ଲାଗି ମନ ବଳାଏ ଓ ପ୍ରାୟ ଏକ ଦୁଃସାହସ ସହିତ ଆପଣା ଭଲ ପାଇବାର ସୀମା ଗୁଡ଼ିକ ସତତ ବଢ଼ାଇବା ସକାଶେ ଆଗ୍ରହ ରଖିଥାଏ । ଜାତି ଚାଲିଯିବ ବୋଲି କୌଣସି ଭୟ କରେ ନାହିଁ । ନିଆଁରେ ଅର୍ଥାତ୍ ନୂଆ ଶ୍ରଦ୍ଧାରେ ଆପଣାକୁ ବାର ବାର ପରଖି ଦେଖିବାକୁ କୌଣସି କୁଣ୍ଠା ଦେଖାଏ ନାହିଁ । ଯୁଗ ତାକୁ ଅମାନିଆ ବୋଲି କହି ଶାସ୍ତି ଦେବାକୁ ବାହାରେ, ମାତ୍ର ସମ୍ଭବତଃ ଯୁଗର ଅସଲ ବନ୍ଧୁ ହିସାବରେ ଯବନ ଆପଣା ସହିତ ଯୁଗଟାକୁ ମଧ୍ୟ ଆଗେଇ ନେଇଯାଏ, ଯୁଗକୁ ବଦଳାଇ ଦେବାରେ ନିମିତ୍ତ ହୁଏ ।

ତା ୮ ।୦୫ ।୭୫ରିଖ



# ପାଞ୍ଚ

ମେଣ୍ଢା ଯେ ଭୀରୁ ଓ ଛେଳି ଯେ ସାହସୀ, ଏକଥା ମେଣ୍ଢା କିମ୍ବା ଛେଳି ହୁଏତ ନିଜେ କେବେହେଲେ ଜାଣି ନ ଥିବେ । ବୈଜ୍ଞାନିକମାନେ ବାହାରୁ ଯେପରି ଭାବରେ ମେଣ୍ଢାଙ୍କୁ ଓ ଛେଳିଙ୍କୁ ଦେଖିଛନ୍ତି, କେବଳ ସେହି ଈଷତ୍ ଦୃଷ୍ଟି ବା ଆଂଶିକ ଦୃଷ୍ଟି ଗୁଡ଼ାକ ଦ୍ୱାରା ପରିଚାଳିତ ହୋଇ ସେମାନେ ମେଣ୍ଢା ଛେଳିଙ୍କ ବିଷୟରେ କାଳାନୁକ୍ରମେ କେତେଟା ଅନୁମାନ କରି ଆସିଛନ୍ତି । ସେମାନେ ଭିତରୁ କିଏ ମେଣ୍ଢାର ଦେହଟାକୁ ଫାଡ଼ି କରି ଦେଖିଛି, ପୁଣି ଆଉ କିଏ ଛେଳିମାନଙ୍କର ରକ୍ତ ବିଷୟରେ କେତେ ଭିଆଣର କେତେ ପ୍ରକାର ଗବେଷଣା ବି କରିଛି । ମେଣ୍ଢାଙ୍କର ଶିଙ୍ଗ ଓ ଛେଳିଙ୍କର ଶିଙ୍ଗରେ କେତେ ପ୍ରକାରର କ'ଣ କ'ଣ ପ୍ରଭେଦ ରହିଛି, ଜନ୍ତୁ-ବୈଜ୍ଞାନିକମାନେ ସେଗୁଡ଼ାକୁ ନିରୀକ୍ଷଣ କରି ଦେଖିଛନ୍ତି ଓ ସେସବୁ ବିଷୟରେ କେତେଟା ସାଧାରଣ ନିୟମ ବାହାର କରିଛନ୍ତି । ସେହି ନିୟମଗୁଡ଼ାକ ବିଭିନ୍ନ କାଳରେ ବୈଜ୍ଞାନିକ ନିୟମ ବୋଲି ସ୍ୱୀକୃତ ହୋଇଛି ଓ ସେଗୁଡ଼ାକର ବୟାନ କରିଥିବା ଅଧ୍ୟବସାୟୀ ପର୍ଯ୍ୟବେକ୍ଷକ ଓ ପଣ୍ଡିତମାନେ ବୈଜ୍ଞାନିକ ବୋଲି ସ୍ୱୀକୃତ ହୋଇଛନ୍ତି । କିନ୍ତୁ ମେଣ୍ଢା ବା ଛେଳିର ପେଟ ଭିତରେ ପ୍ରକୃତରେ ଯେ କ'ଣ ଅଛି, ବୈଜ୍ଞାନିକମାନେ ସେହି ବିଷୟରେ ପ୍ରକୃତରେ କେତେ ଟିକିଏ ଜାଣିଛନ୍ତି । ଏଠାରେ ପେଟ ଭିତରେ ବୋଲି କହିଲାବେଳେ ପେଟଟାକୁ ଚିରିଦେଲେ ଭିତରେ ଯାହାସବୁ ରହିଥିବାର ଆଖିକୁ ଦେଖାଯାଏ, ସେଇଟା ବିଷୟରେ ଆଦୌ କୁହାଯାଉ ନାହିଁ । ପେଟ ଚିରିଲେ ତ ଅନ୍ତ ଗୁଡ଼ାକ ଦିଶେ, କ୍ଷୁଦ୍ର ଓ ବୃହତ୍ ସବୁ ଅନ୍ତ ଗୁଡ଼ାକ ଦିଶେ; ଯକୃତ୍‌ଟା ଦିଶେ ବା ଆଉ ଆଉ ଟିକିଏ ଉପର ଆଡ଼କୁ ଗଲେ ହୁଏତ କଲିଜାଟା ବା ଫୁସ୍‌ଫୁସ୍ ଦୁଇଟା ଦିଶେ । ଆଉ ଟିକିଏ ପାଖକୁ ଯାଇ ନିରୀଖି ଦେଖିଲେ ପିତ୍ତଟା ଠିକ୍ କେଉଁଠାରେ ଅଛି, ସେକଥା ମଧ୍ୟ ଦିଶିଯାଏ । ମଣିଷଙ୍କର ଯେମିତି ଦିଶେ, ମାଙ୍କଡ଼ଙ୍କର ବି ଠିକ୍ ସେମିତି ଦିଶେ; ଛେଳିଙ୍କର ଦିଶେ, ମେଣ୍ଢାଙ୍କର ବି ଦିଶେ; ବୈଜ୍ଞାନିକମାନଙ୍କର ଲାବୋରେଟରି ଘରେ ବେଙ୍ଗ, ମୂଷା, ମାଛି ବା ଅନ୍ୟ ଜୀବଙ୍କର ବି ନିଶ୍ଚୟ ସେମିତି ଦେଖା ଯାଉଥିବ ।

ଏଠାରେ ପେଟ ଭିତରେ କହିଲେ ମନ ଭିତରେ ବୋଲି ବୁଝାଇବ । ଛେଳିର ମନ ଭିତରେ ପ୍ରକୃତରେ କ'ଣ ଥାଏ ? ମେଣ୍ଢାର ମନ ଭିତରେ ବି କ'ଣ ଥାଏ ? ଛେଳି ଅଥବା ମେଣ୍ଢା ଭିତରେ ଛେଳିତ୍ୱ ଓ ମେଣ୍ଢାତ୍ୱ ନାମକ ଏପରି କ'ଣ ବିଶେଷ ଦ୍ରବ୍ୟଟି ରହିଥାଏ, ଯେଉଁଥିପାଇଁ କି ଛେଳି ଛେଳି ହୋଇ ରହେ ଓ ମେଣ୍ଢା ମେଣ୍ଢା ହୋଇ ରହେ ? ଛେଳି ଆପଣାର ଛେଳିତ୍ୱ ସମ୍ବନ୍ଧରେ ସଚେତନ ହୋଇ ରହିଥାଏ କି ? ମେଣ୍ଢା ଆପଣାର ମେଣ୍ଢାତ୍ୱ ସମ୍ବନ୍ଧରେ ବି ସଚେତନ ହୋଇ ରହିଥାଏ କି ? ଆମେ ମଣିଷମାନେ ଯେମିତି ଆପଣା ଆପଣା ବିଷୟରେ ଅଳ୍ପ ବହୁତ ସଚେତନ ହୋଇ ରହି ପାରୁଛୁ, ଛେଳି ଓ ମେଣ୍ଢା ସେହିପରି ସେମାନଙ୍କ ନିଜ ବିଷୟରେ ସଚେତନ ହୋଇ ରହିଥାନ୍ତି କି ? ସ୍ୱୟଂ ଛେଳି ବା ମେଣ୍ଢା ନ ହେଲେ ଏ କଥାଟିର ଏକ ନିଃସନ୍ଦେହ ଉତ୍ତର ବା କିଏ କିପରି ଦେଇ ପାରିବ ? ଛେଳି ଓ ମେଣ୍ଢାଙ୍କୁ ବାହାରୁ ଦେଖି ସେମାନଙ୍କର ଭିତରଟା ବିଷୟରେ କିଛି ଅନୁମାନ କରିବା ବ୍ୟତୀତ ପ୍ରକୃତରେ କିଏ ଆଉ କ'ଣ କରି ପାରିବ ?

ଏବଂ ଯଦି ଛେଳି ବା ମେଣ୍ଢା ସେମାନଙ୍କର ନିଜ ନିଜର ଛେଳିତ୍ୱ ଅଥବା ମେଣ୍ଢାତ୍ୱ ସମ୍ବନ୍ଧରେ ଆଦୌ କିଛିହେଲେ ସଚେତନତା ରଖି ନ ଥାନ୍ତି, ତେବେ ଛେଳିତ୍ୱ ଓ ମେଣ୍ଢାତ୍ୱ ବୋଲି ଗୋଟାଏ ଗୋଟାଏ ପଦାର୍ଥ ପ୍ରକୃତରେ ଅଛି ବୋଲି ଆମେ ଅନୁମାନ କରି ପାରିବା କି ? ଆମେ ମଣିଷମାନେ ଛେଳି ଅଥବା ମେଣ୍ଢାକୁ ଦେଖି ଛେଳିତ୍ୱ ଓ ମେଣ୍ଢାତ୍ୱ ବୋଲି ଯାହା ଅନୁମାନ କରିଥାଉ, ତାହାକୁ ହିଁ ଅତି ନିରାପଦରେ ସେହିସବୁ ପଦାର୍ଥ ବୋଲି କେତେଦୂର କୁହାଯାଇ ପାରିବ ? ଛେଳି ଯାହା କିଛି କରେ, ସେଗୁଡ଼ାକୁ ଆପଣାର ଏକ ସହଜାତ ପ୍ରବୃତ୍ତି ରୂପେ ହିଁ କରେ ଏବଂ ମେଣ୍ଢା ଯାହା କିଛି କରେ, ସେଗୁଡ଼ାକୁ ମଧ୍ୟ କେବଳ ଏକ ସହଜାତ ଅର୍ଥାତ୍ ଜନ୍ମଜାତ ପ୍ରବୃତ୍ତି ରୂପେ ହିଁ କରୁଥାଏ । ସେମାନଙ୍କର କ୍ଷେତ୍ରରେ କୌଣସି ପ୍ରକାର ନିର୍ବାଚନର ପ୍ରଶ୍ନ ନ ଥାଏ, ଅର୍ଥାତ୍ ଏଇଟା ନ କରି ସେଇଟା କରିବାର ବା ସେଇଟାର ବଦଳରେ ଏଇଟାକୁ କରିବାର କୌଣସି ଅବକାଶ ହିଁ ନ ଥାଏ । ସେଇଟାକୁ ନ କରି ସେମାନେ ଏଇଟାକୁ କାହିଁକି ବା କରୁଛନ୍ତି, ସେ ବିଷୟରେ ମଧ୍ୟ ଛେଳି ବା ମେଣ୍ଢାଙ୍କ ପାଖରେ କୌଣସି ପ୍ରକାର ସଚେତନ ଯୁକ୍ତିସିଦ୍ଧତା ଆଦୌ ନ ଥାଏ । ଆପଣାର କ୍ରିୟା ବା ପ୍ରତିକ୍ରିୟା ଗୁଡ଼ାକୁ ସତେ ଅବା କୌଣସି କମ୍ପିଉଟର ଭିତରର ସ୍ମୃତି ଗୁଡ଼ାକ ପରି ଆଗରୁ ଖଞ୍ଜି ଦିଆ ହୋଇ ରହିଥାଏ । ତେଣୁ ସବୁ ଛେଳି ଗୋଟାଏ ପ୍ରକାରର ଆଚରଣ କରନ୍ତି ଓ ସବୁ ମେଣ୍ଢା ମଧ୍ୟ ପ୍ରାୟ ସେହି ଗୋଟାଏ ପ୍ରକାରର ହିଁ ଆଚରଣ କରନ୍ତି । ଜନ୍ତୁଙ୍କର ପଙ୍ଗତଟି ମଧ୍ୟରେ ଏକମାତ୍ର ମନୁଷ୍ୟ ହିଁ ଅନ୍ୟ ସମସ୍ତଙ୍କର ଆଚରଣକୁ ଅବଲୋକନ କରିବାକୁ ସମର୍ଥ ହୁଏ, ଛେଳିକୁ ମେଣ୍ଢାଠାରୁ ବାରିପାରେ, ମେଣ୍ଢାକୁ ମଧ୍ୟ ଛେଳିଠାରୁ ଅଲଗା ବୋଲି ବାରି ନେଇପାରେ ।

ଛେଳିକୁ ମେଣ୍ଢାଠାରୁ ଅଲଗା କରି ବାରିବା ଓ ମେଣ୍ଢାକୁ ଛେଳିଠାରୁ ମଧ୍ୟ ଅଲଗା କରି ବାରିନେବା ମଧ୍ୟରେ ହିଁ ବୁଦ୍ଧିପର୍ବର ମଣିଷ ନିଜର ଫନ୍ଦାଗୁଡ଼ାକୁ ଆଦୌ ସୀମାବଦ୍ଧ କରି ରଖି ନାହିଁ, ମେଣ୍ଢା ଓ ଛେଳିଙ୍କର ରୀତିଗୁଡ଼ାକୁ ସିଏ ସତେଅବା ଗୋଟାଏ ଦର୍ପଣ ପରି ବ୍ୟବହାର କରି ମନୁଷ୍ୟ-ସମାଜର ଭିନ୍ନ ଭିନ୍ନ ଗୋଠକୁ ମଧ୍ୟ ଦେଖିବାକୁ ଚେଷ୍ଟା କରିଛି । ମଣିଷର ସାମୂହିକ ଜୀବନର ପର୍ଯ୍ୟବେକ୍ଷଣ ଓ ପର୍ଯ୍ୟାଲୋଚନା କରି ସାମ୍ପ୍ରତିକ ସ୍ପେନ୍‌ର ଜଣେ ଲେଖକ ସାଲ୍‌ଭାଡ଼ୋରେ ଡ଼ି ମାଡ଼ାରିଆଗା ତାହାକୁ ଛେଳି ମେଣ୍ଢାଙ୍କର ଜୀବନ-ଦର୍ପଣ ଉପରେ ତନଖି ଦେଖିବାର ଗୋଟିଏ ରୁଚିମନ୍ତ ପ୍ରୟାସ କରିଛନ୍ତି । ଏହି ବିଷୟଟିକୁ ନେଇ ସେ କେତେ କ'ଣ ଘଣ୍ଟା ଚକଟା କରିଛନ୍ତି, ପୃଥିବୀସ୍ଥ ବିଭିନ୍ନ ଜାତିର ଇତିହାସ ତଥା ବର୍ତ୍ତମାନକୁ ସେ ମୂଲ୍ୟାଙ୍କନ କରି ଦେଖିଛନ୍ତି ଓ ସେହି ବିଷୟରେ ଏକ ଖାସ୍ ଗ୍ରନ୍ଥ ମଧ୍ୟ ପ୍ରଣୟନ କରିଛନ୍ତି । ତାଙ୍କର ବିଚାର-ସନ୍ଦର୍ଭଟି ଅନୁସାରେ ସମଗ୍ର ମନୁଷ୍ୟଗୋଷ୍ଠୀକୁ ଛେଳି ଓ ମେଣ୍ଢା ଏହିପରି ଦୁଇଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରିବ । ମାଡ଼ାରିଆଗା କହିଛନ୍ତି ଯେ ପୃଥିବୀରେ ଏପରି ଗୋଟିଏ ଗୋଟିଏ ଜାତି ଅଛନ୍ତି, ଇତିହାସରେ ତଥା ଦୈନନ୍ଦିନ ଜୀବନରେ ଯାହାଙ୍କର ଆଚରଣକୁ ଦେଖି ଆମେ ସେମାନଙ୍କୁ ଛେଳି ଜାତି ବୋଲି କହି ପାରିବା । ଠିକ୍ ସେହିପରି ଭାବରେ ଆହୁରି କେତେକ ଜାତି ଏପରି ଅଛନ୍ତି, ଯେଉଁମାନଙ୍କର ଅତୀତ ଏବଂ ବର୍ତ୍ତମାନର ନାଡ଼ିଗୁଡ଼ାକୁ ପରୀକ୍ଷା କରି ଆମେ ସେମାନଙ୍କୁ ଗୋଟିଏ ମେଣ୍ଢା ଜାତି ବୋଲି ମଧ୍ୟ କହି ପାରିବା ।

କହିବା ବାହୁଲ୍ୟ, ଶ୍ରୀଯୁକ୍ତ ସାଲ୍‌ଭାଡ଼ୋରେ ମାଡ଼ାରିଆଗା ସଂସାରଯାକରେ ବାସ କରୁଥିବା ମଣିଷ ସମୂହକୁ କେବଳ ଦୁଇଟା ରୂପରେ ହିଁ ଦେଖିଛନ୍ତି । ଏହି ସମୂହଟିକୁ ସିଏ କେତୋଟି ଜାତିରେ ବିଭକ୍ତ କରି ଦେଇଛନ୍ତି ଏବଂ ସେଗୁଡ଼ିକ ଭିତରେ ଛେଳିତ୍ୱ ଅଥବା ମେଣ୍ଢାତ୍ୱର ଠାବ କରିଛନ୍ତି । ଗୋଟିଏ ଜାତିକୁ ଛେଳି ଜାତି ବୋଲି କହିଛନ୍ତି ତ ଆଉ ଗୋଟିଏ ଜାତିକୁ ମେଣ୍ଢା ଜାତି ବୋଲି କହିଛନ୍ତି । ଅମୁକକୁ ଆଠପଣ ଛେଳି ଓ ଆଠପଣ ମେଣ୍ଢା ଅଥବା ଚାରିପଣ ଛେଳି ଓ ବାରପଣ ମେଣ୍ଢା ବୋଲି କହିଛନ୍ତି । ଆପଣା ଜାତି ଅର୍ଥାତ୍ ଆପଣାର ଦେଶବାସୀଙ୍କ ସମେତ ସିଏ ଆଧୁନିକ ପୃଥିବୀର ପ୍ରାୟ କାହାକୁ ହେଲେ ଛାଡ଼ିଯାଇ ନାହାନ୍ତି । ସମସ୍ତଙ୍କୁ ସେହି ଛେଳି ଅଥବା ମେଣ୍ଢାଙ୍କ ଭିତରେ ଆଣି ବସାଇବାର ଉଦ୍ୟମ କରିଛନ୍ତି । କିନ୍ତୁ ତାଙ୍କର ଏହି ମୀମାଂସାଟି ଅନୁସାରେ ଛେଳି କିଏ ଓ ମେଣ୍ଢା କିଏ, ଆମକୁ ଆଗ ସେହି କଥାଟିକୁ ଜାଣିବାକୁ ପଡ଼ିବ ।

ଶ୍ରୀଯୁକ୍ତ ମାଡ଼ାରିଆଗାଙ୍କର ମତ ଅନୁସାରେ ଛେଳିମାନେ ହେଉଛନ୍ତି ସ୍ୱଭାବତଃ ଲଢୁଆ ଓ ମେଣ୍ଢାମାନେ ହେଉଛନ୍ତି ସ୍ୱଭାବତଃ ଡରୁଆ । ମେଣ୍ଢାମାନେ ଆପଣାକୁ ଜାଣନ୍ତି

ନାହିଁ, କେବଳ ଆପଣାର ପଲଟିକୁ ଜାଣନ୍ତି, କେବଳ ଖୁଆଡ଼ଟିକୁ ଜାଣନ୍ତି । ଗୋଟିଏ ମେଣ୍ଢା ଯାହା କରେ, ଅନ୍ୟ ମେଣ୍ଢାମାନେ ଠିକ୍ ତାହାହିଁ କରନ୍ତି । ଗୋଟିଏ ମେଣ୍ଢା ପାଣିକୁ ଡେ଼ଇଁଲେ ଅନ୍ୟ ମେଣ୍ଢାଗୁଡ଼ିକ ଫକ୍‌ଫାକ୍ ହୋଇ ପାଣି ଭିତରକୁ ଡେଇଁ ପଡ଼ନ୍ତି । ଗୋଟିଏ ମେଣ୍ଢା କେଁ କଲେ ଅନ୍ୟମାନେ ବି କେଁ କରି ଉଠନ୍ତି । ଗୋଟିଏ ମେଣ୍ଢା ପଳାଇଲେ ଆଉମାନେ ବି ପଳାୟନ କରନ୍ତି । ତେଣୁ ମେଣ୍ଢାମାନେ କଦାପି ଜୀବନରେ ପ୍ରେରିତ ହୁଅନ୍ତି ନାହିଁ, କେବଳ ନିଯୁକ୍ତ ହେବାରେହିଁ ଲାଗିଥାନ୍ତି । ଅନ୍ୟ ପକ୍ଷରେ ଛେଳିଗୁଡ଼ାକ କୁଆଡ଼େ ଏକାବେଳେକେ ଅଲଗା ବାଗର । ଛେଳିମାନେ ପଲ ମାନନ୍ତି ନାହିଁ, ଜଣକ ପଛରେ ଆଉ ସମସ୍ତେ ଫକ୍‌ଫାକ୍ ହୋଇ ଡେଇଁ ପଡ଼ନ୍ତି ନାହିଁ । ବା ଜଣେ ପଳାଇଗଲେ ଆଉମାନେ ମଧ ଦଉଡ଼ି ପଳାନ୍ତି ନାହିଁ । ସେମାନଙ୍କର ମୁଣ୍ଡ ଉପରେ ଦୁଇ ଦୁଇଟା ଶିଙ୍ଗ ମଣ୍ଡନ କରି ରହିଥିଲେ ମଧ ଛେଳିଗୁଡ଼ାକ କୁଆଡ଼େ ଭାରି ଏକଶିଙ୍ଗିଆ– ସେମାନେ ଏକୁଟିଆ ବୁଲନ୍ତି, ଏକୁଟିଆ ଘାସ ଟୁକନ୍ତି, ପାହାଡ଼ ଉପରେ ପଥରରୁ ପଥର ହୋଇ ଏକୁଟିଆ ଡେଇଁବାରେ ଲାଗିଥାନ୍ତି, ମୁଣ୍ଡିଆର ସବା ଉପରକୁ ଉଠି ସବା ଉପରଚ ପଥରଟି ଉପରେ ମର୍ଦ୍ଦରାଜ ସଦୃଶ ଦଣ୍ଡାୟମାନ ହୋଇ ଦମ୍ଭ ଓ ଦର୍ପର ସହିତ ଚତୁର୍ଦ୍ଦିଗକୁ ଅବଲୋକନ କରିବାରେ କୁଆଡ଼େ ସବୁବେଳେ ଭାରି ଆନନ୍ଦ ପାଆନ୍ତି । ଭାରତବର୍ଷର ଶାସ୍ତ୍ରରେ ଅଜାଯୁଦ୍ଧକୁ ବହ୍ବାରମ୍ଭେ ଲଘୁକ୍ରିୟା କହି ହସରେ ଉଡ଼ାଇ ଦିଆଯାଇଛି ସିନା, ମାତ୍ର ଶ୍ରୀ ମାଡ଼ାରିଆଗା ସେହି କଥାଟିର ଏକ ଅନ୍ୟ ପ୍ରକାରେ ବ୍ୟାଖ୍ୟା କରିଛନ୍ତି । ସିଏ କହନ୍ତି ଯେ ଛେଳିଜାତି ହେଉଛନ୍ତି ଅସଲ ଲଢୁଆ ଜାତି । ଏକାବେଳେକେ ଅନେକ ଛେଳିଙ୍କର ପର୍ଯ୍ୟବେକ୍ଷଣ କରି ସିଏ ନିଶ୍ଚୟ ଏହି କଥାଟି କହିଥିବେ । ଗୋଟିଏ ଛେଳି ଯେତେବେଳେ ଆଉ ଗୋଟିଏ ଛେଳି ସହିତ କୌଣସି କାରଣରୁ ଯୁଦ୍ଧ ଲଢ଼ିବାକୁ ବାହାରେ, ସେତେବେଳେ ସିଏ ଯେପରି ଏକ ସାହସିକ ସଚେତନତା ସହିତ ଶିଙ୍ଗ ଦୁଇଟାକୁ ଏପାଖ ସେପାଖ ଢ଼ଳାଇ ଆଖିକୁ ତରାଟି ଧୀରତନ୍ମଗ୍ନ ଅଥଚ ବିଶ୍ୱାସଯୁକ୍ତ ଭାବରେ ପରିପନ୍ଥୀ ଅନ୍ୟ ଛାଗଳଟିର ସମୀପକୁ ଆସିଥାଏ, ସେଥିରୁ ତାହାର ସ୍ୱଭାବସ୍ଥ ଆକ୍ରମକତାଟି କୁଆଡ଼େ ବଡ଼ ପରିଷ୍କାର ଭାବରେ ଧରା ପଡ଼ିଯାଏ । ଛେଳି ଯେ ଆଦୌ ମେଣ୍ଢାଙ୍କ ପରି ନୁହେଁ, ସେହି କଥାଟି ଅତ୍ୟନ୍ତ ସ୍ପଷ୍ଟ ଭାବରେ ଜଣା ପଡ଼ିଯାଏ ।

ଆମର ଏଇ ମଣିଷ ସଂସାରରେ ଛେଳି କିଏ ଆଉ ମେଣ୍ଢା କିଏ ? ମଣିଷର ସଂସାର ଭିତରେ ଶ୍ରୀଯୁକ୍ତ ମାଡ଼ାରିଆଗା ବ୍ୟକ୍ତିମାନଙ୍କୁ ମୋଟେ ଦେଖିବାକୁ ପାଇ ନାହାନ୍ତି । ସିଏ ଖାଲି ଜାତିଗୁଡ଼ାକୁହିଁ ଦେଖିଛନ୍ତି । ସତେ ଯେପରି ମଣିଷଗୁଡ଼ାକ କେବଳ ଜାତି ଜାତି ହୋଇ ହିଁ ଏହି ସଂସାରକୁ ଆସିଥିଲେ ଓ ତା'ପରେ ପଥ ହୁଡ଼ିଯାଇ ବ୍ୟକ୍ତି ହେଲେ ବା ଆପଣାକୁ ଗୋଟାଏ ଗୋଟାଏ ବ୍ୟକ୍ତି ବୋଲି ଅନୁଭବ କରିବାକୁ ଲାଗିଲେ, ଶ୍ରୀଯୁକ୍ତ

ମାଡ଼ାରିଆଗାଙ୍କର ଲିଖିତ ବହିଟିକୁ ପଢ଼ିଲାବେଳେ ତାଙ୍କର ମନ ଭିତରେ ସତେଅବା ପ୍ରାୟ ଏହିଭଳି ଗୋଟିଏ ଧାରଣା ବଦ୍ଧ ହୋଇ ରହିଥିବା ପରି ଜଣାପଡ଼େ । ତେଣୁ ସଂସାର ଆଡ଼କୁ ଅନାଇ ସିଏ ଖାଲି ଜାତିଗୁଡ଼ାକୁ ହିଁ ଦେଖିଛନ୍ତି, ତୁଚ୍ଛା ପଲ ବା ସମୂହଗୁଡ଼ାକୁ ଦେଖିଛନ୍ତି । ଅବଶ୍ୟ ଏକଥା ସତ ଯେ ପ୍ରଧାନତଃ ଇଉରୋପରେ ବାସ କରୁଥିବା ଜନଗୋଷ୍ଠୀଗୁଡ଼ିକ ହିଁ ତାଙ୍କ ଆଖିରେ ପଡ଼ିଛନ୍ତି । ଇଂରେଜ ପଡ଼ିଛନ୍ତି, ଜର୍ମାନ୍ ପଡ଼ିଛନ୍ତି, ପୋଲିଶ୍ ବା ଫରାସୀ ପଡ଼ିଛନ୍ତି । ହଁ, ଆମେରିକାନ୍ ମଧ୍ୟ ପଡ଼ିଛନ୍ତି । ତାଙ୍କ ବିଚରଣ-ଆକାଶର ବାହାରେ ରହିଥିବା ଅନେକ ଗୋଷ୍ଠୀ ଏବଂ ସମୂହକୁ ସିଏ ପ୍ରୟୋଜନତଃ ଆଲୋଚନାରୁ ବାଦ ଦେଇଛନ୍ତି । ଅର୍ଥାତ୍, କେବଳ ଇଉରୋପର କେତେଟା ଜାତିଙ୍କୁ ଛେଳି, ମେଣ୍ଢା ନିରୂପଣ କରିବାର ତରାଜୁରେ ଏପାଖରେ ଅଥବା ସେପାଖରେ ବସାଇଦେଇ ଏବଂ ଆଉ କେତେଟା ଅଛିଣ୍ଡା ଜାତିକୁ ପ୍ରାୟ ଦଣ୍ଡିଟା ଉପରେ ଟିକିଏ ଏପାଖକୁ ଅଥବା ସେପାଖକୁ ଢ଼ଳାଇଦେଇ ସେ ପୃଥିବୀ ଗୋଟାକର ସବୁ ଜାତି ଅର୍ଥାତ୍ ସବୁ ମଣିଷ ନିଶ୍ଚୟ ଠିକ୍ ସେହିପରି ହିଁ ହୋଇଥିବେ ବୋଲି ସିଧା ଅନୁମାନ କରି ନେଇଛନ୍ତି । ତାଙ୍କର ବିଚାର ଓ ସେହି ବିଚାରଟିର କଳ୍ପନା କରିଥିବା ପୁସ୍ତକଟି ଯେ ଭାରି ଆଗ୍ରହୋଦ୍ଦୀପକ ହୋଇଛି, ଏଥିରେ ଆଦୌ କୌଣସି ସନ୍ଦେହ ନାହିଁ ।

ଆମ ଭାରତବର୍ଷରେ ମାଡ଼ାରିଆଗାଙ୍କର ଏହି ପୁସ୍ତକଟିକୁ କେହି କେହି ନିଶ୍ଚୟ ପାଠ କରିଥିବେ । ସେଇଟିକୁ ପାଠ କରି ଖୁସି ବି ହୋଇଥିବେ, ପୁଣି ବେଳେ ବେଳେ ଈଷତ୍ ଉତ୍ତପ୍ତ ମଧ୍ୟ ହୋଇ ଉଠିଥିବେ । ଆମେ ନିଜେ ଗୋଟିଏ ଗୋଟିଏ ଛେଳି ଅଥବା ମେଣ୍ଢା ବୋଲି ବିଚାର କରି ପାରିବା ଆଗରୁ ଆମ ଜାତିଟା ଛେଳି କି ମେଣ୍ଢା, ଆଗତୁରା ହୋଇ ସେମାନେ ହୁଏତ ସେହି କଥାଟିର ବିଚାର କରି ବାହାରିଥିବେ । ଆମ ଦେଶ ଭାରତବର୍ଷରେ ଆମେ ପ୍ରୟୋଜନ ଅନୁସାରେ ପୂରା ଦେଶଟାକୁ ନେଇ ବେଳେ ବେଳେ ଯେମିତି ଗୋଟାଏ ଜାତି ବୋଲି କହୁ, ଆହୁରି ବେଳେ ବେଳେ କେବଳ ଗୋଟାଏ ଗୋଟାଏ ପ୍ରାନ୍ତ ବା ଖଣ୍ଡକୁ ମଧ୍ୟ ଗୋଟାଏ ଗୋଟାଏ ଦେଶ ବୋଲି କହିଥାଉ । ସବୁ ଭାରତବାସୀଙ୍କୁ ଗୋଟାଏ ଜାତି ବୋଲି କହିବା ସଙ୍ଗେ ସଙ୍ଗେ ପ୍ରାନ୍ତବାସୀ ଅଥବା ଏକଭାଷାଭାଷୀ ଗୋଟାଏ ଗୋଟାଏ ଉପସମୂହକୁ ମଧ୍ୟ ଗୋଟାଏ ଗୋଟାଏ ଜାତି ବୋଲି କହିଥାଉ । ଆମ ଘର ଓଡ଼ିଶାରେ ମଧ୍ୟ ଅନେକ ସମୟରେ ଜାଣିବା ଶୁଣିବା ମଣିଷଙ୍କର ମେଳରେ ଏବଂ ସଭାସମିତିର ଗହଳରେ ଓଡ଼ିଆମାନଙ୍କୁ ଗୋଟିଏ ଜାତି ବୋଲି କୁହାଯାଇଥାଏ । ଓଡ଼ିଆ ଜାତି ଆଗେ କଅଣ ଥିଲା ଓ ବର୍ତ୍ତମାନ କେଉଁଠି ଆସି ହେଲାଣି ବୋଲି ଆମେ କେତେ ନା କେତେ ଭାଳେଣି କରିଥାଉ, ଓଡ଼ିଶା ଦେଶରେ ଏତେ ଏତେ ସମ୍ପଦ ଭରି ରହିଥିଲେ ମଧ୍ୟ ବିଦେଶୀମାନେ ଯେ ଏଠାକୁ ଆସି ଆମ ଘରକୁ ଲୁଟି

ନେଉଛନ୍ତି ଓ ଓଡ଼ିଆ ଜାତିକୁ ସବୁ କ୍ଷେତ୍ରରେ ପଛରେ ପକାଇ ରଖିଛନ୍ତି, ଆମେ ସେ ବିଷୟରେ ଅନେକ ସମୟରେ ଅଭିଯୋଗ ଓ ଅଭିମାନ ମଧ୍ୟ କରିଥାଉ । ଦକ୍ଷିଣମୁହାଁ ହୋଇ ରେଳ ଗାଡ଼ିରେ ଯାଉଥିବାବେଳେ ବ୍ରହ୍ମପୁର ଟପିବା ମାତ୍ରକେ ଆମେ ସତେଅବା ଆଉ ଗୋଟାଏ ଦେଶରେ ଆସି ପହଞ୍ଚି ଗଲୁ ବୋଲି ସଚେତନ ହୋଇ ପଡ଼ିଥାଉ । ଆମ ଭିତରୁ ଜଣେ କେହି ସିଆଡ଼େ ଆମେରିକାରେ ପାଠ ପଢ଼ି ବଡ଼ ଚାକିରି ପାଇ ସେଇଠି ରହିଗଲେ ମଧ୍ୟ ଆମ ଭିତରୁ କେତେ ଲୋକ ତାହାକୁ ଗୋଟାସୁଦ୍ଧା ଏହି ଓଡ଼ିଆ ଜାତିର ଏକ ଗୌରବ ବୋଲି ବିଶ୍ୱାସ କରିଥାନ୍ତି । ଓଡ଼ିଶା ଭିତରେ ମଧ୍ୟ ଏହି ଜାତି ଜାତିର କେତେ ବାଛପଣ ହେଉଥାଏ । ପୂର୍ବବାଲା ପଶ୍ଚିମବାଲାଙ୍କୁ ବା ପଶ୍ଚିମବାଲା ପୂର୍ବବାଲାଙ୍କୁ ବାଛିବାରେ ଲାଗିଥାନ୍ତି । ଜାତିଭେଦଟାକୁ ଲମ୍ୱାଇ ଓ ଲୋସଡ଼ାଇ ଲକ୍ଷଣଭେଦ, ସ୍ୱଭାବଭେଦ ତଥା ଚରିତ୍ରଭେଦ ମଧ୍ୟ ହେବାରେ ଲାଗିଥାଏ । ବେଳେ ବେଳେ ଓଡ଼ିଶାରେ ତଥା ଓଡ଼ିଶା ବାହାରେ ଇଏ ତାକୁ ଓ ସିଏ ୟାକୁ ମେଣ୍ଢା ବୋଲି କହନ୍ତି—ବଙ୍ଗାଳୀ ଓଡ଼ିଆଙ୍କୁ ମେଣ୍ଢା ବୋଲି କହନ୍ତି ଓ ଓଡ଼ିଆ ବଙ୍ଗାଳୀଙ୍କୁ ହୁଏତ ଆଉ କ'ଣ ବୋଲି କହନ୍ତି । ଜାତିରୁ ବ୍ୟକ୍ତିର ବିଚାର କରାଯାଏ, ବାର ଶହଙ୍କୁ ମଡ଼େଲ କରି ଧରି ଧରମାର ବିଚାର କରାଯାଏ । ଧର୍ମ ନାମରେ ଭୁରୁଡୁ ଗୁଡ଼ାକୁ ପ୍ରଶ୍ରୟ ଦିଆ ଯାଉଥାଏ । ଖୋଳପା ବା ଭେକଟାରୁ ହିଁ ସ୍ୱଭାବର ନିରୂପଣ ହୁଏ ।

ଯିଏ ଯବନ, ସିଏ ଛେଳିରେ ବିଶ୍ୱାସ କରେ ନାହିଁ । କୌଣସି ଗୋଟାଏ ଜାତିକୁ ମେଣ୍ଢା ବୋଲି କହି ସିଏ କୌଣସି ପଉରୁଷ ନିଏ ନାହିଁ ଅଥବା ଆପଣାକୁ ମଧ୍ୟ ଛେଳି ବୋଲି କହି କୌଣସି ବାହାଦୂରୀ ନେବାକୁ ଚାହେ ନାହିଁ । ସିଏ ଜାତି ଖୋଜି ଯାଏ ନାହିଁ—ବ୍ୟକ୍ତିଙ୍କ ଭିତରେ ହିଁ ମେଣ୍ଢା ଓ ଛେଳିଙ୍କୁ ଚିହ୍ନିବାକୁ ଚେଷ୍ଟା କରେ । ତେଣୁ ସବୁ ଜାତି ଭିତରେ ହିଁ ମେଣ୍ଢା ଓ ଛେଳି ସମ୍ଭବ ହୋଇ ପାରିବେ ବୋଲି ସିଏ ବିଶ୍ୱାସ ମଧ୍ୟ କରୁଥାଏ । ଯବନ ସ୍ୱୟଂ ମେଣ୍ଢା ହେବାକୁ ଇଚ୍ଛାକରେ ନାହିଁ ଅଥବା ଛେଳି ହେବାକୁ ବି ଇଚ୍ଛା କରେ ନାହିଁ । ସିଏ ସଂସାରରେ ସଙ୍ଗୀ ହେବାକୁ ବାହାରିଥାଏ, ମଣିଷଙ୍କୁ ଖୋଜି ବାହାରି ଥାଏ । ଏ ଜାତି ବା ସେ ଜାତି ଭିତରେ ମୁଦି ହୋଇ ରହିଗଲେ ହୁଏତ ତା'ର ବାଟ ଚାଲିବା ବନ୍ଦ ହୋଇଯିବ ବୋଲି ସିଏ ସକଳ ପ୍ରକାର ଜାତିତ୍ୱର କାନ୍ଥ ଭିତରୁ ଦୂରଛଡ଼ା ହୋଇ ରହିଥାଏ । କୌଣସି ଗୋଟିଏ ଜାତିତ୍ୱର ଖୋଳଟି ଭିତରେ ପଶିଯାଇ ନିସ୍ତାର ପାଇଯିବାର ଧନ୍ଦାଟିକୁ ସିଏ ସତେଅବା ଏକ ଅପଧନ୍ଦା ବୋଲି ବିଚାର କରୁଥାଏ । ତେଣୁ ସିଏ ପ୍ରକୃତରେ ଜାତି ହେବାକୁ ଚାହେ ନାହିଁ, ସିଏ ଉନ୍ମୋଚନ ଚାହେ; ସେହି ଉନ୍ମୋଚନରୁ ହିଁ ମଣିଷର ବିଚାର କରେ । କିଏ କେତେ ପ୍ରକାର ଖୋଳ ଭିତରେ କେତେ ପ୍ରକାରେ ନିବୁଜ ହୋଇ ପଶି ଯାଇ ପାରିଛି, କିଏ କେତେ ତାଲାଖ

ଭାବରେ ଗୋଟା ସୁଦ୍ଧା ଶୋଇ ଯାଇ ପାରିଛି, ଆପଣା ପାଖରୁ ବର୍ଜିତ ଓ ବାଚ୍ଛନ୍ଦ ହୋଇ ରହିଛି, ସେଥିରୁ ସେ କେବେହେଲେ କୌଣସି ମଣିଷର ବିଚାର ବା ମୂଲ୍ୟାଙ୍କନ କରିବାକୁ ଯାଏ ନାହିଁ ।

ଯବନ–ହୁଏତ ସିଏ ବି ଗୋଟିଏ ଜାତି । ସିଏ ଏକ ଜୀବନ-ଦୃଷ୍ଟି । ଏ ଜାତି ବା ସେ ଜାତି ଭିତରେ ରହି ତଥାପି ସବୁ ଜାତିତ୍ୱର ସୀମାଟାକୁ ଗିଳି ବାହାରି ଯାଇ ପାରିଥିବା ଗୋଟିଏ ଜାତି । ତାକୁ ଆମେ ଛେଳି ବୋଲି କହି ପାରିବା ନାହିଁ ବା ମେଣ୍ଢା ବୋଲି କହି ପାରିବା ନାହିଁ । ତାକୁ ଆମେ ଓଡ଼ିଆ ବୋଲି କହିପାରିବା ନାହିଁ ବା ବଙ୍ଗାଳୀ ବୋଲି କହିପାରିବା ନାହିଁ । ତା'ର ଅଙ୍ଗବସ୍ତଟାରୁ ହିଁ ଆମେ କଦାପି ତା'ର ଅଙ୍ଗବିସ୍ତାରର କଳନା କରିପାରିବା ନାହିଁ । କୌଣସି ନିର୍ଦ୍ଦିଷ୍ଟ ଅକ୍ଷାଂଶ ଅଥବା ଦ୍ରାଘିମାର ବାଡ଼ ଭିତରେ ଆମେ କଦାପି ତା'ର ବସତିର ନିରୂପଣ କରିପାରିବା ନାହିଁ । ତାକୁ କୌଣସି ସୁବର୍ଣ୍ଣ ଯୁଗ ଭିତରେ ମଧ୍ୟ କିଳିଦେଇ ପାରିବା ନାହିଁ । କାରଣ ଯବନ ସବୁ ଯୁଗରେ ଆସିଛନ୍ତି, ସବୁ ଯୁଗରେ ଆସିବେ । ଯେତେବେଳେ ସବୁଠାରୁ ଅଧିକ ପ୍ରୟୋଜନ ରହିଥିବ, ସେତେବେଳେ ସେମାନେ ସବୁଠାରୁ ଅଧିକ ସଂଖ୍ୟାରେ ଆସିବେ ଏବଂ ଯେତେବେଳେ ପ୍ରତିଷ୍ଠିତ ପ୍ରତିମାଗୁଡ଼ିକୁ ଆବୋରି ନେଇ ମୁଳକଯାକର ପ୍ରାୟ ସମସ୍ତେ ଥୋକେ ମେଣ୍ଢା ଓ ଆଉ ଥୋକେ ଛେଳି ହୋଇ ଆସନ ପକାଇ ବସିଯାଇଥିବେ, ସବୁକିଛି ଭାରି ସୁରୁଖୁରୁରେ ଚାଲିଥିଲା ପରି ଲାଗୁଥିବ, କୋଉଠି ଟିକିଏ ହେଲେ ହଲଚଲ ନ ଥିବ, ପୋକଗୁଡ଼ାକ ପ୍ରଜାପତି ନ ହୋଇ ପତର-ଡେମ୍ଫକୁ ଯାବୁଡ଼ି ରହିଥିବେ, ସେତିକିବେଳେ ହିଁ ଯବନର ମଧ୍ୟ ସବୁଠାରୁ ଅଧିକ ଆବଶ୍ୟକତା ରହିଥିବ । ସେତିକିବେଳେ ଯବନ ଆସି ନିଦ ଭଙ୍ଗାଇବ, ଚେତନାହତକୁ ଚେତନା ଆଣି ଦେବ । ଆମ ସମସ୍ତଙ୍କର ଜାତି ନେବ ।

ତା ୦୮ ।୦୭ ।୭୫ରିଖ



# ଛଅ

ଯବନର ଉତ୍ତର, ଜଣେ ବନ୍ଧୁ ଖଣ୍ଡେ ଚିଠିରେ ଏବେ ଯାହା ଲେଖି ପଠାଇଛନ୍ତି, ତାହାରି ଉଦ୍ଦେଶ୍ୟରେ ।

ସିଏ ଲେଖିଛନ୍ତି : ଆମ ଭିତରୁ କଥାକାର କହ୍ନେଇଲାଲଙ୍କର ଅପ୍ରତ୍ୟାଶିତ ବିୟୋଗ ବାସ୍ତବରେ ଏକ ମର୍ମନ୍ତୁଦ ଘଟଣା । ଏସବୁ ଘଟଣା ଦୃଷ୍ଟିକୁ ଆସିଲେ ମୋର ଚିନ୍ତାଶକ୍ତି ହଠାତ୍ ଲୋପ ପାଇଯାଏ । ଭାଗ୍ୟ ଓ ଭଗବାନଙ୍କ ହାତରେ ମଣିଷ କେତେ ଅସହାୟ ସତରେ ! ଅଥଚ ଏଇ କେତେଦିନର ଜୀବନ ପାଇଁ ମଣିଷର ମନରେ କେତେ ଗର୍ବ, କେତେ ଅହଙ୍କାର, –କେତେ ଈର୍ଷା ଓ ଅସୂୟା–କେତେ ଭୟାନକ ହୁଏ ତା'ର କାର୍ଯ୍ୟ ଓ ବ୍ୟବହାର ! ସତରେ ଏ ଏକ ବିଚିତ୍ର ପୃଥିବୀ !

ସତରେ ଇଏ ଏକ ବିଚିତ୍ର ପୃଥିବୀ ! ଏଠି ମଣିଷ ଆପଣାକୁ ହିଁ ଏକମାତ୍ର ଜୀବ ବୋଲି ମନେ କରେ, ଆପଣାର କାଳଟାକୁ ହିଁ ଏକମାତ୍ର କାଳ ବୋଲି ମନେକରେ; ଆପଣାର ବୟସଟାକୁ ହିଁ ଏକମାତ୍ର ବୟସ ବୋଲି ମନେକରେ । ଆପଣାର ଖଟୁଲିଟି ଉପରେ ସିଏ ଆପଣାର ଯେଉଁ ଦିଅଁଟିକୁ ଆଣି ବସାଇ ରଖିଛି, ତାଙ୍କରି ଚରଣକୁ ହିଁ ସେ ବଦ୍ରିକା ସମେତ ସକଳ ତୀର୍ଥ ବୋଲି ଗ୍ରହଣ କରିନିଏ । ତେଣୁ ସେଇଟିର ବାହାରେ ଆଉ କୁଆଡ଼େ ବିଚରଣ କରିବାକୁ ସେ ସିଧା ମନାକରି ଦେଇଥାଏ ! ଏବଂ ଏହି ମନା କରିବାକୁ ହିଁ ଆପଣାର ଗର୍ବ ବୋଲି ଅନୁଭବ କରୁଥାଏ ।

ସତରେ ଇଏ ଏକ ବିଚିତ୍ର ପୃଥିବୀ ! ମଣିଷ ଏଠି ହୁଏତ କିଛିହେଲେ ପ୍ରତ୍ୟାଶା କରୁ ନ ଥାଏ; ତେଣୁ ତା'ର ଜୀବନରେ ଯେତେବେଳେ ଯାହାକିଛି ଆସି ପହଞ୍ଚିଯାଏ ଅର୍ଥାତ୍ ଯାହାକିଛି ଘଟେ, ତାହାକୁ ସେ କେବଳ ଅପ୍ରତ୍ୟାଶିତ ବୋଲି ହିଁ ଗ୍ରହଣ କରିଥାଏ । କୌଣସି କିଛିକୁ ସେ ହୁଏତ ସ୍ୱାଭାବିକ ବୋଲି ମଧ୍ୟ ଗ୍ରହଣ କରୁ ନ ଥାଏ, ତେଣୁ ସବୁକିଛି ତାକୁ ସତେ ଅବା କେବଳ ଆକସ୍ମିକ ବୋଲି ହିଁ ଲାଗୁଥାଏ । ଅନେକ ସମୟରେ ଏହି ଜୀବନଟା ବି ଆଦୌ ସ୍ୱାଭାବିକ ବୋଲି ମନେ ହୁଏନାହିଁ । ଅର୍ଥାତ୍ ଆମେ ସମସ୍ତେ

ଏଠି ଏହି ସଂସାର ଭିତରେ ଯେ ଜନ୍ମଗ୍ରହଣ କରିଛୁ, ସେଇଟା ଆମକୁ ଅଧିକତର ପରିମାଣରେ ପ୍ରାୟ ଆକସ୍ମିକ ବୋଲି ହିଁ ଲାଗିଥାଏ । ଏହି ଜୀବନକୁ ମଧ୍ୟ ଆମେ ହୁଏତ ଆଦୌ ଏକ ବରଦାନ ବୋଲି ଗ୍ରହଣ କରି ନ ଥାଉ, ଏକ ଆଶୀର୍ବାଦ ବୋଲି ଗ୍ରହଣ କରି ନ ଥାଉ । ଏହାକୁ ଆମେ ଏକ ବାଟ ଚାଲିବା ବୋଲି ଗ୍ରହଣ କରି ନ ଥାଉ, ତେଣୁ ଏହି ଜୀବନଟିର ବାଟ ଚାଲି ଆମ ଭିତରୁ ଆଉ କିଏ ଏଠୁ ଖସି ଚାଲିଯିବା ବେଳକୁ ଯାଇ ସିଏ ସତରେ ଆମରି ଭିତରେ ରହିଥିଲା ଓ ଆମ ସମସ୍ତଙ୍କର ସାଥିରେ ବାଟ ଚାଲୁଥିଲା ବୋଲି ଆମର ହୋସ୍ ହୋଇଥାଏ । ଏବଂ ସେଇଟା ସେତେବେଳେ ଏକ ମର୍ମନ୍ତୁଦ ଘଟଣା ବୋଲି ମନେହୁଏ ଏବଂ ସେହି ଘଟଣାଟି ଦୃଷ୍ଟିକୁ ଆସିଲେ ଚିନ୍ତାଶକ୍ତି ହଠାତ୍ ଲୋପ ପାଇଗଲା ପରି ଲାଗେ । ସତରେ ଇଏ ଏକ ବିଚିତ୍ର ପୃଥିବୀ !

ଏବଂ, ଏହି ବିଚିତ୍ର ପୃଥିବୀରେ ଆମେ ସବୁ ବି ଗୋଟିଏ ଗୋଟିଏ ବିଚିତ୍ର ମଣିଷ । କାରଣ ଆମେ ଏଠାରେ ଜୀଇବା ବିଷୟରେ ବେଶୀ କିଛି କହୁନାହିଁ, ଜୀବନକୁ ନେଇ ରଚିତ ଆପଣାର ଗାଥାଗୁଡ଼ିକୁ ପରସ୍ପରଠାରୁ ଲୁଚାଇ ରଖିବାକୁ ଚେଷ୍ଟାକରୁ; ମାତ୍ର ଅନ୍ୟ ପକ୍ଷରେ ମରିବା ବିଷୟରେ ଯେତିକି କହିବା କଥା, ତାହାକୁ ମାଠିମୁଠି ଅଣାନବେ ଗୁଣ ଅଧିକ କରି କହିଥାଉ । ସମ୍ଭବତଃ ସେଇଥିଲାଗି କି କ'ଣ କେଜାଣି, ସିଏ ଜୀଇଥିଲାବେଳେ ମଣିଷକୁ ଆମେ ଯେତେ ଲୋଡ଼ୁ ବା ନ ଲୋଡ଼ୁ, ସିଏ ମରିବା ସମୟରେ ତାକୁ ପ୍ରାୟ ବ୍ୟତିବ୍ୟସ୍ତ ହୋଇ ଲୋଡ଼ୁ, ପ୍ରାୟ ବାଇଆ ହୋଇ ଗଲାପରି ଲୋଡ଼ୁ । ଯିଏ ଗଲା, ଆମେ ସବୁ ତା'ପାଇଁ ତାକୁ ଯେତେ ନ ଲୋଡ଼ୁ, ଆମ ନିଜକୁ ମଧ୍ୟ ଦିନେ ନା ଦିନେ ଯେ ଏଠୁ ବିଦାୟ ନେଇ ଯିବାକୁ ପଡ଼ିବ, ଠିକ୍ ଏମିତି ଆକସ୍ମିକ ଭାବରେ ହିଁ ଯିବାକୁ ପଡ଼ିବ, ଅର୍ଥାତ୍ ଆମେ ଯିବା ପାଇଁ ମୋଟେ ପ୍ରସ୍ତୁତ ନଥିବା ଓ ଆମକୁ ତଥାପି ଯିବାକୁ ପଡ଼ିବ, ଯିଏ ଗଲା, ତାହାରି ମୃତ୍ୟୁଟି ସହିତ ଆମେ ଆପଣାର ଏହି ଭୟଟିକୁ ଏକାଠି ମିଶାଇ ଦେଇ ହଠାତ୍ ଆପଣାକୁ ଟିକିଏ ଅତିରିକ୍ତ ଭାବରେ ଆଛନ୍ନ କରି ରଖୁ ଏବଂ ସେହି ଆଛନ୍ନତା ମଧ୍ୟରେ ଚାଲିଯାଇଥିବା ସାଙ୍ଗ ଜଣକୁ ଲୋଡ଼ିବାରେ ଲାଗୁ । ତାକୁ ଲୋଡ଼ିବାର ମଧ୍ୟଦେଇ ଆମେ ବୋଧହୁଏ ସତେଅବା କାହା ପାଖରେ ଏକ ଅଭିଯୋଗ କରିବାକୁ ହିଁ ବାହାରିଯାଉ ।

କହ୍ନେଇଲାଲ ଖାଲି ଚାଲିଗଲେ ନାହିଁ, ସିଏ ଆମରି ସହିତ ଏଇଠି ଆମରି ଭିତରେ ହିଁ ଜୀଇଥିଲେ । ସିଏ ଆପଣାର ଜୀବନଟିକୁ ଜୀଇଥିଲେ । ଆପଣାର ଆଖି ଗୁଡ଼ାକୁ ସେ ଏକ ନିର୍ଦ୍ଦିଷ୍ଟ ମାର୍ଗ ଯୋଗାଇ ପାରିଥିଲେ । ଏହି ସଂସାରରେ ଯେଉଁମାନେ ଯେତିକି ଜୀଇବା କଥା, କେବଳ ସେତିକି ଜୀଅନ୍ତି; ଅର୍ଥାତ୍ ସଂସାର ଭିତରେ ପଡ଼ି ପଙ୍କ ପହଁରୁଥାନ୍ତି, ସେହି ପଙ୍କ ଖାଇ ବଞ୍ଚୁଥାନ୍ତି ଓ ଶେଷରେ ପ୍ରାୟ ଅତ୍ୟନ୍ତ ସ୍ୱାଭାବିକ ଭାବରେ

ସେହି ପଙ୍କଭିତରେ ହିଁ ଗୋଟାଏ ଜାଗାରେ କୋଉଠି ଠକ୍ କିନା ରହିଯାନ୍ତି; କହ୍ନେଇଲାଲ ସେମାନଙ୍କ ଭିତରେ ଆଦୌ ନଥିଲେ । ଏପରିକି, ତାଙ୍କ ଅଫିସଟା ମଧ୍ୟରେ ଯେଉଁ ହଜାରେ ବା ଦୁଇ ହଜାର ମଣିଷଙ୍କ ସହିତ ସେ ଏକାଠି ପ୍ରତ୍ୟହ ଗୋଟିଏ ଫାଟକ ଦେଇ ପଶୁଥିଲେ ଓ ସନ୍ଧ୍ୟାକୁ ସେହି ଗୋଟିଏ ଫାଟକ ଦେଇ ବାହାରି ଆସୁଥିଲେ, ସିଏ ସେମାନଙ୍କ ଭିତରେ ମଧ୍ୟ ନଥିଲେ । ହଁ, ଅନ୍ୟ ସମସ୍ତଙ୍କ ପରି ସିଏ ମଧ୍ୟ ସେଇଠି କୌଣସି ନିର୍ଦ୍ଧାରିତ ଟେବୁଲକୁ ଆଦରି ବସୁଥିଲେ, ନିର୍ଦ୍ଧାରିତ ଫାଇଲ ନେଇ କାରବାର କରୁଥିଲେ, ନିର୍ଦ୍ଧାରିତ ଦିବସରେ ବେତନ ଦିଆଉଥିଲେ ଓ ନିର୍ଦ୍ଧାରିତ ଦିବସରେ ବି ବେତନ ପାଉଥିଲେ । ଅନ୍ୟ ସମସ୍ତଙ୍କ ପରି ସିଏ ମଧ୍ୟ କେତେଜଣ ନିର୍ଦ୍ଧାରିତ ହାକିମଙ୍କର ବରାଦ ଅନୁସାରେ କାମ କରୁଥିଲେ । ସେ ସେମାନଙ୍କୁ ମୁନିବ ବୋଲି ମାନୁଥିଲେ, ଯାହାକିଛି କରିବାକୁ ହେଲେ ତାଙ୍କରି ପାଖକୁ ଅର୍ଜି ଲେଖି ଦେଉଥିଲେ, ଆଦେଶ ଲାଗି ଅପେକ୍ଷା କରି ରହୁଥିଲେ । ତଥାପି କହ୍ନେଇଲାଲ କେବଳ ସେଇଠି ନଥିଲେ । ସିଏ ଆହୁରି ଅନେକ ଥାନରେ ମଧ୍ୟ ରହିଥିଲେ, ଆପଣାର ଆହୁରି ଅନେକ ଆକୃତି ଭିତରେ ରହିଥିଲେ । ଆମେ ସମସ୍ତେ ସଂସାରକୁ ଦୁଇଟା ଆଖି ଦ୍ୱାରା ଅତ୍ୟନ୍ତ ସ୍ୱାଭାବିକ ଅର୍ଥାତ୍ ଚିରାଚରିତ କରି ଦେଖିଥାଉ ଓ ତେଣୁ କେବେହେଲେ ବିସ୍ମିତ ହେଉନାହିଁ କିମ୍ବା ଅଶ୍ୱସ୍ତ ହୋଇ ପଡୁନାହିଁ; କହ୍ନେଇଲାଲ ତା'ଠାରୁ ଅଧିକ କେଇଟା ଆଖି ଦେଇ ଅର୍ଥାତ୍ ଆପଣାର ଏହି ସାଧାରଣ ଆଖିଟାରେ ଆହୁରି ଅଧିକ କେଇଟା ପ୍ରସ୍ଥ ଲଗାଇ ବଡ଼ ଅସାଧାରଣ ଭାବରେ ହିଁ ସଂସାରଟାକୁ ଦେଖୁଥିଲେ । ସିଏ ସୃଷ୍ଟି କରୁଥିଲେ । ଏବଂ ଜଣେ ସୃଜନକାରୀର ଭୟାବହ ଆହ୍ୱାନମୟ ସଂସାର ଭିତରେ ସତତ ବିଚରଣ କରୁଥିଲେ ।

ସ୍ରଷ୍ଟାର ଆଖିରେ ଖାଲି ସାଧାରଣଗୁଡ଼ାକ ଦେଖାଯାଏ ନାହିଁ, ଅସାଧାରଣଗୁଡ଼ାକ ମଧ୍ୟ ଦେଖାଯାଏ । ସାଧାରଣଗୁଡ଼ାକର ତୁଳନାରେ ସମ୍ଭବତଃ ଅସାଧାରଣଗୁଡ଼ାକ ହିଁ ଅଧିକ ପରିମାଣରେ ଦେଖା ଯାଇଥାଏ । ଆମ ଚେତନାଟିର ସାଧାରଣ ଇଟାଗୁଡ଼ିକୁ ବସାଇ ଆମେ ଆମର ଅଟ୍ଟାଳିକାଗୁଡ଼ିକୁ ଗଢ଼ିବାର ଚେଷ୍ଟା କରୁଥାଉ, ସମସ୍ତଙ୍କ ଭିତରେ ଜଣେ ହୋଇ ଦେଖା ଯିବାକୁ ବା ଖୁବ୍ ବେଶୀ ହେଲେ ସମସ୍ତଙ୍କ ଭିତରେ ସମ୍ମାନାସ୍ପଦ ଜଣେ ହୋଇ ଦେଖାଯିବାକୁ କେତେ ପ୍ରକାର ଫାନ୍ଦ ଫାଶ ବସାଇବାର ମିହନ୍ତରେ ଲାଗିଥିଲେ ମଧ୍ୟ ତଥାପି ସେଇ ସମସ୍ତଙ୍କ ଭିତରେ ହିଁ ପ୍ରାୟ ସମସ୍ତଙ୍କ ପରି ଦେଖା ଯାଉଥାଉ । ସ୍ରଷ୍ଟା କଦାପି କାହା ଭଳିଆ ଦେଖାଯିବାକୁ କୌଣସି ସରାଗ ବି ଦେଖାଏ ନାହିଁ । ଆପଣାକୁ ନେଇ ଯିଏ ଏକ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ଲାଗି ଜୀବନଟିକୁ ବଞ୍ଚୁଥାଏ, ଅର୍ଥାତ୍ ଆପଣା ଚେତନାଟିର ସାଉଁଟା ସରଞ୍ଜାମଗୁଡ଼ିକୁ ଯିଏ ଏକ ନିର୍ଦ୍ଦିଷ୍ଟ ସ୍ୱକୀୟ ବ୍ୟଞ୍ଜନା ଓ ସ୍ୱକୀୟ ପୀରତିର ପ୍ରାୟ ଏକ ଦୁଃସାହସିକ ଗଠନ ଭିତରେ ନେଇ ପକାଇବାର ଚେଷ୍ଟା କରୁଥାଏ,

ସିଏ କଦାପି ସମସ୍ତଙ୍କ ଭଳି ଦେଖାଯାଏ ନାହିଁ । ଏବଂ ସେହି କାରଣରୁ ସେ ମୂଳରୁ ହିଁ ବାରି ହୋଇପଡ଼େ, ଆମ ସଂସାରର ସ୍ୱୀକୃତ ଏବଂ ନିତ୍ୟନୈମିତ୍ତିକ ଚାଲଟିରେ ତାର ମୁଣ୍ଡ ମୂଳରୁ ହିଁ ବାଜିବାକୁ ଆରମ୍ଭ କରେ ।

କନ୍ହେଇଲାଲ ମୂଳରୁ ହିଁ ବାରି ହୋଇ ପଡ଼ିଥିଲେ, ମୂଳରୁ ହିଁ ନାଆଁ ପକାଇଥିଲେ । ସଂସାରରେ ପ୍ରବେଶ କରିବା ପୂର୍ବରୁ ହିଁ ସେ ବାରି ହୋଇ ପଡ଼ିଥିଲେ । ଆମେ ସମସ୍ତେ ସଂସାର କରିବାକୁ ଯାଇ ସଂସାର ସହିତ ଗୋଟାସୁଦ୍ଧା ସାମିଲ ହୋଇଯାଉ । ଆମର ସବୁଜ ଆଖି ଓ ସବୁଜ ଅଣ୍ଟିଗୁଡ଼ିକୁ ନେଇ ସଂସାର ଭିତରକୁ ଯାତ୍ରା ଆରମ୍ଭ କରିବାକୁ ବାହାରିଥିଲେ ମଧ୍ୟ ଆମେ କ୍ରମଶଃ ଅତି ଚମତ୍କାର ଭାବରେ ସଂସାରୀ ହୋଇପଡୁ । ଅର୍ଥାତ୍ ଚାକିରିରେ ସଫଳ ହେଉ, ଚାଲାଖିରେ ପକ୍କା ହେଉ, ଉପାର୍ଜନରେ ସଫଳ ହେଉ, ନୀତି ଓ ଅନୀତିରେ ସଫଳ ହେଉ, ଆପଣାର ସତର୍କତା ଗୁଡ଼ାକରେ ପକ୍କା ହୋଇଯାଉ, ସାହିତ୍ୟରେ ସଫଳ ହେଉ ଏବଂ ସମ୍ମାନଲାଭରେ ମଧ୍ୟ ସଫଳ ହେଉ । ସ୍ଥିତାବସ୍ଥାଗୁଡ଼ାକର ମହାମହିମ ଅଧୀଶ୍ୱର ବୋଲାଇ ଆମେ ଶେଷରେ ଏହି ଅଚଳନ୍ତି ରାଜ୍ୟସୀମାଗୁଡ଼ାକ ମଧ୍ୟରେ ସ୍ଥବିର ବା ମହାସ୍ଥବିର ହୋଇ ରହିଯାଉ । ଆମର ମୃତ୍ୟୁ ସମୟରେ ଆମ ଶୋଭାଯାତ୍ରାଗୁଡ଼ାକ ବୁଲି ବୁଲି ଲମ୍ବା ବାଟ ଦେଇ ମଶାଣିକୁ ଯାଏ । କେତେ ଜାଗାରେ କେତେ ଅନୁଷ୍ଠାନ ତରଫରୁ ଆମକୁ ଫୁଲମାଳ ମିଳେ, ଆମର ଶେଷକୃତ୍ୟଟି ସରିବା ପୂର୍ବରୁ ସୁନା ରୂପାର ଦାନ୍ତଲଗା କେତେ କେତେ ବିଶିଷ୍ଟ ବଡ଼ ମଣିଷ ଆମର ଶେଷ ଦର୍ଶନ ପାଇଁ ଆମ ପାଖକୁ ଆସନ୍ତି । ଏବଂ ଏହି ଘଟଣାଗୁଡ଼ିକୁ କେଡ଼େ ସ୍ୱାଭାବିକ ସଂସାରଟି ଭିତରେ ସମ୍ବାଦପତ୍ର ଗୁଡ଼ିକର ଜରିଆରେ ରିଲେ କରି ଦିଆହୁଏ ।

ଏଭଳି ଏକ ସଂସାରରେ ପ୍ରବେଶ କରିବା ପୂର୍ବରୁ ହିଁ କନ୍ହେଇଲାଲ୍ ଚାଲିଗଲେ । କିଏ କହି ପାରିବ, ସିଏ ମଧ୍ୟ ଦିନେ ବଡ଼ ହୋଇଥାନ୍ତେ, ସାହିତ୍ୟର ଖଞ୍ଜାରେ ଆପଣା ଲାଗି ପକ୍କା କୁଅଟିଏ ଖୋଳିଥାନ୍ତେ, ସମ୍ମାନ ପାଇଥାନ୍ତେ, ସଭାକୁ ସାଥୁଆ ବି ପାଇଥାନ୍ତେ । ଆମ ସମସ୍ତଙ୍କ ହାତରୁ ଖସି ସିଏ ହୁଏତ ସ୍ଥବିରମାନଙ୍କ ଗହଳ ଭିତରେ କୁଆଡ଼େ ଖପି ଯାଇଥାନ୍ତେ ଏବଂ ତା'ପରେ ଆଉ ମୋଟେ ବାରି ହୋଇ ପାରି ନଥାନ୍ତେ । ମୋଟେ ଅଲଗା ଦିଶି ନଥାନ୍ତେ । କିନ୍ତୁ ସିଏ ତା' ପୂର୍ବରୁ ହିଁ ଚାଲିଗଲେ । ତେଣୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ ତାଙ୍କ ବଗିଚାର ସେହି ବିଶେଷ ବାସନାଟି ଆମ ସମସ୍ତଙ୍କର ଅନେକ ଦିନ ଯାଏ ମନେ ରହିବ । ସ୍ୱାଭାବିକତାର ଏହି ଇଉନିଟ୍ ଗୁଡ଼ାକରେ ସିଏ ଅନେକ ଦିନ ଯାଏ ଆମ ପାଖରେ ଅନନ୍ୟ ହୋଇ ରହିବେ, ଅସ୍ୱାଭାବିକ ହୋଇ

ରହିବେ, ଅଲଗା ଓ ଖାପଛଡ଼ା ହୋଇ ରହିବେ ଏବଂ ଭବିଷ୍ୟତର ଅନେକ ଅଲଗା ଓ ଖାପଛଡ଼ାମାନଙ୍କ ପାଇଁ ସିଏ ଖୋରାକ ଯୋଗାଇବାରେ ଲାଗିଥିବେ । ଆମେ ପ୍ରକୃତରେ ତାଙ୍କୁ ଅନେକ ଦିନ ଯାଏ ଲୋଡ଼ୁଥିବା । ଖାଲି ଗାଳ୍ପିକ ହିସାବରେ ନୁହେଁ, ଖାଲି ଯୁବ-ଲେଖକ ହିସାବରେ ନୁହେଁ, ମାତ୍ର ଜଣେ ଅସ୍ୱାଭାବିକ, ଅସ୍ୱଚ୍ଛନ୍ଦ ଓ ଅଧିକ ଚାହୁଁଥିବା ସମଦରଦୀ ହିସାବରେ ଲୋଡ଼ୁଥିବା । ଖାଲି ଆନନ୍ଦ ଉପଭୋଗ କରିବାକୁ ଯେଉଁମାନେ ଗଳ୍ପ ପଢ଼ନ୍ତି ନାହିଁ, ସାହିତ୍ୟକୁ ଲୋଡ଼ନ୍ତି ନାହିଁ ବା ସାହିତ୍ୟକୁ ଦୁହିଁ ଦୁଗ୍ଧ-ପାନ କରିବାକୁ ଯାଆନ୍ତି ନାହିଁ, ମାତ୍ର ଯେଉଁମାନେ ଗଳ୍ପ ଭିତରେ ଗାଳ୍ପିକକୁ ଖୋଜନ୍ତି, ସାହିତ୍ୟ ଭିତରେ ସାହିତ୍ୟିକକୁ ଖୋଜନ୍ତି, ସାହିତ୍ୟିକର ଅତି ପାଖରେ ଅନ୍ତରଙ୍ଗ ହୋଇ ବସି ପାରିବା ଲାଗି ସୁରାଖଟିଏ ଖୋଜୁଥାନ୍ତି, କନ୍ହେଇଲାଲ୍‌ଙ୍କୁ ସେମାନେ ଦୀର୍ଘ ଅନେକ ଦିନ ପର୍ଯ୍ୟନ୍ତ ସଙ୍ଗୀକରି ପାଇ ପାରିବେ ।

ଜୀବନଟା ଏବେ କାହିଁକି କେଉଁଠି ଲକ୍ଷ୍ମୀଛଡ଼ା ହୋଇଗଲାଣି କେଜାଣି, ଆମ ଆଧୁନିକ କାଳର ଅନେକ ଦାର୍ଶନିକ, ଅନେକ ପଣ୍ଡିତ ଓ ଅନେକ ସାହିତ୍ୟକାର ଜୀବନ ଅପେକ୍ଷା ମୃତ୍ୟୁଟାକୁ ହିଁ ଅଧିକ ଉଖାରି ଦେଖିବାର ସଉକରେ ମାତିଛନ୍ତି । ସେମାନେ ଜୀବନଟା ସେମାନଙ୍କୁ ମୋଟେ ଭଲ ଲାଗୁନାହିଁ ବୋଲି କହୁଛନ୍ତି । ଜୀବନକୁ ଏକ ବିଡ଼ମ୍ବନା ବୋଲି କହୁଛନ୍ତି, ଡୋର ବାନ୍ଧିବାକୁ ବନ୍ଧନା ବୋଲି କହୁଛନ୍ତି, ଚେର ମଡ଼ାଇବାକୁ ପ୍ରବଞ୍ଚନା ବୋଲି କହୁଛନ୍ତି । ଭାରତବର୍ଷରେ ଯେତେବେଳେ ବେଦର ରଚନା ହୋଇଥିଲା, ସେତେବେଳେ ସାବୁନ ନ ଥିଲା, ଅତର ନଥିଲା, ଫଟୋ ନ ଥିଲା, ହୁଏତ ଦର୍ପଣ ବି ନ ଥିଲା । ଗାଡ଼ି, ମଟର, ଏରୋପ୍ଲେନ୍ ନଥିଲା । ଦୂରବୀକ୍ଷଣ, ଦୂର-ଶ୍ରବଣ ଅଥବା ଦୂରଦର୍ଶନ ମଧ୍ୟ ନ ଥିଲା । ତଥାପି ସେତେବେଳର ପ୍ରେମଶୀଳ ଓ ପ୍ରୀତି-ଆକାଂକ୍ଷୀ କବି "ଆମେ ଜୀବନର ହିଁ କାମନା କରୁଛୁ, ମୃତ୍ୟୁର କାମନା କରୁନାହୁଁ" ବୋଲି ଗାଇ ଉଠି ପାରୁଥିଲା । ଏହି ଆକାଶ, ଜବାକୁସୁମ ସମ ସକାଳର ଏହି ସୂର୍ଯ୍ୟ, ଏହି ଆଲୋକ, ଏହି ବନସ୍ପତି ଓ ଏହି ଔଷଧି ମଧ୍ୟରେ ସିଏ ଜୀବନକୁ ହିଁ ଅନୁଭବ କରୁଥିଲା, ଏହିଗୁଡ଼ିକୁ ଆଘ୍ରାଣ କରି ସିଏ ନିତି ସକାଳେ ନୂତନ କରି ବଞ୍ଚିଉଠି ପାରୁଥିଲା । ମାତ୍ର ଆମର ଏହି ଅତୁଳ ଲକ୍ଷ୍ମୀଲାଭର ଯୁଗରେ ବାସ କରୁଥିବା ମଣିଷର କୋଉଠି କ'ଣ ଖୁଣ ରହିଗଲା ଅଥବା ଜୀବନକୁ ଆପଣାର ବୋଲି ଆଦରି ନେଇ ପାରିବାର ସେଇ ମାଣଗୁଡ଼ାକୁ ସିଏ କୋଉଠି କାହା ପାଖରେ ବନ୍ଧା ଦେଇ ଆସିଲା କେଜାଣି, ଏବେ ତା' ପାଖରେ ସବୁ କିଛି ଥାଇ ମଧ୍ୟ ସିଏ ଖାଲି ମରଣର ବ୍ୟାକରଣଗୁଡ଼ାକୁ ହିଁ ପଇଠ କରି ଓ ପୁନଃପଇଠ କରି ଆମ ଗମନାଗମନର ସାନ ସାହୀଗୁଡ଼ିକରେ ପଣ୍ଡିତ ବୋଲାଉଛି, କବି ବୋଲାଉଛି ଓ ଦାର୍ଶନିକ ବୋଲାଉଛି । କେବେହେଲେ ପ୍ରେମ କରି ନ ଥିଲେ ମଧ୍ୟ ପ୍ରେମକୁ ସେ

କ୍ଷଣଭଙ୍ଗୁର ବୋଲି କହୁଛି, ନିଜେ କେବେହେଲେ ଯାତ୍ରା ଦେଖି ଯାଇ ନ ଥିଲେ ମଧ୍ୟ ଯାତ୍ରା ଦେଖିବା ଦ୍ୱାରା କେବଳ ସ୍ୱାସ୍ଥ୍ୟହାନି ହୁଏ ବୋଲି ସେ କେତେ ଉପମା ଓ ଅଭିଧା ଦେଇ ଆମକୁ ଗଳ୍ପାଇ କରି କହୁଛି । ଭାଗ୍ୟ ଓ ଭଗବାନଙ୍କ ହାତରେ ମଣିଷ ପ୍ରକୃତରେ କେଡ଼େ ଅସହାୟ ହୋଇ ରହିଛି ବୋଲି ସିଏ ବିଳାପ କରିବାରେ ଲାଗିଛି ଏବଂ ଏହି ଅକଥାଗୁଡ଼ାକୁ ହିଁ ଝୁଣ୍ଟିଆ ଓ ଚକିବାଙ୍କୀ ଲଗାଇ ଚନ୍ଦ୍ରହାର ବେଢ଼ାଇ ଦେଇ ସିଏ ଆମ ଆଗରେ ସାହିତ୍ୟ ବୋଲି ପରିବେଷଣ କରୁଛି । ସେଗୁଡ଼ାକୁ ସେ ନୂଆ ନାଟକ ଓ ନୂଆ କବିତା ବୋଲି କହୁଛି । ଆନନ୍ଦରେ ଟାକରା ଫୁଟାଉଛି । ଓଡ଼ିଶାରେ ବା ଭାରତବର୍ଷରେ ଏହି ଆମ୍ବିଳା ହାକୁଟିଗୁଡ଼ାକୁ ମୁହିଁ ପ୍ରଥମେ ଆଣି ପରିଚିତ କରାଇଛି ବୋଲି ସିଏ ବାହାଦୂରୀ ବି ମାରୁଛି ।

ଜୀବନ ହେଉଛି ଜୀଇବା ପାଇଁ, ମରଣ ବିଷୟରେ ବିମୋହନକାରୀ ଚିନ୍ତାମାନ କରିବା ପାଇଁ ନୁହେଁ । ଆପଣାକୁ "ପୂର୍ଣ୍ଣାତ୍ ପୂର୍ଣ୍ଣତରାକୃତିଃ" କରି ଗଢ଼ିବା ପାଇଁ, "ସାନୋଃ ସାନୁଂ' ଉଠି ଚାଲିଯିବା ପାଇଁ, ଏଇଠି ଏହି ଅର୍ଗଳିଟା ଭିତରେ ବିରେଚକଗୁଡ଼ାକୁ ହିଁ ଏକମାତ୍ର ଭୋଜ୍ୟ ଏବଂ ଚୋଷ୍ୟ ବୋଲି ଗ୍ରହଣ କରିନେଇ ତାହାରି ଭିତରେ ବାଇ ହୋଇ ରହିବା ପାଇଁ ନୁହେଁ । ଯେଉଁମାନେ ବାଇ ହୋଇ ରହିବାକୁ ଚାହାନ୍ତି ବା ଭୁଲିକରି ରହିବାକୁ ଚାହାନ୍ତି, ହୁଏତ ସେହିମାନେ ହିଁ ମରଣଟାକୁ ବେଶୀ ସ୍ମରଣ କରୁଥାନ୍ତି । ମରଣର ଦାର୍ଶନିକ ବିଶ୍ଳେଷଣମାନ କରନ୍ତି, ମୃତ୍ୟୁର ବାସନାକୁ ପରମ ବାସନା ବୋଲି କହି ଗରିମା ଦେଖାଇ ହେଉଥାନ୍ତି । ମାତ୍ର ବଞ୍ଚି ଥାଉଁ ଥାଉଁ, ଜୀବନର ଗୋଟାକଯାକ ଗନ୍ତାଘର ଆପଣା ସମ୍ମୁଖରେ ବିସ୍ତୃତ ହୋଇ ପଡ଼ି ରହିଥିବା ବେଳେ ଯିଏ ତଥାପି ଆପଣା ହୃଦୟର ପରାସଗୁଡ଼ାକୁ ହିଁ ଆବିଷ୍କାର କରିବାରେ ପରମ ତତ୍ପର ହୋଇ ରହିଥାଏ, ତାକୁ ଆମେ ଏଠି ଆମର ଜଣେ ସାଥୀ ବୋଲି କହିବା ନା ସତେଅବା ଆଉ କୋଉଠୁ ଆସିଥିବା ଜଣେ କୁଣିଆ ବୋଲି କହିବା ? ସାଧୁ ସମବାଚୀ ଭାଷାରେ କୁଣିଆକୁ ବିଦେଶୀ ବୋଲି କୁହାଯାଏ । ଦେଶରେ, ଅର୍ଥାତ୍ ଆପଣା ଘରେ ରହିଥିବା ବେଳେ ମଧ୍ୟ ଏମାନେ ତଥାପି ପରବାସୀ ହୋଇ ରହିଥାନ୍ତି । ଘରକୁ ନିନ୍ଦା କରନ୍ତି, ଭୂଇଁର ନିନ୍ଦା କରନ୍ତି । ଆଗ ଭୂମିର ପ୍ରତିଷ୍ଠା ହୋଇ ସାରିଲେ ଯେ ତା'ପରେ ଯାଇ ଯାବତୀୟ ଆବାହନ ଓ ହବନ ସମ୍ଭବ ହୁଏ, ଏମାନେ ସେହି ଅସଲ ରୀତିଟିକୁ ଅସ୍ୱୀକାର କରିବାରେ ଲାଗିଥାନ୍ତି । ଏବଂ ସତେଅବା ଆଧାରସ୍ଥ ସେହି ଅସ୍ୱୀକାରଟିକୁ ଲୁଚାଇ ରଖିବା ଲାଗି ମୃତ୍ୟୁର ମୁଚାଲିକା ଓ କଡ଼ଚା ଲେଖି ବାହାରନ୍ତି, ମୃତ୍ୟୁ ସହିତ ରମଣ କରି ବାହାରନ୍ତି, ମୃତ୍ୟୁମୟ ଜଗତର ସୂକ୍ଷ୍ମ ଗବେଷଣା କରନ୍ତି ।

ଏବଂ, ଯେଉଁମାନେ ମୃତ୍ୟୁକୁ ହିଁ ଜୀବନଠାରୁ ଅଧିକ ଅଶେଷ ଓ ଅଧିକ ନିର୍ଣ୍ଣାୟକ ବୋଲି ମନେ କରନ୍ତି, ହୁଏତ ସେଇମାନେ ହିଁ ବଞ୍ଚିଥିବା ବେଳେ ଈର୍ଷା ଓ ଅସୂୟାରେ ବଣିଜ କରିବାରେ ଲାଗିଥାନ୍ତି । ହୁଏତ ସେହିମାନଙ୍କର ବ୍ୟବହାର ଓ କାର୍ଯ୍ୟ ହିଁ ସବୁବେଳେ ଅତ୍ୟଧିକ ଭାବରେ ଭୟାନକ ହୋଇ ରହିଥାଏ । ଆପଣାର ଗର୍ବ ଓ ଆପଣାର ଅହଙ୍କାରଗୁଡ଼ାକୁ ପରମ ପୁଞ୍ଜି ଓ ରାଜ-ସମ୍ବଳ କରି ଧରି ସେମାନେ ଆପଣାର ଅସହାୟତାଗୁଡ଼ାକୁ ଭୁଲି ରହିବା ସକାଶେ ହୁଏତ ଅନୁକ୍ଷଣ ବ୍ରତୀ ହୋଇ ରହିଥାନ୍ତି । ମରଣକୁ ହିଁ ସର୍ବସାର କରି ଯିଏ ତାକୁ ମୁଣ୍ଡ ଉପରେ ବୋହି ବାଟ ଚାଲୁ ନ ଥାଏ, ସିଏ ଜୀବନ ସହିତ ଗଅଁଠା ହୋଇ ରହିଥାଏ, ଆପଣାକୁ ଫୁଲ ଫଳରେ ରୂପାନ୍ତରିତ କରି ଯିଏ ଜୀବନର ପୁଷ୍ପଫଳ-ସମ୍ଭାରରେ ଆପଣାର ଅବଦାନଟିକୁ ଆଣି ମିଶାଇ ଦେବାରେ ଲାଗିଥାଏ ଓ ସେଇଥିରେ ପ୍ରସନ୍ନତା ପାଉଥାଏ, ଈର୍ଷା ବା ଅସୂୟା ଲାଗି ତା'ର ଆଉ କୌଣସି ଅବକାଶ ନ ଥାଏ, ସିଏ ଗର୍ବ କରେନାହିଁ ବା ସିଏ ଅଭିଯୋଗ ବି କରେନାହିଁ । ସିଏ ଅବଗାହନ କରି ଧନ୍ୟ ହୁଏ, ସ୍ପର୍ଶ ଲାଭ କରି କୃତାର୍ଥ ହୁଏ । ତା' ଜୀବନରେ ମଧ୍ୟ ମରଣ ଆସେ, ମାତ୍ର ଜୀବନର ସମଗ୍ର ବିଭବଟି ମଧ୍ୟରେ ତାହା ଏକ ଅଙ୍ଗ ବା ପର୍ଯ୍ୟାୟ ରୂପେ ହିଁ ଆସିଥାଏ । ତେଣୁ ସିଏ ଆଉ ମୃତ୍ୟୁକୁ ଭୟ କରେନାହିଁ । ତାରି ଜୀବନରେ ଅହରହ ମୃତ୍ୟୁ ଲାଗି ରହିଥାଏ । ତେଣୁ ଅହରହ ନବଜନ୍ମର ଉତ୍ସବ ବି ଲାଗି ରହିଥାଏ । ତା'ଜୀବନରେ ସବୁ କିଛି କାଲି ମରି ଆଜିକୁ ଜନ୍ମ ଦିଏ, ଆଜି ମରି ଆସନ୍ତା କାଲି ଲାଗି ପିଣ୍ଡଗୁଡ଼ାକୁ ତିଆରି କରି ଦେଉଥାଏ । ପୁରୁଣା ମରି ନୂଆ ଲାଗି ଆଧାର ବନି ଯାଉଥାଏ, ଚିହ୍ନାଗୁଡ଼ାକ ଏକାଠି ବଳି ହୋଇ ନୂଆ ଓ ଅଚିହ୍ନାଟି ଲାଗି ଖିଅ ହେବାକୁ ବାହାରି ପଡୁଥାନ୍ତି । ତା'ର ପାଖଗୁଡ଼ାକ ଦୂର ଲାଗି ବାଟ କଢ଼ାଇ ନେଉଥାଏ, ତା'ର ଅର୍ଜନଗୁଡ଼ାକ ଅନର୍ଜିତ ଅଥଚ ଅପେକ୍ଷିତ ଆହୁରି ଅନେକ ଲାଗି ବାଟ ଫିଟାଇ ଦେବାରେ ଲାଗିଥାଏ । ସିଏ ଯଥାର୍ଥରେ ସ୍ୱାଧୀନ ହୁଏ । ମଧ୍ୟଯୁଗୀୟ ଇଉରୋପର ଦାର୍ଶନିକ ସ୍ପିନୋଜା ଜଣେ ଯଥାର୍ଥରେ ମୁକ୍ତ ମଣିଷ ତା'ର ହାତପାପୁଲି ଉପରେ ମୃତ୍ୟୁକୁ ରଖି ବାଟ ଚାଲିପାରେ ବୋଲି ଘୋଷଣା କରି ଯାଇଛନ୍ତି । ଅଢ଼େଇ ହଜାର ବର୍ଷ ତଳେ ମୃତ୍ୟୁର ସମ୍ମୁଖୀନ ହେବାକୁ ଯାଉଥିବା ସମୟରେ ତୁଚ୍ଛା ଜୀବନର କଥାଗୁଡ଼ାକୁ କହିଥିବା ସକ୍ରେଟିସ୍ ମଧ୍ୟ ସେହି କଥା କହିଛନ୍ତି । ପୃଥିବୀର ରୋମାଣ୍ଟିକ୍ ସାହିତ୍ୟ-ଯୁଗରେ ମୃତ୍ୟୁ ବିଷୟରେ ପ୍ରାୟ ସେହି ଦୃଷ୍ଟିଟି ହିଁ ଉଦ୍‌ଘୋଷିତ ହୋଇଥିବାର ଆମେ ସବୁଠାରେ ଦେଖିବାକୁ ପାଇବା । ପ୍ରକୃତ ରୋମାଣ୍ଟିକ୍ କାବ୍ୟ-ଦୃଷ୍ଟି ପଳାଇ ଯିବାକୁ ଚାହେ ନାହିଁ, ଉପେକ୍ଷା କରିବାକୁ ଚାହେ ନାହିଁ, ସିଏ ପରସ୍ତ ପରେ ପରସ୍ତଟିକୁ ଉଦ୍‌ଘାଟିତ କରି ସମଗ୍ରଟିକୁ ହିଁ ପ୍ରତ୍ୟକ୍ଷ କରିବାକୁ ଚାହେ । ଜୀବନରେ ସିଏ ଯେତିକି ଦେଖେ, ସେତିକିକୁ ହିଁ ସମୁଦାୟ

ଜୀବନ ବୋଲି କଦାପି ମାନିନିଏ ନାହିଁ । ବୁଦ୍ଧିର ବୋଲକରା ହୋଇ ରହିବାଟାକୁ ମଣିଷ ଭିତରର ମନୀଷୀ କବି ଜୀବନରେ 'ମହତୀ ବିନଷ୍ଟି' ବୋଲି ହିଁ ଭାବୁଥାଏ । ତେଣୁ ସେ ଜୀବନକୁ ପରସ୍ତ ପରସ୍ତ କରି ଉଦ୍‌ଘାଟନ କରିବାରେ ହିଁ ଲାଗିଥାଏ, ମୃତ୍ୟୁକୁ ମଧ୍ୟ ସେ ଏକ ଅଦୃଶ୍ୟ ଅବିଚ୍ଛିନ୍ନତାର ଅନ୍ୟତମ ଏକ ପରସ୍ତ ବୋଲି ଗ୍ରହଣ କରିବାକୁ ସମର୍ଥ ହୁଏ । ସିଏ ଭୟକୁ ପାରି ହୋଇଯାଏ, ତେଣୁ ଅସୂୟାକୁ ମଧ୍ୟ ପାରି ହୋଇଯାଏ ।

ଗୋଟାସୁଦ୍ଧା ବୁଦ୍ଧିର ବୋଲକରା ହୋଇ ରହିବାର ନୀରସ ପରିଶ୍ରମ କରୁଥିବା ସମୟରେ ହିଁ ମଣିଷ ଭୟ କରେ, ଅସୂୟା କରେ, ଈର୍ଷା କରେ । ସିଏ ମଝିରେ ହୁଏତ କ୍ଷଣକ ଲାଗି କୋଉଠି କେତେଟା କାନ୍ଥ ତିଆରି କରି ତାହାରି ଆୟତ୍ତ ହୋଇ ରହିଯାଇଥିବା ବେଳେ ବିଚରା କେତେ ଅହଙ୍କାର କରେ, କେତେ ଅମରମତା ହୁଏ, କେତେ ଫୁଲେଇ ହୁଏ । ତା' ଜୀବନର ଯାବତୀୟ ଉପଲବ୍ଧି ତାକୁ ପ୍ରଧାନତଃ ଗୋଟାଏ ଗୋଟାଏ ଆକସ୍ମିକତା ପରି ମନେହୁଏ, ଜୀବନର ଦୈନନ୍ଦିନ ଯାତ୍ରାଟି ତାକୁ ସତେ ଅବା ଦୈନନ୍ଦିନ ଗୋଟାଏ ଗୋଟାଏ ଲଟେରୀ ଟିକେଟ କିଣିବା ପରି ହେଉଥାଏ । ବୁଦ୍ଧି ଆମକୁ ଅହଙ୍କାରୀ କରେ, ଭୀରୁ ବି କରିଦିଏ । ବଡ଼ ଏକୁଟିଆ କରି ପକାଏ । ଆମର ସଖ୍ୟଗୁଡ଼ାକୁ ବଡ଼ ଛିନ୍ନଭିନ୍ନ କରିଦିଏ । ଆମ ଖେଳଗୁଡ଼ାକୁ ଗୋଠଖଣ୍ଡିଆ କରି ରଖେ । ତେଣୁ ଖେଳକୁ ସତେଅବା କାଞ୍ଜିଆ କରିଦିଏ । ଆମେ ଯେତେବେଳେ ଗୋଟାସୁଦ୍ଧା ବୁଦ୍ଧି ଦ୍ୱାରା ହିଁ ଜୀବନକୁ ବୁଝିବାକୁ ଯାଉ, ସେତେବେଳେ ଜୀବନଟା ତୁଳନାରେ ମରଣଟା ହିଁ ଆମକୁ ସତେଅବା ଅଧିକ ଥାନ ମାଡ଼ି ବସିଥିଲା ପରି ମନେ ହୋଇଥାଏ । ଜିଜ୍ଞାସା ତୁଳନାରେ ସଂଶୟଟା ହିଁ ଅଧିକ ଜିଦ୍‌ର ସହିତ ଆମ ମନଟାକୁ କାମୁଡ଼ି ଧରିଥାଏ । ଆମ ଭିତରୁ ଯେଉଁମାନେ ବୁଦ୍ଧି ଦେଇ ସଂସାରକୁ ଭଲ ପାଇବାକୁ ଯାଆନ୍ତି, ସେମାନେ ଯେମିତି ପ୍ରତ୍ୟେକ ମୁହୂର୍ତ୍ତରେ କେବଳ ବୈସାଦୃଶ୍ୟଗୁଡ଼ାକୁ ହିଁ ଦେଖୁଥାନ୍ତି, ତେଣୁ ଆପଣାକୁ କେବେହେଲେ ପରିପୂର୍ଣ୍ଣ କରି ଦେଇ ପାରନ୍ତି ନାହିଁ କି କାହାକୁ ହେଲେ ଗୋଟାସୁଦ୍ଧା ଆପଣାର କରି ପାରନ୍ତି ନାହିଁ । ବୁଦ୍ଧିର ପଘାରେ ବନ୍ଧା ହୋଇ ସଂସାରରେ ଚରି ବାହାରୁଥିବା ବୁଦ୍ଧିଆମାନେ ସଂସାରକୁ ଗଲାବେଳେ ଯେମିତି ଦରିଦ୍ର ହୋଇ ଯାଇଥାନ୍ତି, ଫେରିବାବେଳେ ମଧ୍ୟ ଠିକ୍ ସେମିତି ଦରିଦ୍ର ହୋଇ ଫେରନ୍ତି । ଜ୍ଞାନର ହାଣ୍ଡିଗୁଡ଼ାକ ବାହାରେ ଯେତେ ପ୍ରକାରେ ଭର୍ତ୍ତି ହେବାରେ ଲାଗିଥିଲେ ମଧ୍ୟ ସେମାନଙ୍କର ଅସଲ ହାଣ୍ଡିଗୁଡ଼ାକ ଭିତରେ ସେମିତି ଖାଲି ଗଡ଼ିବାରେ ହିଁ ଲାଗିଥାନ୍ତି ।

ବନ୍ଧୁ କନ୍ହେଇଲାଲଙ୍କୁ ଯଦି ଆପଣ ଥରେ ଯବନର ଆଖିରେ ଦେଖିବାକୁ ଚେଷ୍ଟା କରିବେ, ଅର୍ଥାତ୍ ଯଦି ଆପଣ ତାଙ୍କ ଭିତରେ ଆପଣଙ୍କର ସହଧର୍ମୀ ଯବନଟାର ସନ୍ଧାନ

କରି ପାରିବେ, ତେବେ ବିଶ୍ୱାସ କରନ୍ତୁ, ଆପଣ ସେତେବେଳେ ଏକାବେଳେକେ ଅନ୍ୟ ପ୍ରକାର ଦେଖିବାକୁ ପାଇବେ, ଚେତନାର ଏକାବେଳେକେ ଆଉ ଏକ ସ୍ତରରେ ହିଁ ଆପଣ ତାଙ୍କୁ ଅଙ୍ଗେ ନିଭାଇ ପାରିବେ । ତା'ପରେ ସିଏ ଏତେ ଅଳ୍ପ ବୟସରେ ଆମ ପାଖରୁ ଖସି ଚାଲିଗଲେ ବୋଲି ଆପଣ ଆଉ କଦାପି ଘାରି ହେବେ ନାହିଁ । ତାଙ୍କୁ ହରାଇ ଓଡ଼ିଆ ସାହିତ୍ୟର ବା ଓଡ଼ିଆ ଜାତିର ଏତେ ଗୁଡ଼ାଏ କ୍ଷତିହେଲା ବା ଅପୂରଣୀୟ କ୍ଷତି ହେଲା ବୋଲି କହିବାକୁ ଆପଣଙ୍କୁ କଦାପି ଭଲ ଲାଗିବ ନାହିଁ । ଭିକ୍ଟୋରିଆ ଯୁଗର ଏହି ଘଷରା କଥାଗୁଡ଼ାକ ଆପଣଙ୍କୁ ତେଣିକି ତୁଚ୍ଛା କପଟକଥା ବୋଲି ଲାଗିବ ଏବଂ ଆପଣ ସେହି ସବୁ ଅବର୍ଜିଆ ଫନ୍ଦା ଭିତରେ କଦାପି ପଶିବାକୁ ଯିବେ ନାହିଁ । ଆପଣାର ଶୋକପ୍ରକାଶ ବା ସମ୍ବେଦନତାର କ୍ଷେତ୍ରରେ ମଧ୍ୟ ଆପଣ ନିଜର ସେହି ଚିରାଚରିତ ହିଡ଼ଟିକୁ ପାର ହୋଇ ଯାଇପାରିବେ । ସମବେଦନା କଦାପି ଦୁଃଖ ଦିଏ ନାହିଁ; ସମବେଦନା ବିସ୍ତାର ଆଣିଦିଏ, ବିଚ୍ଛେଦ ଭୁଲାଏ, ଦୂରତ୍ୱକୁ ଡ଼େଇଁଯାଏ, ବହିରଙ୍ଗକୁ ଅନ୍ତରଙ୍ଗ କରାଇ ଆଣେ, ଅପରିଚିତ ଅନ୍ୟକ୍ଷେତ୍ରୀୟକୁ ମଧ୍ୟ ସତେଅବା ଆତ୍ମୀୟ କରି ପାଖକୁ ନେଇ ଆସେ । ସେତେବେଳେ ଆପଣ ବି କହ୍ନେଇଲାଲଙ୍କୁ ଜଣେ ସ୍ରଷ୍ଟା ରୂପେ ଦେଖିବାକୁ ପାଇବେ । ଯିଏ ସୃଜନ କରେ, ସିଏ ରାଜତ୍ୱ କରେ ନାହିଁ, ସିଏ ଆପଣାକୁ ଗୋଟା ସୁଦ୍ଧା ସମର୍ପି ଦେଇଥାଏ । ଆପଣାର ଫୁଲଟିକୁ ରୁଚିମନ୍ତ କରି ଫୁଟାଇ ବାହାରିଥିବା ମଣିଷ ଆପଣା ଲାଗି କେବେହେଲେ କୌଣସି କ୍ଷମତାକୁ ଠୁଳ କରିବାକୁ ଯାଏ ନାହିଁ, ଆପଣାର କୌଣସି ଚାଳ ଉପରେ ରଜା ହୋଇ ବସିବାକୁ ମନ କରେ ନାହିଁ, କୌଣସି ପ୍ରକାର ହାଉଦାକୁ କାନ୍ଧରେ ପକାଇ ବାହାରେ ନାହିଁ । ସିଏ ସମ୍ମିଳିତ ହେବାକୁ ଯାଏ, ଆପଣାର ଦେୟ ଓ ନୈବେଦ୍ୟ ସବୁକିଛିକୁ ଏକାଠି କରି ସିଏ ଦୀପଟିଏ ହୋଇ ଜଳି ଉଠିବାକୁ ହିଁ ପ୍ରୟାସ କରୁଥାଏ । ସେହି ଦୀପଟିକୁ ଚିହ୍ନି ନେଇ ପାରିବା ଲାଗି କ'ଣ ଆମ ସମସ୍ତଙ୍କୁ ସବୁବେଳେ ସିଏ ମରିବା ପର୍ଯ୍ୟନ୍ତ ହିଁ ଅପେକ୍ଷା କରି ରହିବାକୁ ପଡୁଥିବ ? ଆପଣ ହିଁ ଏହାର ବିଚାର କରନ୍ତୁ ।

ତା ୧୦ ।୮ ।୭୫



# ସାତ

ଯୁକ୍ତରାଜ୍ୟ ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜନ୍ ଫିଟ୍‌ଜେରାଲ୍‌ଡ୍ କେନେଡ଼ି 'ସାହସର ଦୃଷ୍ଟାନ୍ତ' ବୋଲି ଖଣ୍ଡିଏ ବହି ଲେଖି ଯାଇଛନ୍ତି । ତତ୍କାଳୀନ ଆମେରିକା ସରକାରଙ୍କର ବରାଦ ଅନୁସାରେ ସେହି ବହିଟିକୁ ପୃଥିବୀର ଅନେକ ଭାଷାରେ ଅନୁବାଦ କରାଯାଇଛି ଓ ତାହା ଶସ୍ତାରେ ବିକ୍ରୀମଧ ହୋଇ ପାରୁଛି । ଓଡ଼ିଆ ଭାଷାରେ ମଧ ଏହି ବହିଟିର ଅନୁବାଦ ହୋଇଛି । କୁଟିଳ ହେଲେ ଅର୍ଥାତ୍ କୂଟନୀତି କଲେ, ଫିସାଦ ଖେଳିଲେ ବା ଫେଟକାମି ବାହାର କଲେ ଯେଉଁ ରାଜନୀତି ହୁଏ, ତାହା ପୃଥିବୀକୁ ଖୁବ୍ ବେଶୀ ଆଗକୁ ନେଇଯାଇ ପାରେ ନାହିଁ; ତାଦ୍ୱାରା ଫିସାଦିଆମାନଙ୍କର ତାତ୍କାଳିକ ଅଭିପ୍ରାୟ ଗୁଡ଼ିକରେ ହୁଏତ କେତେକ ପରିମାଣରେ ଏକ ଆଖିଦୃଶିଆ ସିଦ୍ଧି ମିଳିଯାଏ ସତ, ମାତ୍ର ସେଥିରେ ପୃଥିବୀର ବେଶୀ କିଛି ଲାଭ ହୁଏ ନାହିଁ । ଯେଉଁ ମଣିଷମାନଙ୍କ ସକାଶେ ରାଜନୀତି ହେଉଥାଏ, ସେମାନଙ୍କ ଲାଗି ହୁଏତ କାଣି କଉଡ଼ିକର ବି ଲାଭ ହୁଏ ନାହିଁ । ପୃଥିବୀରେ ଅଧିକାଂଶ ରାଜନୀତିଜ୍ଞ ଫିସାଦ କରନ୍ତି, ଫେଟକାମି କରନ୍ତି । କୂଟନୀତି କରନ୍ତି; ଏବଂ ଏହିଗୁଡ଼ାକୁ ହିଁ ସେମାନଙ୍କର ଚଳଣି ଅନୁସାରେ ରାଷ୍ଟ୍ରନୀତି ବା ରାଜନୀତି ବୋଲି କୁହାଯାଏ । ମାତ୍ର ସାହସୀ ମଣିଷ ଦ୍ୱାରା ହିଁ ପୃଥିବୀର ସବୁଠାରୁ ଅଧିକ ଲାଭ ହୁଏ, ସାହସୀ ମଣିଷ ଅର୍ଥାତ୍ ଦୃଷ୍ଟିବାନ୍ ମଣିଷ ରାଜନୀତି ଭିତରକୁ ଆସିଲେ ସେହି ରାଜନୀତି ଅନେକ ଅଧିକକୁ ସମ୍ଭବ କରିବାଲାଗି ସମର୍ଥ ହୁଏ, ସମ୍ଭାବନାର ପରିସରଗୁଡ଼ାକୁ ତାହା ଅନେକ ଅଧିକ ପରିମାଣରେ ବଢ଼ାଇ ଦେଇଥାଏ । ଆମେରିକାର ରାଜନୀତିକ ଇତିହାସରୁ, କେତେଜଣ ରାଷ୍ଟ୍ରନାୟକଙ୍କର ଜୀବନୀରୁ ଦୃଷ୍ଟାନ୍ତ ନେଇ ଶ୍ରୀଯୁକ୍ତ କେନେଡ଼ି ନିଜର ପୁସ୍ତକଟିରେ ପ୍ରଧାନତଃ ସେହି କଥାଟିର ପକ୍ଷ ପ୍ରତିପାଦନ କରିବାଲାଗି ଚେଷ୍ଟା କରିଛନ୍ତି ।

ରାଜନୀତିରେ ଅନେକାନେକ ସାହସିଆ କଥା କୁହାଯାଏ ସତ, ମାତ୍ର ତେଣେ ଅନ୍ୟପକ୍ଷରେ ଯଥାର୍ଥରେ ସାହସୀ ମଣିଷଙ୍କର ପ୍ରାୟ ସବୁବେଳେ ବଡ଼ ଅଭାବ ରହିଥାଏ । ସାହସିଆ କଥାଗୁଡ଼ାକ କେବଳ ରାଜନୀତିରେ ହିଁ କୁହାଯାଏ ନାହିଁ, ଜୀବନର ପ୍ରାୟ

ଯାବତୀୟ କ୍ଷେତ୍ରରେ କୁହାଯାଇଥାଏ । ସାହିତ୍ୟରେ କୁହାଯାଇଥାଏ, ସଂସ୍କୃତିରେ କୁହା ଯାଇଥାଏ, ସାମୂହିକ ଜୀବନର କେତେ କେତେ ସନ୍ଦର୍ଭରେ ମଧ୍ୟ ତାହା କୁହାଯାଇଥାଏ । ଆମର ଏହି ସଂସାରରେ ସାହସୀମାନଙ୍କର ଯହୁଁ ଯହୁଁ ବେଶୀ ଅଭାବ ଘଟେ, ସାହସିଆ କଥାଗୁଡ଼ାକ ତହୁଁ ତହୁଁ ଅଧିକ ଉଦ୍ଧତତା ଓ ଉତ୍ତାପ ସହିତ ଆପଣାକୁ ଜାହିର କରିବାରେ ଲାଗିଥାନ୍ତି । ଏହି ସାହସିଆ କଥାଗୁଡ଼ାକର ମାଧ୍ୟମରେହିଁ ସାହସୀ ମଣିଷର ଓ ସାହସର ପ୍ରଶଂସା କରାଯାଏ, ସାହସ ବଢ଼ାଇବା ଲାଗି ଉପଦେଶ ଦିଆଯାଏ, ସାହସ ବିନା ଆମର ଜାତୀୟ ଚରିତ୍ର ଏବଂ ଜାତୀୟ ଆଭିମୁଖ୍ୟ ବୋଲି ପରିଶେଷରେ ଆଉ କିଛି ହେଲେ ରହିବ ନାହିଁ ବୋଲି ଚେତାବନୀ ମଧ୍ୟ ଶୁଣାଇ ଦିଆଯାଏ; ଏବଂ ଏଗୁଡ଼ାକର ପରିପୂର୍ଣ୍ଣ ପରିବେଷଣ କରା ଯାଉଥିବା ସମୟରେ ତେଣେ ଆଖି ବୁଜି ବୋଲ ମାନିନେବାକୁ ହିଁ ପବିତ୍ର କର୍ତ୍ତବ୍ୟ ବୋଲି କୁହାଯାଏ । ବୋଲ ମାନିବାରୁହିଁ ଯଦି ସାହସ ଉତ୍ପନ୍ନ ହୋଇ ପାରୁଥାନ୍ତା, ତେବେ ଆମ ପୃଥିବୀରେ ବର୍ତ୍ତମାନ କେବଳ ସାହସୀ ମଣିଷ ହିଁ ରହିଥାନ୍ତେ ଓ ଜୀବନରେ ସାହସକୁ ହିଁ ସହଚର କରି ରଖିବାକୁ ଅତ୍ୟନ୍ତ ସ୍ୱାଭାବିକ ବୋଲି କୁହା ଯାଉଥାନ୍ତା ଏବଂ, ଏଠି ସମସ୍ତେ ସାହସୀ ମଣିଷ ହୋଇଥିଲେ ସାହସ ବିଷୟରେ ଏତେ ଉପଦେଶ କଦାପି ଦିଆଯାଉ ନଥାନ୍ତା ଏବଂ ସାହସିଆ କଥାଗୁଡ଼ାକ ଏଭଳି ରସରସିଆ ଓ ନବରଙ୍ଗିଆ କରି କହିବା ଲାଗି କୌଣସି ଅବକାଶ ମଧ୍ୟ ରହି ନଥାନ୍ତା ।

ସାହସୀ କେନେଡ଼ି କୋଉକାଳୁ ଗଲେଣି, ମାତ୍ର ସାହସ ବିଷୟରେ ସେ ଏକଦା ଲେଖି ଯାଇଥିବା ବହିଟି ଏପର୍ଯ୍ୟନ୍ତ ରହିଛି । ସାହସିଆ ଲୋକେ ଓ ସାହସିଆ କଥାଗୁଡ଼ାକ ସଂଖ୍ୟାରେ ବଢ଼ିଛନ୍ତି, ମଣ୍ଡନରେ ବଢ଼ିଛନ୍ତି, ହୁଏତ ପ୍ରବଳତାରେ ମଧ୍ୟ ବଢ଼ିଛନ୍ତି । କେନେଡ଼ି ବଞ୍ଚିଥିବା ବେଳେ ମଧ୍ୟ ତାଙ୍କରି ଦେଶରେ ସାହସିଆ ଭୀରୁ ଲୋକମାନେ କିଛି କମ୍ ପ୍ରବଳ ହୋଇ ରହି ନଥିଲେ । ସେମାନେ କେନେଡ଼ିଙ୍କୁ ରାଷ୍ଟ୍ରପତି ବୋଲି ମାନୁଥିଲେ, ଦେଶର ସର୍ବୋଚ୍ଚ କର୍ତ୍ତା ବୋଲି ମାନୁଥିଲେ; ମାତ୍ର ତଥାପି ଆପଣା ଆପଣାର କେତେ କେତେ ଗାଡ଼ରେ ଏବଂ କେତେ କେତେ ଦର୍ପରେ ବିଚରଣ କରୁଥିଲେ, ଆପଣାର ଭୀରୁତା ଆଉ ଅନ୍ଧାର ଗୁଡ଼ାକର ଜାଲ ବୁଣି ସେମାନେ ସଂସାରରେ କେତେ କ'ଣ ଆତଙ୍କ ଭିଆଇବାରେ ଲାଗିଥିଲେ । ଆପଣାର କ୍ଷମତା ଓ ଶଠତା ବଳରେ ସଂସାରର ସବୁ ସାହସର ବେକ ମୋଡ଼ି ଦେବାକୁ ବାହାରିଥିଲେ । କେନେଡ଼ିଙ୍କ ଅମଳରେ ବି ଆମେରିକାନ୍ କେନ୍ଦ୍ର ଗୋଇନ୍ଦା ସଂଗଠନ ଆମେରିକା ସରକାରଙ୍କ ଅଧୀନରେ ହିଁ ଏକ ସଂଗଠନ ରୂପେ କାର୍ଯ୍ୟ କରୁଥିଲା, ଆମେରିକା ଲାଗି କାର୍ଯ୍ୟ କରୁଥିଲା ଓ ଆମେରିକାର ରାଷ୍ଟ୍ରପତିଙ୍କୁ ହିଁ ରାଷ୍ଟ୍ରର ସର୍ବପ୍ରଧାନ ସନ୍ତକ ଓ କର୍ତ୍ତୃତ୍ୱ ବୋଲି ନ୍ୟାୟତଃ ସ୍ୱୀକାର କରି ହିଁ ତାହା କାର୍ଯ୍ୟ କରୁଥିଲା ଏବଂ ସେହି ରାଷ୍ଟ୍ରପତିଙ୍କର ଆଖିରେ ଧୂଳିଦେଇ ତାହା କେତେ

କେତେ କାର୍ଯ୍ୟ କରି ଯାଉଥିଲା । ଭୀରୁତା ଯେପରି ସଚରାଚର ସାହସର ଆଖିରେ ଧୂଳି ଦେବାକୁ ହିଁ ବୀରପଣ ବୋଲି ଭାବିଥାଏ, ତୁଚ୍ଛା ଅସତ୍ୟ ଯେପରି ସତ୍ୟର ଆଖିରେ ଧୂଳି ଦେବାକୁ ସବୁଠାରୁ ବଡ଼ ବାହାଦୂରୀ ବୋଲି ଭାବିଥାଏ, ପ୍ରାୟ ଠିକ୍ ସେହିପରି ।

ଧରା ନ ପଡ଼ିଲା ପର୍ଯ୍ୟନ୍ତ ଭୀରୁ ଏହିପରି ସାହସର ଆଖିରେ ଧୂଳି ଦେବାରେ ହିଁ ଲାଗିଥାଏ । କ୍ଷମତାରେ ବସିଥିଲା ପର୍ଯ୍ୟନ୍ତ ଅର୍ଥାତ୍ ଦଶ ଭୁଜରେ ଦଶଟା ଠେଙ୍ଗା ଓ ଦଶପୁଞ୍ଜା ବେତ ଧରି ରହିଥିଲା ପର୍ଯ୍ୟନ୍ତ ଭୀରୁତା ସାହସର ହାତ ଗୋଡ଼କୁ ଚଉକଷ କରି ବାନ୍ଧି ରଖିଥାଏ ଓ ସାହସର ମୁଣ୍ଡକୁ ଠେଙ୍ଗେଇବାରେ ଲାଗିଥାଏ ଏବଂ ପ୍ରାଚୀରପତ୍ରମାନଙ୍କରେ ଆପଣାକୁ ସତେଅବା ତାରିଣୀ ମହିଷମର୍ଦ୍ଦିନୀ ବୋଲି ପ୍ରଚାର କରିବାରେ ବି ଲାଗିଥାଏ । ଏହି ସାହସିଆ ଦର୍ପପ୍ରଚାର ଲାଗି ହୁଏତ ତେଣେ ତହବିଲରୁ କୋଟି କୋଟି ଖରଚ ହେଉଥାଏ । ଯିଏ ନାଟରେ ରାଜା ହୋଇ ଝୁମୁକା ପିନ୍ଧି ବାହାରିଛି, ବାସ୍ତବ ଜୀବନରେ ମଧ୍ୟ କେବଳ ସେଇ ରାଜା ବୋଲି ଏକ ପ୍ରତ୍ୟୟ ଜନ୍ମାଇବା ସକାଶେ କେତେ କ'ଣ ଫିକର କରାଯାଉଥାଏ ସତ, ମାତ୍ର ତଥାପି ସାହସର ମୁହଁରେ ତୁଣ୍ଡି ବାନ୍ଧି ଦିଆଯାଇଥାଏ । ଦୁଷ୍ଟ ହାତରେ ଠେଙ୍ଗା ଧରାଇ ଦିଆ ଯାଇଥାଏ । କେନେଡ଼ିଙ୍କ ଅମଳରେ ତାଙ୍କର କେନ୍ଦ୍ର ଗୋଇନ୍ଦା ସଂସ୍ଥା କେବଳ ଆପଣାର ଗୋଟିଏ ଦେଶରେ ନୁହେଁ, ମାତ୍ର ବାହାରର କେତେ କେତେ ଦେଶରେ ମଣିଷ ମାରିଲେ, କେତେ କେତେ ରାଷ୍ଟ୍ରନାୟକଙ୍କୁ ବିଷ ଦେଇ ମାରିବାର ଚେଷ୍ଟାକଲେ, ତଥାପି କୁଆଡ଼େ କେନେଡ଼ି କିଛି ହେଲେ ଜାଣି ପାରିଲେ ନାହିଁ । କେନେଡ଼ି ମରିବାର ବାରବର୍ଷ ପରେ ଆମେରିକାର ରାଜନୀତିଜ୍ଞ ପଣ୍ଡିତ କ୍ଷେତ୍ରସ୍ଥମାନେ ବର୍ତ୍ତମାନ ଏସବୁ କଥାକୁ କହିବାକୁ ଆରମ୍ଭ କରୁଛନ୍ତି । ସେହି ଆମେରିକାରେ ସେହି ସଂସ୍ଥା ଓ ତତ୍ତୁଲ୍ୟ ଆଉ ଆଉ ଅନେକ ସଂସ୍ଥା ତରଫରୁ ବର୍ତ୍ତମାନ ଯାହାସବୁ ହେଉଛି, କହିବା ବାହୁଲ୍ୟ ଯେ ସେଗୁଡ଼ାକ ବିଷୟରେ ବର୍ତ୍ତମାନ କାହାରିକୁ କିଛି କୁହାଯାଇ ପାରିବ ନାହିଁ । ସେଗୁଡ଼ିକ କାଳକ୍ରମେ ପଦାକୁ ବାହାରିବ, ଅର୍ଥାତ୍ କାଳଟି କଟିଗଲେ ଯାଇ ପଦାକୁ ବାହାରିବ; ସଂପୃକ୍ତ ସମସ୍ତେ ସେତେବେଳକୁ ହୁଏତ ସ୍ୱର୍ଗକୁ ଚମ୍ପଟ କରି ସାରିଥିବେ, ଅଥଚ କଥାଗୁଡ଼ାକୁ ଶୁଣି କେବଳ କାବା ହୋଇଯିବା ଲାଗି ଯାହା ଅକର୍ତ୍ତବ୍ୟ-କାନଗୁଡ଼ାକ ହିଁ ମହଜୁଦ ରହି ଯାଇଥିବେ । ସାହସୀମାନଙ୍କୁ ମାରିବା ପାଇଁ, ଅର୍ଥାତ୍ ପୃଥିବୀରୁ ସାହସକୁ ଶିଶୁପାଳ କରି ନିକାଳି ଦେବାପାଇଁ କ୍ଷମତାଶୀଳ ଭୀରୁମାନେ ଯେ ଲାବୋରେଟରିମାନଙ୍କରେ ଟାଣୁଆ ବିଷ ବାହାର କରିବାର ନାନା ଅନୁସନ୍ଧାନ ଚଳାଇଛନ୍ତି, ସେ କଥାଟିର ଗନ୍ଧ ମଧ୍ୟ ମଝିରେ ମଝିରେ ଟିକିଏ ଟିକିଏ ମିଳିବାକୁ ଆରମ୍ଭ କଲାଣି ।

ପୃଥିବୀରେ ଅସ୍ତ୍ରଶସ୍ତ୍ରଗୁଡ଼ାକ ଯେତିକି ପରିମାଣରେ ବଢ଼ୁଛି, ପୃଥିବୀରେ ଯୋଦ୍ଧା, ବନ୍ଧୁଆ ଏବଂ ଯୋଦ୍ଧାମାନେ ସମ୍ଭବତଃ ପ୍ରାୟ ସେତିକି ପରିମାଣରେ ଭୀରୁ ହେବାରେ ଲାଗିଛନ୍ତି; ଆମ ପୃଥିବୀର ଠେଙ୍ଗାଗୁଡ଼ାକ ବିବର୍ତ୍ତିତ ଓ କ୍ରମବିକଶିତ ହୋଇ କାଳକ୍ରମେ ଯେତିକି ଯେତିକି ଯନ୍ତ୍ରଚାଳିତ ଅଥବା ସ୍ୱୟଂଚାଳିତ ହେବାରେ ଲାଗିଛନ୍ତି, ପୃଥିବୀରେ ସତେଅବା ସାହସଗୁଡ଼ାକ ମଧ୍ୟ ସେତିକି କମି କମି ଯାଉଛି । ପରସ୍ପରକୁ ଜାଣିବା ଲାଗି ଆମର ସାଧନଗୁଡ଼ିକ ଯେତିକି ପରିମାଣରେ ଅଧିକ ପାକଳ ହେବାରେ ଲାଗିଛି, ଆମେ ସତେଅବା ସେତିକି ଅଧିକ ଭୀରୁ ହେବାରେ ବି ଲାଗିଛୁ, ପରସ୍ପର ପାଖରୁ ହୁଏତ ସେତିକି ଅଧିକ ପରିମାଣରେ ଲୁଚି ରହିବାର ଫିକର କରିବସିଛୁ । ଆମେ ନିଜେ ଯାହା ପ୍ରକୃତରେ ନୋହୁ, ସେଇଟାକୁ ହିଁ ସମସ୍ତଙ୍କୁ ଦେଖାଇବାର ଫନ୍ଦା କରି ବାହାରୁଛୁ ଏବଂ ଆମେ ପ୍ରକୃତରେ ଯାହା, ନାନା ପ୍ରକାର ମଣ୍ଡଣି ଦେଇ ସେଇଟାକୁ ଲୁଚାଇ ରଖିବାର ପ୍ରୟାସ କରୁଛୁ । ଆମର ସାହସ କମି ଯିବାରେ ଲାଗିଛି, ସାହାସିଆପଣଗୁଡ଼ାକ ଫଉଲି ଫୁଲି ଉଠିବାରେ ଲାଗିଛନ୍ତି । ଆଗେ ଯେଉଁଠି ଗୋଟିଏ ବଖରାରେ କାମ ଚଳିଯାଉଥିଲା, ଆଜି ସେଠାରେ ସାତ ବଖରାର ପ୍ରୟୋଜନ ହେଉଛି; ଯେଉଁଠାରେ ଗୋଟିଏ ମହଲାରେ ସମସ୍ତଙ୍କୁ ଜାଗା ହୋଇ ଯାଉଥିଲା, ସେଠି ବର୍ତ୍ତମାନ ସାତ ମହଲାର ବରାଦ ଦିଆ ହୋଇଛି । ଆଗେ ବାବୁମାନେ ବିନା ସେକ୍ରେଟେରୀରେ କାର୍ଯ୍ୟ କରୁଥିଲେ, ଏବେ ହୁଏତ ଗଣ୍ଡାଏ ସେକ୍ରେଟେରୀ ଦରକାର ହେଉଛନ୍ତି । ମାତ୍ର ଆଗେ ସମ୍ମୁଖସ୍ଥ ହୋଇଗଲା ମାତ୍ରକେ ଯେପରି ଦୁଆରଗୁଡ଼ାକ ଧଡ଼ଧାଡ଼ ହୋଇ ଫିଟି ଯାଉଥିଲା, ଏବେ ତତ୍‌ପରିବର୍ତ୍ତରେ ସେହି କବାଟଗୁଡ଼ାକ ସତେଅବା ଧଡ଼ଧାଡ଼ ହୋଇ ପଡ଼ିଯିବାରେ ଲାଗିଛି ଏବଂ ଯୋଉ ସାହସ ଥିଲେ ମଣିଷର ଦୁଆର ମଣିଷ ଲାଗି ଖୋଲିଯାଏ, ସେହି ସାହସଟି ସତେଅବା କୋଉଠି କୋଳପ ପଡ଼ି ରହିଗଲା ପରି ମନେ ହେଉଛି । ସତେଅବା ଉପନ୍ୟାସର ଶୈଳୀରେ ହିଁ ଜୀବନ ଚାଲୁଛି । କିଏ କ'ଣ କହିଲା, କେଡ଼େ ଫୁର୍ତ୍ତିରେ ଅର୍ଥାତ୍ କେଡ଼େ ସହଜ ଭାବରେ ସ୍ୱାଭାବିକ କରି କହିଲା, ସିଆଡ଼କୁ ଆଜି କୌଣସି ନଜର ନାହିଁ । ମାତ୍ର କିଏ କେତେ ପ୍ରକାରେ ବୁଲାଇ ବୁଲାଇ କହିଲା, ବନ୍ଧ ବସାଇ ଧଡ଼ା ପକାଇ କହିଲା, ବଜାରରେ ସେଇଟାକୁ ହିଁ କଦର ବୋଲି କୁହାଯାଉଛି । ଚିତ୍ରକଳ୍ପର ମାଧ୍ୟମରେ ଚିତ୍ରକୁ ଅନୁଭବ କରିବାର ନୂଆ ରୀତିଟା ହିଁ ଲୋକାଚାର ହୋଇ ବସିଲାଣି । ଏକଥା ଖାଲି ରାଜନୀତିରେ ହେଉନାହିଁ, –ଏକଥା ସାହୀ ପଡ଼ିଶାରେ ବି ହେଉଛି, ସାଙ୍ଗସାଥୀ ଭିତରେ ହେଉଛି, ସାହିତ୍ୟରେ ହେଉଛି; ଏବର ମଣିଷ ଯାହାକୁ ପ୍ରେମ ବୋଲି କହୁଛି, ସେଗୁଡ଼ାକରେ ମଧ୍ୟ ହେଉଛି । ସେଠାରେ ମଧ୍ୟ ସାହସ ଲାଜରେ ଲୁଚି ରହୁଛି ଏବଂ ସାହାସିଆପଣ ଜିତୁଛି, ସବୁଆଡ଼େ ସ୍ୱୟମ୍ବର ସଭାରେ ସେହିଗୁଡ଼ାକର ହିଁ ଅଧିକ କାଟ୍‌ତି ହେଉଛି ।

ଏହି ଭୀରୁତାଟାକୁ, ଅର୍ଥାତ୍ ବୁଲାଇ କହିବାକୁ ଏବଂ ବୁଲାଇ ବଞ୍ଚିବାକୁ ହିଁ କ'ଣ ଆମେ ସଭ୍ୟତା ବୋଲି କହିବା କି ? ଆପଣାର ସ୍ୱାଭାବିକତାକୁ ଚାପି ରଖିବା ଲାଗି ମଣିଷ ଯେତିକି ଯେତିକି ସମର୍ଥ ହେଉଥିବ, ସିଏ ପ୍ରକୃତରେ ସେତିକି ପରିମାଣରେ ହିଁ ସଭ୍ୟ ମଧ୍ୟ ହୋଇ ପାରୁଥିବ ବୋଲି ଘୋଷଣା କରୁଥିବା ଏକ ବୈଜ୍ଞାନିକ ସିଦ୍ଧାନ୍ତ ମଧ୍ୟ ରହିଛି । ପୂର୍ବକାଳରେ ମଣିଷ କମ୍ ସଭ୍ୟ ଥିଲା, ମାତ୍ର ଅଧିକ ସ୍ୱାଭାବିକ ଥିଲା ଏବଂ ଆମର ଏ ଯୁଗରେ ମଣିଷ ତା'ର ସ୍ୱାଭାବିକତାକୁ ହରାଇଛି, ଅର୍ଥାତ୍ ଆପଣାର ସ୍ୱାଭାବିକ ଘରଟିକୁ ସେ ଆକଟ କରି ଉଗାଳି ରଖିଛି ଏବଂ ଅଧିକ ସଭ୍ୟ ହୋଇ ପାରିଛି । ଦୁଇଟା ମଧ୍ୟରୁ କୋଉଟାକୁ ଆଦରି ନେଇ ମଣିଷ କେତେଦୂର ଲାଭବାନ ବା କ୍ଷତିଗ୍ରସ୍ତ ହୋଇଛି, ଏଠାରେ ସେକଥାର କୌଣସି ବିଚାର କରା ଯାଉନାହିଁ । ମାତ୍ର ଏହି କଥାଟି ଏକାନ୍ତ ସତ୍ୟ ଯେ, ଆଧୁନିକତା ନାମରେ ଅଧିକରୁ ଅଧିକ ପରିମାଣରେ ଗୁରାଇ ତୁରାଇ ହୋଇ ବସିବାକୁ ମନ କରିବା ମାତ୍ରକେ ମଣିଷ ତା'ର ସ୍ୱାଭାବିକ ଜୀବନ-ପ୍ରକାଶ ଏବଂ ସାହସଯୁକ୍ତ ଜୀବନ ସମ୍ବନ୍ଧରେ ଅନେକ ଖିଅ ଏବଂ ସମ୍ଭାବନାକୁ କ୍ରମେ ଅପ୍ରଧାନ ଏବଂ ତେଣୁ ଅନାବଶ୍ୟକ ବୋଲି ଗ୍ରହଣ କରିବାକୁ ମଧ୍ୟ ଆରମ୍ଭ କରିଛି । ଲୋକ-ସଙ୍ଗୀତ ଓ ଆଧୁନିକ କବିତାକୁ କେତେବେଳେ ପାଖକୁ ପାଖ ରଖି କିଞ୍ଚିତ୍ ତୁଳନା କରିବାକୁ ଚେଷ୍ଟା କଲେ ଆମେ ସେ କଥାଟିକୁ ହୁଏତ ବଡ଼ ସହଜରେ ବୁଝି ପାରିବା । ଲୋକ-ସଙ୍ଗୀତରେ ଭାବ ରହିଛି, ଭାବର ଅନୁଭୂତି ରହିଛି ଓ ଭାବର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ମଧ୍ୟ ରହିଛି; ମାତ୍ର ସେହି ଅଭିବ୍ୟକ୍ତିରେ ଆଦୌ କୌଣସି ଠାଣି ନାହିଁ; ଅଥବା ଯେତିକି ଠାଣି ଆଉ ଦେଖାଣି ରହିଛି, ସେଗୁଡ଼ିକ ମଧ୍ୟ ଅନୁଭୂତି ଦ୍ୱାରା ସ୍ୱାଙ୍ଗୀକୃତ ହୋଇ ରହିଥିବା ଜଗତଟି ମଧ୍ୟରେ ହିଁ ରହିଛି । ଆଧୁନିକ ଅନେକ କବିତାରେ ଭାବ ହୁଏତ ଅତ୍ୟନ୍ତ ନଗଣ୍ୟ ପରିମାଣେ ରହିଛି ବା ମୋଟେ ବି ନାହିଁ; ଭାବର ଅନୁଭୂତି ଅଛି କି ନାହିଁ, ସେଥିଲାଗି ଆଦୌ କୌଣସି ଅପେକ୍ଷା ନାହିଁ । ଯେଉଁଠି ଅନୁଭୂତି ଉପରେ ନିର୍ଭର ନ କଲେ ମଧ୍ୟ ଚଳିଯାଉଛି, ସେଠାରେ ଅଭିବ୍ୟକ୍ତିର ସମଗ୍ର ସଂଜ୍ଞାଟି ହିଁ ଏକାବେଳେକେ ଓଲଟ ପାଲଟ ହୋଇ ଯାଉଛି । ତେଣୁ ଠାଣି ଆଉ ଦେଖାଣିଟା ହିଁ ସାରସାମଗ୍ରୀ ହୋଇ କାର୍ଯ୍ୟ କରୁଛି । ସବୁ କ୍ଷେତ୍ରରେ କବିତା ଯେ ଭାବରୁ ହିଁ ଉଦୟ ହେବାଲାଗି ବାଧ୍ୟ ହେବ, ଆଧୁନିକ ଅନେକ କବି ହୁଏତ ଏକଥାଟିକୁ ସ୍ୱୀକାର ହିଁ କରିବାକୁ ବାହାରିବେ ନାହିଁ । ତେଣୁ ଏକ ପ୍ରସାଧନଗତ ପ୍ରକୃଷ୍ଟୀକରଣ ହିଁ ପରିଶେଷରେ ଆଧୁନିକ କବିତାରେ ସର୍ବମୂଳ ଭାସ୍କର୍ଯ୍ୟ ହୋଇ ରହୁଛି । ସେଇଥିରେ ହିଁ ସବୁ ପ୍ରତିଯୋଗିତା ଚାଲିଛି, ସବୁଯାକ ଗୋବରା-ଲଢ଼େଇ ଚାଲିଛି ।

ଏବେ ଅତ୍ୟାଧୁନିକମାନେ ଅନେକ ସମୟରେ ଯେପରି ଉତ୍ସାହର ସହିତ ଆଦିମକୁ ଲୋଡ଼ିବାରେ ତତ୍ପରତା ଦେଖାଉଛନ୍ତି, ସେହି କ୍ଷେତ୍ରରେ ଟିକିଏ ଅଧିକ ଗଭୀରକୁ ଯାଇ ଦେଖିବାକୁ ଏବଂ କଳିବାକୁ ଚେଷ୍ଟା କଲେ ଆମେ ହୁଏତ କେତେ କ'ଣ କୌତୂହଳୋଦ୍ଦୀପକ ଭାବ ଏବଂ ଅଭାବର ଆବିଷ୍କାର କରିବାକୁ ସମର୍ଥ ହୋଇ ପାରିବା । ହାଓ୍ୱାଇ ଦ୍ୱୀପର ଆଦିମତାଗୁଡ଼ାକୁ ଆଜି ଆମେରିକାର ବଡ଼ ବଡ଼ ସହରର ଅତ୍ୟାଧୁନିକମାନେ ପ୍ରାୟ ବ୍ୟାକୁଳ ହୋଇ ଲୋଡ଼ିବାରେ ଲାଗିଛନ୍ତି । ହାଓ୍ୱାଇ ଦ୍ୱୀପରେ ବାସ କରୁଥିବା ପତର-ସଉରୁଣୀମାନଙ୍କର ପୋଷାକର ମଡ଼େଲ ଅନୁସାରେ ଏବେ ନଗରଚାରିଣୀ ଅତ୍ୟାଧୁନିକାମାନଙ୍କର ପୋଷାକ ତିଆରି ହେବାର ଫେଶନ୍ ବାହାରିଲାଣି । ଅତ୍ୟାଧୁନିକ କଳା ଭିତରେ ଆଦିମତା ଅର୍ଥାତ୍ ଆଦିମ ମାନବର କଳା ଏକ ବିଶେଷ ଭରଣା ବା ବିଶେଷ ବ୍ୟସନ ରୂପେ ବି ପ୍ରବେଶ କଲାଣି । ଆଧୁନିକ କବିମାନେ ଚିତ୍ରକଳ୍ପ ଖୋଜି ଏବେ ଚୌରଙ୍ଗୀ ଓ ଚାନ୍ଦିନୀଚୌକ ଛାଡ଼ି ଆଦିମ ଜୀବନ ଓ ଆଦିବାସୀ ସମାଜକୁ ଧାଇଁଲେଣି; ଜୀବନର ଫିକା ଓ ପାଲିଶ୍ ସୂତାଗୁଡ଼ାକରେ ଅନ୍ତତଃ ଗୋଟାଏ ହେଲେ ଗଣ୍ଠି ଖୋଜି ସହରୀମାନେ ଏବେ ଜଙ୍ଗଲକୁ ଧାଇଁଲେଣି । ଏପାଖରେ ଆଧୁନିକ କବିତାର କର୍ଷଣ ଲାଗିଛି, ତେଣେ ଆଦିବାସୀ ଲୋକଗୀତର ବି ଚୟନ କରାଯାଉଛି । ଗୋଟାଏ ପାଖରେ ଯନ୍ତ୍ରଣା, ଗ୍ଲାନି ଓ ଶୂନ୍ୟତା, ଆପଣାକୁ କୋଉଠି ହେଲେ ଦେଇ ନ ପାରିବାର ଦରଜ ଓ କ୍ଷୋଭଗୁଡ଼ାକ; ଅନ୍ୟ ପାଖରେ ଆପଣାର ସବୁକିଛିକୁ ଦେଇ ଓ ସବୁଯାକ ଦ୍ୱାରକୁ ମୁକୁଳା କରି ଦେଇ ଜୀବନଟିକୁ ବଞ୍ଚୁଥିବା ଆଦିମ ମଣିଷର ଗୀତଗୁଡ଼ିକୁ ଘ୍ରାଣ କରି ସତେଅବା ମଣିଷ କେତେ କେତେ କ୍ଷତିପୂରଣର ଆନନ୍ଦ ଲାଭ କରୁଛି, କେତେ ଅବସାଦକୁ ଭୁଲି ରହିଯିବାର ଆଶ୍ୱାସନା ଲାଭ କରୁଛି । ଏଥିରୁ ଯିଏ ଯୋଉ ଅର୍ଥ କରିବାକୁ ଯାଉ ପଛକେ, ଏଥିରୁ ଗୋଟିଏ କଥାର ପ୍ରତିପାଦନ ଅବଶ୍ୟ ହୋଇ ଯାଉଛି । ପରିବେଶ ଏବଂ ଭୂମି-ନିର୍ବାଚନର ନାନା ଘେରରେ ପଡ଼ି ଆଧୁନିକ ହୋଇ ବସିଥିବା ମଣିଷ ତଥାପି ଟିକିଏ ସାହସ ଲୋଡ଼ୁଛି, ତଥାପି ଟିକିଏ ସହଜତା ମଧ୍ୟ ଲୋଡ଼ୁଛି । କୋଠାବାଡ଼ି, ଫାଇଲ୍, ହାକିମୀ, କ୍ଷମତା ଓ ନିରାପତ୍ତାର ଘଣ୍ଟାଚକଟା ଓ ଘଣ୍ଟବାଡ଼ିଆ ଭିତରେ ନିଃସଙ୍ଗ ହୋଇ ବସିଥିବା ମଣିଷ ତଥାପି ଏତେଟିକିଏ ସଙ୍ଗ ଲୋଡ଼ୁଛି, ସଙ୍ଗଭଳି ସଙ୍ଗ ଲୋଡ଼ୁଛି । ଲୋକ ଭୁଲାଇବାର ସଙ୍ଗ ନୁହେଁ, କ୍ଲବ୍‌ର ବିକରାଳ ହୋ' ହୋ' ଭିତରେ ମଣିଷକୁ ଯେଉଁ ତଥାକଥିତ ସଙ୍ଗ ମିଳିଥାଏ ଏବଂ ଯେଉଁଟି ଲାଗି ରାତି ହେବା ମାତ୍ରକେ ଦିନଯାକର ଉପେକ୍ଷିତ ପରିବର୍ଜିତ ମଣିଷ ଏଡ଼େ ବିକଳରେ ଘରୁ କ୍ଲବ୍‌କୁ ଦଉଡ଼ିଯାଏ, ସେହି ସଙ୍ଗ ନୁହେଁ, ମାତ୍ର ଯେଉଁ ସଙ୍ଗ ଘର ଭରାଇଦିଏ, ଯୋଉ ସଙ୍ଗ ଜୀବନ-ସୁଖଦାୟୀ ପବନର ପରଶ ଆଣିଦିଏ, ଯାହା ଝରକାଗୁଡ଼ାକୁ ଏକାବେଳେକେ

ଖୋଲିଦେଇ ଯାଏ ଓ କୁଣ୍ଢାଗୁଡ଼ାକୁ ଭାଙ୍ଗିଦେଇ ଯାଏ, ସେହି ସଙ୍ଗ । ସବୁଯାକ ସାହସିଆ କଥା ଓ ସାହସିଆ ଭେକ ତଳେ, ସବୁପ୍ରକାରର କାନ୍ଥ ଓ କୁହାଟ ପଛରେ ଭୀରୁ ଓ ଅସମର୍ଥ ହୋଇ ବସିଥିବା, ଆପଣାର ରେଶମ ସୂତାଗୁଡ଼ାକ ଭିତରେ ଆପେ ଛନ୍ଦି ହୋଇ ପଡ଼ିଥିବା ମଣିଷ ତଥାପି ସାହସ ଲୋଡୁଥାଏ, ସମ୍ଭାଷଣ ଲୋଡୁଥାଏ, ସଙ୍ଗ ଲୋଡୁଥାଏ । ଆପଣାର ଗାଡ଼ଗୁଡ଼ାକୁ ସେ ହୁଏତ ଏହିପରି ଭାବରେ ହିଁ ଭର୍ତ୍ତି କରିଦେଇ ପାରିବ ବୋଲି ଲୋଡୁଥାଏ ଏବଂ ସେତେବେଳେ, ପାଖରେ ଖଣ୍ଡେ ଦୂରରେ ଠିଆ ହୋଇ ଯବନ କିରି କିରି ହୋଇ ହସୁଥାଏ ।

ଯବନ ମୂର୍ତ୍ତି ଭାଙ୍ଗିବାକୁ ଆସେ; ମାତ୍ର ତା'ର ବାଦ ମୂର୍ତ୍ତିଟା ସହିତ ନୁହେଁ, ତା'ର କଳହ ଭୀରୁତା ସହିତ । ଅନେକ ସମୟରେ ସତ୍ୟର ସମ୍ମୁଖୀନ ହେବାକୁ ପଶ୍ଚାତ୍‌ପଦ ହୋଇ ଭୀରୁମାନେ ବଡ଼ ଆଗ୍ରହରେ ମୂର୍ତ୍ତିଗୁଡ଼ିକୁ ହିଁ ଆଣି ଥାପି ଦିଅନ୍ତି ଏବଂ ସେଇଥିରୁ ହିଁ ସତ୍ୟଦର୍ଶନର ଆନନ୍ଦଟିକୁ ଲାଭ କରିବା ସକାଶେ ସକସକ ହେଉଥାନ୍ତି । ଠିକ୍ ସେତିକିବେଳେ ହିଁ ଯବନ ସେହି ମୂର୍ତ୍ତିଗୁଡ଼ାକୁ ଭାଙ୍ଗି ପକାଇବା ଲାଗି ମନ୍ତ୍ରଣା ଦିଏ, ଅର୍ଥାତ୍ ଭୀରୁତାଗୁଡ଼ାକୁ ନିରବଲମ୍ବନ କରି ଏକାବେଳେକେ ପଦାରେ ଆଣି ପକାଇ ଦେବା ଲାଗି ମନ୍ତ୍ରଣା ଦିଏ । ଚଳନ୍ତି ଦିଅଁ ଗୁଡ଼ାକୁ ସିଏ ଏକାବେଳେକେ ଅଚଳନ୍ତି ବୋଲି ଘୋଷଣା କରେ । ଭୀରୁତାର ମୀମାଂସାଗୁଡ଼ାକୁ ମାନି ନେବାକୁ ସେ ଗୋଟାସୁଦ୍ଧା ମନା କରିଦିଏ । ଆପଣାର ଚିତ୍ରକକ୍ଷ ଅଥବା ଚିତ୍ରକକ୍ଷର ସିଦ୍ଧାନ୍ତଗୁଡ଼ାକୁ ଭୀରୁତା ସିଧା ଆକାଶ ମଧ୍ୟରୁ ଗୋଟାଇ ଆଣିଥାଉ ପଛକେ, ଯବନ ସେଗୁଡ଼ାକୁ ଅସ୍ୱୀକାର କରେ ଓ କିରି କିରି ହୋଇ ହସୁଥାଏ । ଭୀରୁତାର ଯାବତୀୟ ପ୍ରତାପ ଓ ପ୍ରଚଣ୍ଡତାକୁ ସିଏ ସିଧା ଭୀରୁତା ବୋଲି ହିଁ ଘୋଷଣା କରିଦିଏ ।

ରାଜନୀତିରେ ଭୀରୁତା, ସାହିତ୍ୟରେ ଭୀରୁତା, ସମ୍ବନ୍ଧରେ ଭୀରୁତା ଓ ତେଣୁ ଅବିଶ୍ୱାସ ଏବଂ କପଟତା–ଯବନ ଏଗୁଡ଼ାକୁ କେବଳ ଗୋଟିଏ ଧାତୁରେ ହିଁ ତିଆରି ହୋଇଥିବାର ଜାଣେ, କେବଳ ଗୋଟିଏ ତତ୍ପରତାରେ ହିଁ ଧାବମାନ ହେଉଥିବାର ଜାଣେ । ମଣିଷ ପାଖରେ ଭୀରୁତା ଓ ଭଗବାନଙ୍କ ପାଖରେ ଭୀରୁତା, ଆପଣାଠାରୁ ବଡ଼ମାନଙ୍କ ପାଖରେ ଲାଙ୍ଗୁଳଜକା ଭୀରୁତା ଓ ଆପଣାଠାରୁ ନ୍ୟୂନମାନଙ୍କ ପାଖରେ ତୋଡ଼ଦେଖା ଭୀରୁତା, ଯବନ ଦୁଇଟି ମଧ୍ୟରେ ଆଦୌ କୌଣସି ଅନ୍ତର ଦେଖିପାରେ ନାହିଁ । ବାହାରକୁ ନାନା ଜାତି ଓ ନାନା ଛଟା ହୋଇ ଦେଖାଯାଉଥିଲେ ମଧ୍ୟ ଏଗୁଡ଼ିକର କେବଳ ଗୋଟିଏ ଜାତି, ଏବଂ ଯବନ ସେହି ଜାତିଟାକୁ ମାନିବାଲାଗି ଇଚ୍ଛାହିଁ କରେ ନାହିଁ । ସେ ସେଗୁଡ଼ିକୁ ଜୀବନ ପ୍ରତି ଗୋଟିଏ ଗୋଟିଏ ପ୍ରମାଦ ବୋଲି ହିଁ ଜାଣେ ।

ଭୀରୁମାନେ ଆପଣା ଅପେକ୍ଷା ଆପଣାର ଶତ୍ରୁମାନଙ୍କୁ ହିଁ ଆଗ ଦେଖନ୍ତି ଏବଂ ଅଧିକ ପରିମାଣରେ ଦେଖନ୍ତି । ମୋତେ କାଳେ କିଏ ବାନ୍ଧି ପକାଇବ ଅଥବା ମୋର ଚେରଗୁଡ଼ାକୁ କିଏ କାଟି ପକାଇବ ଭାବି ସେମାନେ ଅନେକ ସମୟରେ ଆଗ ରଜ୍ଜୁ ପକାଇ ଅନ୍ୟମାନଙ୍କୁ ବାନ୍ଧି ଆଣିବାକୁ ଇଚ୍ଛା କରନ୍ତି, ଅନ୍ୟମାନଙ୍କର ଚେର କାଟିବାଲାଗି ଆଗତୁରା ନସର ପସର ହୋଇ ପଡ଼ନ୍ତି । ଅସଲ କଥାଟିକୁ ଖୋଲି କହିଦେଲେ କାଳେ ଆପେ ଧରା ପଡ଼ିଯିବେ ବୋଲି ସେମାନେ କଥାଗୁଡ଼ାକୁ ବୁଲାଇ ବୁଲାଇ କହନ୍ତି । ଭାବଟା ତୁଳନାରେ ଅଭାବରେ ହିଁ ଅଧିକ ପ୍ରୀତି କରନ୍ତି; ବେଳେ ବେଳେ ଭାବଟାକୁ ଗୋଟାସୁଦ୍ଧା ବାଦ୍ ଦେଇ ଅଭାବଗୁଡ଼ାକୁ ହିଁ ଝୁଣିବାରେ ଲାଗିଥାନ୍ତି ଓ ସେଇଥିରୁ ଆପ୍ୟାୟନ ଲାଭ କରନ୍ତି । କଳ୍ପିତ ଶତ୍ରୁଗୁଡ଼ାଙ୍କୁ ଦେଖିବା ମାତ୍ରକେ ଏକାଥରକେ ଲାଛିଦେବେ ବୋଲି ଏମାନେ ସର୍ବଦା ଚାପହସ୍ତ ହୋଇ ବସିଥାନ୍ତି, ଆୟୁଧସ୍ଥ ହୋଇ ବସିଥାନ୍ତି ଏବଂ ଏହିମାନଙ୍କ ଲାଗି ହିଁ ଯବନ ଗୋପପୁରେ ବଢ଼ିବାରେ ଲାଗିଥାଏ,–କଂସାସୁରମାନେ ତୁହାକୁ ତୁହା ଆୟୁଧ କଚାଡ଼ିବାରେ ଲାଗିଥିଲେ ମଧ୍ୟ ଯବନ ସବୁ ପ୍ରାସାଦର ଅନେକ ଦୂରରେ ବନମାଳି ହୋଇ ବଢୁଥାଏ । କଂସାସୁରମାନେ କ୍ଷମତା ଲୋଡ଼ନ୍ତି, ଆପଣାକୁ ବଡ଼ କରି ରଖିବାକୁ ଏବଂ ଅନ୍ୟମାନଙ୍କୁ ମଣାଇ ଅପଦସ୍ଥ କରି ରଖିବାକୁ ସେମାନେ କ୍ଷମତା ଲୋଡ଼ନ୍ତି । ସେହି କ୍ଷମତାଗୁଡ଼ାକୁ ଦେଖି ଯବନ କିରିକିରି ହୋଇ ହସୁଥାଏ, ପୋଲା ଛଇଗୁଡ଼ାକୁ ଦେଖି ସେ ନ ହସି ରହି ପାରେନାହିଁ । ସଂସାରରେ ଯଦି କେହି ମନ ଖୋଲି ହସିପାରେ, ସବୁ ପାଚେରୀକୁ ଏକାବେଳେକେ କମ୍ପାଇ ଦେଲାଭଳି ହସିପାରେ, ଦୁଆର ଖୋଲି ସିଧା ଆଖିରେ ଆଖି ମିଳାଇ ହସିପାରେ, ତେବେ ସିଏ ହେଉଛି ନିଶ୍ଚୟ ଯବନ, ଯବନ ଛଡ଼ା ଆଉ କେହି ନୁହେଁ । ସିଏ ସାହସକୁ ଡରି ଅନ୍ୟାନ୍ୟ ଅନେକ ଦେବତାକୁ ଆଦରି ଅନ୍ୟ ପ୍ରତିମା ଭଜି ଡାଟିଆ କାମୁଡ଼ି ବସିଥାଏ, ତା'ର ହସଘରେ ସଦାବେଳେ କୋଳପ ପଡ଼ିଥାଏ ।

ଶେଷ କରିବା ଆଗରୁ ଆମେ ପୁଣି କଥାର ମୂଳଟିକୁ ଫେରି ଆସିବା । ଯିଏ ହସରେ ଜୟ କରି ନ ପାରେ, ହୁଏତ ସେଇ ଶତ୍ରୁକୁ ମାରିବା ପାଇଁ ବିଷ ଡାଟିଆ ସଜାଡୁଥାଏ, ଲାବୋରେଟେରିରେ ନାନାବିଧ ବିଷକୁ ଏକାଠି ଗୋଳି ଏକ ଅମୋଘ ବିଷର ବରାଦ କରିବାରେ ଲାଗିଥାଏ । ଆପଣା ବାଟରେ ଚାଲିବାର ବିଶ୍ୱାସଟିକୁ ହରାଇ ବସିଲେ ହିଁ ଅନ୍ୟର ବାଟକୁ ଆପଣାର ପ୍ରମାଦ ବୋଲି ଗଣିବାର ଦୁର୍ବୁଦ୍ଧି ଆସି ପହଞ୍ଚେ, ଅନ୍ୟର ବାଟରେ କଣ୍ଟା ପକାଇବାକୁ ମନ ହୁଏ । ମୋର ଜୀବନ-ନୀତି ଓ ମୋର ବାନ୍ଧବ ବାନ୍ଧିବା ନୀତି ଯେତେବେଳେ ମୋତେ ଗୋଟାସୁଦ୍ଧା ଦେବାଳିଆ କରି ସାରିଲାଣି ବୋଲି ପ୍ରତୀତ ହେବାକୁ ଲାଗେ, ସେତିକିବେଳେ ହିଁ ମୁଁ ମୋ ଧନୁରେ ଗୁଣ ଚଢ଼ାଇବାକୁ

ଆରମ୍ଭ କରେ, ମୋ ନାଟକର ଖଳନାୟକମାନଙ୍କୁ ବିଷ ଦେଇ ମାରି ନିରଙ୍କୁଶ ହିରୋ ହୋଇ ବସିବାକୁ ଚାହେ, ବୈଜ୍ଞାନିକ ଲଗାଇ ବିଷର ଗବେଷଣା କରାଏ ଏବଂ ଶେଷକୁ ମୋରି ବିଜୟ ହେବ ଏବଂ ଶତ୍ରୁମାନଙ୍କର ନିପାତ ହେବ ବୋଲି ଏକ ଆତ୍ମପରାୟଣ ଦମ୍ଭ ସହିତ ସ୍ୱପ୍ନଦେଖା ମଧ୍ୟରେ ମୋର କ୍ଷମତା, ମୋର ଭୃତ୍ୟତନ୍ତ୍ର ଓ ମୋର ଅସରପିଗୁଡ଼ାକ ହିଁ ହୀରା ଲୀଳା ମୋତି ମାଣିକ୍ୟ ହୋଇ ଝଟକିବାରେ ଲାଗିଥାନ୍ତି, ସଂସାରଯାକର ସମସ୍ତଙ୍କର ଆଖିକୁ ବୋକା ବନାଇ ଦେବାକୁ ଭାବୁଥାନ୍ତି । କେତେ ଲୋକ ଜଳକା ହୋଇ ଅନାଇ ରହିଥାନ୍ତି ।

ସମସ୍ତେ ଜଳକା ହୁଅନ୍ତି, କିନ୍ତୁ ଯବନ ଜଳକା ହୁଏନାହିଁ । ଯୁଗ ବୁଡ଼ିଯାଏ, କିନ୍ତୁ ଯବନ ବିହନ ହୋଇ ବଞ୍ଚି ରହେ । ଭୀରୁ ନୃପତିମାନଙ୍କୁ ହୁଏତ ସମସ୍ତେ ରାଜଚକ୍ରବର୍ତ୍ତୀ ବୋଲି ସ୍ୱୀକାର କରି ନିଅନ୍ତି, କିନ୍ତୁ ଯବନ ସ୍ୱୀକାର କରେ ନାହିଁ । ସିଏ ମହୁଡ଼ ଗୁଡ଼ାକର ସେପାଖକୁ ମଧ୍ୟ ଦେଖିପାରେ, ଛତି ଓ ଚାମର ଗୁଡ଼ାକର ସେପାଖକୁ ଦେଖିପାରେ, ଆପଣାର ଅସଲ ଅନୁରକ୍ତି ଗୁଡ଼ିକୁ ସେ ସକଳ କୁହୁଡ଼ିର ସେପାଖକୁ ଭେଦାଇ ଦେଖିପାରେ । ସିଏ ଅନ୍ୟ ଅବତାରର ଆକାଂକ୍ଷୀ ହୋଇ ରହିଥାଏ । ଯେଉଁ ଅଭିସାରିକାର ମୁହୂର୍ତ୍ତଟି ଏପର୍ଯ୍ୟନ୍ତ ଆସିନାହିଁ, ସତେଅବା ତାହାରି ପରି ଯବନ ଆପଣାର ସକଳ ଅନୁରାଗର ସମ୍ଭାରକୁ ବହନ କରି ଅପେକ୍ଷା କରି ରହିଥାଏ । କୃଷ୍ଣାଭିସାରୀମାନେ ତାର ସେହି ଅନୁରାଗକୁ କଦାପି ଚହଲାଇ ପାରନ୍ତି ନାହିଁ, ତା'ର ଗଣନା ଗୁଡ଼ାକୁ ଭୀରୁତା ଗୁଡ଼ାକ ଆଦୌ ଚହଲାଇ ପାରନ୍ତି ନାହିଁ । ଭୀରୁମାନେ ଆସନ୍ତି, ଯାଆନ୍ତି, ପୁରୁଣା ଭୃତ୍ୟମାନେ ଚଞ୍ଚୁ ବଦଳାଇ ସେହି ଗୋଟିଏ ସ୍ୱରରେ ହିଁ ଚାରୁବାକ୍ୟ ଗୁଡ଼ାକୁ ଗାଇବାରେ ଲାଗିଥାନ୍ତି । ନିଜକୁ ଓ ଚଳଣିର ବଜାର ଗୁଡ଼ାକୁ ସେମାନେ ଭାରି ହେରେକ୍ଷା କରି ରଖିଥାନ୍ତି । ସୁଜ୍ଞ ଓ ବିଜ୍ଞମାନେ ହସ ମାଡୁଥିଲେ ମଧ୍ୟ ସମ୍ଭ୍ରମ ଅବଲମ୍ବନ କରି ହାସ୍ୟ ସମ୍ବରଣ କରି ରହିଥାନ୍ତି । ଏବଂ ଯବନ କିରି କିରି ହୋଇ ହସିବାରେ ଲାଗିଥାଏ ।

ତା୧୦।୧୦।୧୯୭୫ରିଖ



# ଆଠ

ହଁ, ଯବନ କିରି କିରି ହୋଇ ହସୁଥାଏ । ସମ୍ଭବତଃ କେବଳ ଯବନ ହିଁ କିରି କିରି ହୋଇ ହସିପାରେ । ଆଉ କେହି ପାରନ୍ତି ନାହିଁ ବା ପାରିଲେ ବି ହସନ୍ତି ନାହିଁ । ଆଉମାନେ ଆଗ ଭାବିଚିନ୍ତି ତା'ପରେ ଯାଇ ହସନ୍ତି । ସେମାନଙ୍କ ମଧ୍ୟରେ ଅନେକେ ଏପରି ଥାଆନ୍ତି, ଯେଉଁମାନେ କି ହଠାତ୍ ଆଦୌ ହସି ପାରନ୍ତି ନାହିଁ । ହସିଲେ ଅଭଦ୍ରତା ହେବ ବୋଲି ହସନ୍ତି ନାହିଁ । ହସିଲେ କାଳେ ଧରା ପଡ଼ିଯିବେ ବୋଲି ବି ଆଉ କେହି କେହି ହସନ୍ତି ନାହିଁ । ଏମାନେ ସମସ୍ତେ ପରେ ହସନ୍ତି, ପଛରେ ହସନ୍ତି, କେହି ନଥିଲାବେଳେ ହସନ୍ତି, ଅର୍ଥାତ୍ କବାଟକିଳି ଥରେ ଚାରିଆଡ଼କୁ ଅନାଇ ନିଅନ୍ତି, କେହି କୁଆଡ଼େ ନାହାନ୍ତି ବୋଲି ଥରେ ଦେଖି ନିଅନ୍ତି ଓ ତା'ପରେ ଯାଇ ହସନ୍ତି । ଚୋରର ମାଆ ଘରେ କବାଟ ଦେଇ କାନ୍ଦିଲା ପରି ଏମାନେ ପ୍ରକୃତରେ କବାଟ ବନ୍ଦ କରି ହସନ୍ତି । ଆଉ କାହା କଥା ପକାଇ ଠୋ' ଠୋ' ହସନ୍ତି ଓ ନିଜର ଲାଜଗୁଡ଼ାକୁ ଗୋଟାସୁଦ୍ଧା ଧୋଇନେବା ପରି ଅନୁଭବ କରୁଥାନ୍ତି । ଏମାନେ ନିରାପଦ ହୋଇ ରହିଯାନ୍ତି ।

ଯବନ ହେରେଷାକୁ ହସେ, ଭେରେସାକୁ ବି ହସେ । ମୁହଁ ଉପରେ ହସେ; କଳିଆ କରି ନୁହେଁ, କୌଣସି କୋଳାହଳ ନକରି ସେ ହସେ ଏବଂ ଏହିପରି ହସିପାରେ ବୋଲି ସେ ସ୍ୱୀକୃତ ଅନେକ ସଭାର ହେରେଷାମି ଏବଂ ଭେରେସାମି ପାଖରୁ ଆପଣାକୁ ଅତି ସହଜରେ ପ୍ରତ୍ୟାହୃତ କରିନେଇ ବି ଆସିପାରେ । ଯେଉଁମାନେ ହେରେଷାମି କରନ୍ତି, ତାକୁ ସେମାନଙ୍କ ସହିତ କୌଣସି କଜିଆ କରିବାକୁ ପଡ଼େ ନାହିଁ । ମାତ୍ର ସେମାନଙ୍କ ସହିତ ସିଏ ତଥାପି ନଥାଏ ।

ଖାଲି କ'ଣ ପିଲାମାନେ ହେରେଷାମି କରନ୍ତି ? କାହା କଥା କହୁ କହୁ କୋଉଠି ଯାଇ ପହଞ୍ଚନ୍ତି ଓ କୋଉ ଦିଅଁଙ୍କର ପୂଜା କରିବାକୁ ଯାଇ ପୁଣି ଆଉ କୋଉ କୋଉ ଦିଅଁଙ୍କ ଦେଉଳରେ ଭୋଗ ଲଗାଇ ଚଣ୍ଡ ନେଇ ଫେରନ୍ତି ? ବଡ଼ମାନେ ମଧ୍ୟ ଅତି ଚମତ୍କାର ଭାବରେ ହେରେଷା ହୋଇ ପାରନ୍ତି । ପୂରା ପୋଷାକ ପିନ୍ଧି ମଧ୍ୟ ହେରେଷା

ହୋଇ ପାରନ୍ତି । ରାଜଧାନୀର ଯେକୌଣସି ମହାର୍ଘ ପ୍ରେକ୍ଷାଳୟରେ ରୋଷନି ତଳେ ବସି ମାଇକ୍ ଆଗରେ ଠିଆ ହୋଇ ଅତ୍ୟନ୍ତ କୃତକୃତ୍ୟ ଓ ଗଦ୍‌ଗଦ୍ ଭାବରେ ମଧ୍ୟ ହେରେଷାମିରେ ଆରମ୍ଭ କରି ପାରନ୍ତି ଏବଂ ହେରେଷାମିରେ ମଧ୍ୟ ଶେଷ ମଧ୍ୟ କରି ପାରନ୍ତି । ପିଲାମାନେ ଏତେଗୁଡ଼ାଏ କଥା କେବେହେଲେ କରି ପାରନ୍ତେ ନାହିଁ । ସେମାନେ ତ ନିଜେ ହସି ପକାନ୍ତେ, ପୋକ କାମୁଡ଼ିଲା ପରି ମୁହଁ ଉପରୁ ହଠାତ୍ ମୁଖାଟାକୁ କାଢ଼ି ଫୋପାଡ଼ି ଦେଇ ପାରନ୍ତେ ଓ "ମୋ' ଦେଇ ହେବ ନାହିଁ" ବୋଲି କହି ମଞ୍ଚ ଉପରୁ କୁଆଡ଼େ ଖସି ପଳାଇ ଯାଆନ୍ତେ । ତା'ପରେ ଘରକୁ ଯାଇ ସୁନାପୁଅ ପରି ଜ୍ୟାମିତି ପଢ଼ନ୍ତେ କିମ୍ୱା ଭୂଗୋଳ ପଢ଼ନ୍ତେ । ଆଉ କେବେହେଲେ ଅଯୋଧ୍ୟାକୁ ମନ କରନ୍ତେ ନାହିଁ ।

ମାତ୍ର ବଡ଼ମାନେ ଅଧ୍ୟବସାୟୀ, ବଡ଼ମାନେ ପକ୍‌କା ହିସାବୀ; ସେମାନେ ମିଛଟାରେ କିଛି କରନ୍ତି ନାହିଁ, ଅମଣିଆଙ୍କର ପରି କେବେହେଲେ କୌଣସିଥିରେ ହାତ ଦିଅନ୍ତି ନାହିଁ । ସେମାନେ ବେକରେ ପତ୍ରୁ ପତ୍ରୁ ବଜାଇ ଶିଖନ୍ତି ଏବଂ ସହଜରେ ତୁଷ୍ଟ କରି ପାରନ୍ତି । ଆପଣାର ସଂସାରଟି ଯେପରି ସବୁବେଳେ ବଡ଼ମାନଙ୍କର ସଂସାର ପରି ଦିଶିବ, ଗମ୍ଭୀର ଦିଶିବ, ଘେନାଇଲା ପରି ଦିଶିବ, ପୂରି ରହିଥିବା ପରି ଦିଶିବ, ସେଥିଲାଗି ସେମାନେ କେବେହେଲେ କୌଣସି କସର କରି ନଥାନ୍ତି । କିଏ ଚାକିରିଟିଏ କରିଥାଏ; ତାକୁ ଯେଉଁ କାମଟି କରିବା ଲାଗି ଦିଆଯାଇଥାଏ, ତା'ର ସେଥିରେ ଯେତେ ମନ ନଥାଏ, ତା'ର କାମଟିକୁ ସେ ଭାରି ଗମ୍ଭୀର ଭାବରେ କରିବାରେ ଲାଗିଛି ବୋଲି ଯେପରି ବାହାରକୁ ସବୁବେଳେ ଦିଶୁଥିବ, ସେଇଥିରେ ହିଁ ତା'ର ଅଧିକ ମନ ରହିଥାଏ । କିଏ ଅଧ୍ୟାପନା କରୁଥାଏ; ଅଧ୍ୟାପନା ଚୁଲୀକୁ ଯାଏ, ବହିପଢ଼ା ଚୁଲୀକୁ ଯାଏ, ପିଲାମାନେ ବି ହୁଏତ ଚୁଲୀକୁ ଯାଆନ୍ତି; ସେଥିପ୍ରତି ଯେତେ ଚିନ୍ତା ବା ଦରଦ ନଥାଏ, ମୋତେ କିପରି ସମସ୍ତେ ଅଧ୍ୟାପକର ମର୍ଯ୍ୟାଦା ଦେବେ, ପଙ୍କ ଓ ପାଣି ଉପରକୁ ଆହୁରି ଷାଠିଏ ହାତ ଦେଖା ଯାଉଥିବା ବାଉଁଶଟି ପରି ମୁଁ କିପରି ପରିପୂର୍ଣ୍ଣ ସମ୍ଭ୍ରମ ସହିତ ସମ୍ପୃକ୍ତ ଅସମ୍ପୃକ୍ତ ସମସ୍ତଙ୍କର ଆଖିକୁ ଗୋଟାଏ ଅଧ୍ୟାପକ ପରି ଦିଶିବି, ସେଥିଲାଗି ତା'ର ସବୁଠାରୁ ଅଧିକ ଚିନ୍ତା ରହିଥାଏ । ଆଉ କିଏ ସାହିତ୍ୟ କରେ; ଘର ଭିତରେ ଏକୁଟିଆ ବସି ସିଏ ବହି ପରେ ବହି ଗଦା କରି ଦେଉଥାଏ । ମାତ୍ର ତା'ର ଅସଲ ନାଡ଼ୀଟି ସାହିତ୍ୟ ସହିତ ଲାଗି ନଥାଏ । ସେଇଟି ସମ୍ଭବତଃ ତା' ନିଜ ସହିତ ଲାଗିଥାଏ । ସେଥିଲାଗି ଦିନଯାକ ସିଏ କେତେ ଲଣ୍ଡଭଣ୍ଡ ହେଉଥାଏ, ଅନେକ ପତିଙ୍କର ସେବାରେ କେତେ ହନ୍ତସନ୍ତ ହୋଇ ରହିଥାଏ । ସେ କେତେ ଦଉଡ଼ ଧାପଡ଼ କରେ, କେତେ ଭୂମିକାରେ ଉତୁରେ । ହୁଏତ ସାହିତ୍ୟକୁ ଉତ୍ସାହଦାତା ବୋଲି ଗ୍ରହଣ କରିଥାଏ, ତାକୁ ବେଳେ ବେଳେ ଆପଣାର

ପ୍ରେରଣାଦାତା ବୋଲି ବି କହେ, ମାତ୍ର ତା' ଜୀବନର ଅସଲ ଟିକଟି ଅନ୍ନଦାତାଙ୍କର ଖଟଗୋଡ଼ଟିକୁ ଆଶ୍ରା କରି ପଡ଼ି ରହିଥାଏ । ସିଏ ସଭାଘରେ ଆପଣାକୁ ତୋଷାମଦକାରୀର ଭୂମିକାରେ ନେଇ ଅବତୀର୍ଣ୍ଣ କରାଏ । ତୁଚ୍ଛା ପୋଲାକଥାଗୁଡ଼ାକୁ ସିଏ ଗୋଟାଏ ଫୁଙ୍କରେ ବାସ୍ତବ ପ୍ରଶସ୍ତିବଚନ ଓ ତେଣୁ ସ୍ୱସ୍ତିବଚନରେ ପରିଣତ କରି ଦେଇପାରେ । ସାହିତ୍ୟ କୁଆଡ଼େ ବିଦା ହୋଇଯାଏ; ଭୀରୁଟିଏ, ଚାଟୁକାରଟିଏ ସତେଅବା କୂଳୁରୁ କୂଳୁରୁ ହୋଇ ଦୟାବତାରଙ୍କ ପାଖରେ ବିକା ହୋଇ ରହିବ ବୋଲି ଦରୋଟି କରିବାରେ ଲାଗିଥାଏ, ଦଇନି କରିବାରେ ଲାଗିଥାଏ ।

ଏଗୁଡ଼ାକ ହେଉଛି ହେରେଷାମି । ଏଥିରେ କେହି ହସନ୍ତି ନାହିଁ, ଗଳଦ୍‌ଘର୍ମ ହୋଇ ଉତ୍ସାହଗୁଡ଼ାକୁ ପୂରା ଦମ୍‌ରେ ଚିପୁଡ଼ି ଏଠି ଜାଣିବା ଶୁଣିବା ମଣିଷମାନେ ଆପଣାର ମହାମୂଲ୍ୟ ମୁହୂର୍ତ୍ତଗୁଡ଼ିକର କର୍ତ୍ତବ୍ୟ ଗୁଡ଼ାକୁ ହିଁ କରି ଯାଉଥାନ୍ତି– ହସିବା ଲାଗି ସମସ୍ତଙ୍କୁ ମନା କରାହୋଇଥାଏ । ଖାଲି ବକ୍ତା ବା ଶ୍ରୋତାମାନଙ୍କୁ ନୁହେଁ, ସଭାଘରର କାନ୍ଥଗୁଡ଼ାକୁ ମଧ ହସିବା ଲାଗି ମନା କରା ହୋଇଥାଏ । ତଥାପି ଏହି ସବୁଯାକ ହେରେଷାମିକୁ କେବଳ ହେରେଷାମି ବୋଲି ସାବ୍ୟସ୍ତ କରି ସତେଅବା ଏକ ଅସମର୍ଥତା ହିଁ ସେଠି ଚାରିଆଡ଼ୁ ଆସି ସେଇ ଘରର ପବନଟା ଉପରେ ଅଜାଡ଼ି ହୋଇ ପଡୁଥାଏ । ଗମ୍ଭୀର ହୋଇ ଶୁଣୁଥିବା ବିଦ୍‌ବଦ୍‌ଜନମାନେ କେତେବେଳେ ସେହି ଘର ଭିତରୁ ବାହାରି ମନ ଖୋଲି ହସି ଟିକିଏ ଉଶ୍ୱାସ ହେବେ ବୋଲି ଅପେକ୍ଷା କରି ରହିଥାନ୍ତି ସିନା, ମାତ୍ର ସେଠାରେ କେହି ହସି ପାରନ୍ତି ନାହିଁ ।

ଏହି ହେରେଷାମାନେ ନିଜ ଲାଗି କେବେହେଲେ କିଛି କରନ୍ତି ନାହିଁ; ଯୋଉଠି ହୁଏତ କିଛିହେଲେ ନ କହିବାର କଥା, ସେଠାରେ ସତେଅବା ଗାଆଣ ବସାଇଥିବା ପରି କେବଳ କହିବାରେ ଲାଗିଥିଲେ ମଧ ସେମାନେ ଆପଣା ଲାଗି କିଛିହେଲେ କହନ୍ତି ନାହିଁ । ଆପଣାର କର୍ତ୍ତବ୍ୟ ବିଷୟରେ ସେମାନେ କୋଉଠି ହେଲେ କିଛି କହନ୍ତି ନାହିଁ । ସେମାନେ ଜାତିର କର୍ତ୍ତବ୍ୟ ବିଷୟରେ କହନ୍ତି, ଜନଗଣର କର୍ତ୍ତବ୍ୟ ବିଷୟରେ କହନ୍ତି, ଏପରିକି ଯୁଗର କର୍ତ୍ତବ୍ୟ ବିଷୟରେ ଗଳଗଳ କରି କେତେ କ'ଣ କହି ଯିବାରେ ଲାଗିଥାନ୍ତି । ଏମାନଙ୍କ ସମ୍ମୁଖରେ ବୋଧହୁଏ କେତେବେଳେ ହେଲେ କୌଣସି ଆହ୍ୱାନ ଆସି ଉପସ୍ଥିତ ହୁଏ ନାହିଁ । ତେଣୁ ଏମାନେ ଆମକୁ ଶୁଣାଇ କହିଲାବେଳେ ଜାତି ସମ୍ମୁଖରେ, ଜନଗଣଙ୍କର ସମ୍ମୁଖରେ ଓ ଏପରିକି ଯୁଗର ସମ୍ମୁଖରେ ଆସି ଉପସ୍ଥିତ ହୋଇଥିବା ନାନା ଆହ୍ୱାନ ବିଷୟରେ ଢୁ ଢୁ ବରଷିବାରେ ଲାଗିଥାନ୍ତି । କାହାରି ଦ୍ୱାରା କୋଉଠି ଅନୁଭୂତ ହେବାପାଇଁ ଏହି ଆହ୍ୱାନଗୁଡ଼ାକର ଭିଆଣ ହୋଇ ନଥାଏ । ଏଗୁଡ଼ାକ ଯୋଉଠୁ ଆସିଥାଏ, ସେଇଠି ଉଭେଇ ଯାଏ; ଶୂନ୍ୟରେ ଉଦ୍‌ଘାଟିତ ହୁଏ ଓ ସେହି

ଶୂନ୍ୟରେ ହିଁ ଉଦ୍‌ଯାପିତ ହୁଏ । ସଭାର କାମ ଚଳିଯାଏ, ଉତ୍ସାହର ମୁହୂର୍ତ୍ତଗୁଡ଼ାକ ହିଁ କଟିଯିବା ସକାଶେ ଏସବୁ କାମରେ ଲାଗିବା ପାଇଁ ଆସିଥାନ୍ତି, ତା'ପରେ ପାସୋର ଯାଆନ୍ତି । ହେରେଷାମିର ରେକର୍ଡ଼ ରୁମ୍‌ରେ କାଲିର ଅଧ୍ୟୟନକାରୀ ଛାତ୍ରର ହସିବା ଲାଗି ଯାହା ସାଇତି ହୋଇ ରହିଯାନ୍ତି ।

ଯବନ ବେଳେ ବେଳେ ଭାବେ, ଯେପରି ଗୋଟାଏ ପୁରୁଷ କାଳ ଏହିପରି ଖାଲି ହେରେଷାମିରେ ହିଁ କଟିଗଲା; ହେରେଷାମି କରି କରି କଟିଗଲା, ହେରେଷାମି ଦେଖି ଦେଖି କଟିଗଲା ଓ ହେରେଷାମି ଶୁଣି ଶୁଣି ବି କଟିଗଲା । ଆମେ ଯିଏ ଯେତେ ଗୋଟେଇ ଗୋଟେଇ ହୋଇ ଆମକୁ ଏହି ମାଟିର ବୋଲି କହୁଛୁ, ଏହି ଭୂଇଁର ଅଥବା ଏହି ଯୁଗର ବୋଲି କହୁଛୁ, ଆମେ ସମସ୍ତେ ଏଠି କେଡ଼େ ଚିକ୍‌କଣ ଭାବରେ ଖାଲି ଅନ୍ୟମାନଙ୍କର ସ୍ତବଗାନ କରି ଆସିଲେ ଅଥବା ଅନ୍ୟମାନଙ୍କର ସ୍ତବଗାନକୁ ଶୁଣି ବି ଆସିଲେ । ହେରେଷାମି ବୋଲି ଜାଣି ମଧ୍ୟ ବକ୍ତୃତା ଦେଇ ଆସିଲେ, ଅଥବା ବକ୍ତୃତା ଗୁଡ଼ିକୁ ଶୁଣି ବି ଆସିଲେ । ତାଳି ଦେଇ ଉଲ୍ଲସିତ ହେଲେ ଅଥବା ତାଳି ଶୁଣି ବି ଉଲ୍ଲସିତ ହେଲେ, ଏବଂ ଏତିକି ଉଲ୍ଲାସକୁ ହିଁ ଏହି ଜୀବନ ବୋଲି ଭାବିଲେ । ଖବରକାଗଜ ଗୁଡ଼ାକୁ ଆମେ ଆମରି ଭଣଭଣ ହେବା ଲାଗି ସତେ ଅବା ପୁଳାଏ ଆଇଁଷିଣିଆ କୁଟା ପରି ବ୍ୟବହାର କରି ଆସିଲେ । ଏ ମାଟି, ଏ ଭୂଇଁ ଆଉ ଏ ଯୁଗକୁ ଏକାଠି ଗୋଟାଏ ଭୋଳରେ ହରିବୋଳ ଦେଇ ଆମେ ହେରେଷାମିର ସାହାଡ଼ା ଗଛ ମୂଳେ ବାନ୍ଧି ଦେଇ ଆସିଲେ ଏବଂ ଏ ସବୁର ବଦଳରେ ଆମେ କିଏ କେତେ କ'ଣ ହେଲେ, ନେତା ହେଲେ, ବିଜେତା ହେଲେ ଅଥବା ଚକ୍ରବର୍ତ୍ତୀ ବି ହେଲେ । ଯାହା କେବେ ହୋଇ ପାରିବୁ ବୋଲି ଆମେ କଦାପି ଆଶା କରି ନଥିଲୁ, ଆମେ ତାହା ହୋଇ ପାରିଲେ । ଆମର ମୁଣ୍ଡ ଉପରେ ବିଜୁଳିବତୀ ଜଳିଲା, ଆମ ଗାଆଁର ତୋଟାରେ ଡ଼ାକ୍ତରଖାନା ବସିଲା, ଆମ ନଈର ଦୁଇ କୂଳ ସଡ଼କ ଦେଇ ବନ୍ଧା ହେଲେ–ତଥାପି ଆମରି ପ୍ରସାଦରୁ ସତେ ଯେପରି ସବୁଆଡୁ ସବୁଯାକ ଶିରୀ ତୁଟିଗଲା । ଆମେ ଗୋଟାଏ ଗୋଟାଏ ଗୁଣ୍ଡା ଅଥବା ଗେଧ ଭଳିଆ ଦିଶିଲୁ, ଯୋଉଠି ଯାହା ନ ଦିଶିବା କଥା, ଆମେ ସେଠାରେ ତାହା ହୋଇ ଦିଶିଲୁ । ମାତ୍ର କୂଳ ବୁଡ଼ାଇ ଦେଲୁ, ଗୋଟାଏ ଯୁଗର କୂଳ ବୁଡ଼ାଇ ଦେଲୁ । ହେରେଷାମିରେ ଯୁଗଟାକୁ ବୁଡ଼ାଇ ରଖିଲୁ, ଯୁଗର ବିଶ୍ୱାସକୁ ଚହଲାଇ ପକାଇଲୁ, ଯୁଗ ଯୁଗର ଜୀବନଦାୟୀ କେତେ ପ୍ରତ୍ୟୟକୁ କେବଳ ଜୀବନନାଶୀ ସଂଶୟର ମୂଷାମାଟି କରି ରଖିଦେଲୁ । ତେଣୁ, ଏଠି ଯୋଉଠି କିଛି ନ ଥିଲା, ସେଠି କୋଠା ଘର ହେଲା ଓ କୋଠାଘର ଗୁଡ଼ାକ ଭର୍ତ୍ତି ବି ହୋଇଗଲା; ପାଠଗୁଡ଼ାକ ବଢ଼ି ହଜାରେ ଗୁଣ ହୋଇଗଲା, ପାଠ ପଢ଼ାଇବାର ମଣିଷ ମାଳ ମାଳ ହୋଇ ବୁଲିଲେ, କୋଟି ଓ ଖର୍ବ

ପରିମାଣରେ ଖରଚ ହେଲା । କିନ୍ତୁ ମଣିଷଗୁଡ଼ାକ ଏପରି ଭୁରୁଡ଼ା ହୋଇଗଲେ କାହିଁକି, ଏମିତି ଅତିହୁସିଆର ଆଉ ଏକଶିଙ୍ଗିଆ ହୋଇ କଥା କହି ଶିଖିଲେ କାହିଁକି, ସେମାନଙ୍କର ଅଭିନୟ ଗୁଡ଼ାକରେ ସେମାନେ ଏଡ଼େ ତୋରା ଦିଶୁଥିବା ବେଳେ ସେମାନଙ୍କର ପ୍ରକୃତ ମୁହଁ ଗୁଡ଼ାକ ଏମିତି ଏଣିକି ତେଣିକି ହୋଇ ରହିଗଲା କାହିଁକି ?

ଯେତେବେଳେ ପଇତାଗୁଡ଼ାକ ହାଟ ବଜାରରେ ବଣ୍ଟା ହେବାକୁ ଲାଗେ, ହୁଏତ ଜଣେ କେହି ଉପନୟନ ଲାଗି ରାଜି ହୋଇ ଆସି ନ ଥାନ୍ତି, ଏପରିକି ପଇତା ବାଣ୍ଟି ବୁଲୁଥିବା ଲୋକଗୁଡ଼ାଙ୍କର ମଧ୍ୟ ହୁଏତ ଉପନୟନ ହୋଇ ନ ଥାଏ, ସେତିକିବେଳେ ବାହାରକୁ କେହି ହସୁ ନ ଥିଲେ ମଧ୍ୟ ହେରେଷାମି ଗୁଡ଼ାକ ତଥାପି ଅତି ପ୍ରବଳ ହୋଇ ଉଠନ୍ତି । ପଇତାଗୁଡ଼ାକ କାରଖାନାରେ ଏକା ମୁଥକେ ଦଶ ଲକ୍ଷ କଣ୍ଡା ଲଗାଇ ତିଆରି ହୁଏ, ସମ୍ପୃକ୍ତ ବିଭାଗମାନେ ତରତର ଶାସ୍ତ୍ରମାନଙ୍କରୁ ଘଟଣ ମନ୍ତ୍ରଗୁଡ଼ିକୁ ଟିପିନେଇ ଆସନ୍ତି ଓ ତା'ପରେ ଡିଣ୍ଡିମ ବଜା ହୋଇ ପଇତା ବଣ୍ଟାହୁଏ । ଯିଏ ପଇତା ନ ହେବ ତାକୁ ଆମେ ବିଧି ଅନୁସାରେ ଏହି ଭୂଇଁର ବୋଲି ମୋଟେ ଚିହ୍ନିବୁ ନାହିଁ ଓ ତେଣୁ, ପଇତା ହୋଇଗଲେ ଯାହାସବୁ ବିଶେଷ ସୁବିଧା ମିଳିବ, ସେହି ସୁବିଧାଗୁଡ଼ିକ ତାକୁ କେବେହେଲେ ମିଳିବ ନାହିଁ ବୋଲି ଏତେବଡ଼ ଦୈତ୍ୟ ଭଳି ଦିଶୁଥିବା ପ୍ରଚାର-ଯନ୍ତ୍ରଟା ଧମକ ଦେବାରେ ଲାଗିଥାଏ ଓ ସମସ୍ତଙ୍କୁ ଯଥାଶୀଘ୍ର ବାଟକୁ ଆଣିବା ଲାଗି ଚେଷ୍ଟା କରୁଥାଏ । ଇସ୍କୁଲ ବନ୍ଦ ହୋଇଯାଏ, ମାଷ୍ଟରମାନେ ଡାକରା ପାଇ ଆସନ୍ତି । ବହିଲେଖା ବନ୍ଦ ହୋଇଯାଏ, ଚାର ଯାଇ ସାହିତ୍ୟିକମାନଙ୍କୁ କଚେରୀ ଦାଣ୍ଡକୁ ବରଗି ନେଇ ଆସେ । ସମସ୍ତେ ପଇତା ବାଣ୍ଟିବେ ବୋଲି ଶପଥ ନିଅନ୍ତି, ତେଣିକି ସେଇ କାମରେ ଲାଗି ଯାଆନ୍ତି । ତୁମେ ପାଠ ପଢ଼ାଅ ବା ନ ପଢ଼ାଅ, କିନ୍ତୁ ଆଗ ପଇତା ବାଣ୍ଟ, ତା'ପରେ ଆଉ ଯାହା କିଛି କର । ଯେଉଁମାନେ ପଇତା ନ ପକାଇଛନ୍ତି, ସେମାନେ ତଥାପି ଆମ ସାଙ୍ଗକୁ ଆସି ନାହାନ୍ତି, ଅର୍ଥାତ୍ ଅନ୍ୟ ପଟରେ ଥାଇ ପାରନ୍ତି ବୋଲି ଉଚ୍ଚସ୍ୱରରେ କହିବାକୁ ଶିଖ । ସାନ ପିଲାଟିଏ ସ୍ୱଭାବତଃ ଯେତିକି ଉତ୍ସାହରେ ଓ ନିଷ୍ଠାର ସହିତ ଖଡ଼ି ଧରି ତା'ର ପ୍ରଥମ ଅକ୍ଷରଟିକୁ ବା ପ୍ରଥମ ମୁଣ୍ଡଳା ତିନୋଟିକୁ ମଡ଼ାଇବାରେ ଲାଗିଥାଏ, ତୁମେ ମଧ୍ୟ ହୁକୁମ ଦ୍ୱାରା ବାଧ୍ୟ ହୋଇ ଠିକ୍ ସେତିକି ନିଷ୍ଠା ସହକାରେ ସେଗୁଡ଼ାକ କହିବାକୁ ଶିଖ । ତୁମେ କବି ହୁଅ, ଉପନ୍ୟାସକାର ହୁଅ ଅଥବା ନାଟ୍ୟକାର ହୁଅ, ବା କିଛି ନ ହୋଇଥାଅ ପଛକେ, ତୁମେ ଯଦି ନିଜକୁ ଲେଖକ ବୋଲି କହୁଛ ବା ସେହିପରି କିଛି ବୋଲି ମନେ କରୁଛ, ତେବେ ଶୀଘ୍ର ଏଠାକୁ ଆସ, ପଇତା ଲଗାଇବାର ମହାନ୍ ଆବଶ୍ୟକତା ବିଷୟରେ ଏଠି ପାଠ ତିଆରି ହୋଇ ରହିଛି, ତୁମେ ସେଗୁଡ଼ିକୁ ଆୟତ୍ତ କରିନିଅ, ଅର୍ଥାତ୍ ସେଗୁଡ଼ାକ ଦ୍ୱାରା ନିଜେ ଆୟତ୍ତ ହୋଇଯାଅ । ସେଗୁଡ଼ାକର ପାରାୟଣ କର ଏବଂ ପଇତା ବାଣ୍ଟିବାରେ ଲାଗିଯାଅ ।

ଉପନୟନ ଲାଗି କୌଣସି ହୋସ୍ ବି ନଥାଇ ଯେଉଁଠାରେ ସାହୀଯାକ ସମସ୍ତେ ପଇତା ବାଣ୍ଟିବାରେ ଲାଗି ଯାଆନ୍ତି, ସେଠାରେ ହେରେଷାମି ବସ୍ତୁତଃ ତା'ର ରସାବଗାହିତାର ଚରମ ସ୍ତରକୁ ହିଁ ବ୍ୟାପ୍ତ ହୋଇଯାଏ । ସେତେବେଳେ ଏହି ଅଦ୍ଭୁତ ଦକ୍ଷତାର ସନ୍ଦର୍ଶନରେ ଆଉ ସମସ୍ତେ ସ୍ତମ୍ଭୀଭୂତ ହୋଇ ରହିଥାନ୍ତୁ ପଛକେ, ମାତ୍ର କାଳ ଠୋ' ଠୋ' ହୋଇ ହସୁଥାଏ । ଯେତେବେଳେ ମଣିଷଙ୍କର ବସତି ଭିତରୁ ଯବନକୁ ନିର୍ବାସିତ କରି ରଖା ଯାଇଥାଏ, ସେତେବେଳେ ହୁଏତ ସ୍ୱୟଂ କାଳକୁ ହିଁ ଯବନର ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼େ । ମନୁଷ୍ୟର ମୁହୂର୍ତ୍ତଟି ଆସି ପହଞ୍ଚିବା ଯାଏ ହୁଏତ କୋଉଠି କିଛି ହଲ କି ଚଲ ହୁଏନାହିଁ ସତ, ମାତ୍ର କାଳ୍ ହସିବାରେ ଲାଗିଥାଏ ।

ଆଉ ହେରେଷାମିରୁ ଭେରେସାମିକୁ ଆସିବା ଲାଗି ପୁଣି କେତେ କମ୍ ବେଳ ଲାଗେ । ଭେରେସାମିଟା ନ୍ୟାୟତଃ ସୌନ୍ଦର୍ଯ୍ୟବୋଧର କଥା, ସୌନ୍ଦର୍ଯ୍ୟଶାସ୍ତ୍ରର ଏକ ବ୍ୟାପାର । କୋଉଟା ସୁନ୍ଦର ଆଉ କୋଉଟା ଭେରେସା, ସେକଥା ଜାଣିବା ଲାଗି କୁଆଡ଼େ ଶାସ୍ତ୍ରୋକ୍ତ କେତୋଟି ସୂତ୍ର ରହିଛି । ସେହି ସୂତ୍ରଗୁଡ଼ାକ ଅନୁସାରେ ଆମ ସାହିତ୍ୟ-ଶାସ୍ତ୍ରମାନ କେତେ କେତେ କଣ ଓ କେତେ ମୋଡ଼ ଭାଙ୍ଗି କେତେ ଅଧବସାୟର ସହିତ ରସ ଓ ଅରସର ନିରୂପଣ କରିବାର ଉଦ୍ୟମ କରିଛନ୍ତି । ଶାସ୍ତ୍ର ଓ ଶାସ୍ତ୍ରକାର ଅନୁସାରେ ମତ ବଦଳିଛି, ବ୍ୟାଖ୍ୟା ବଦଳିଛି, ସଂଜ୍ଞାଗୁଡ଼ାକ ମଧ୍ୟ ବଦଳିଯାଇଛନ୍ତି । କିନ୍ତୁ ଆମ ଗ୍ରନ୍ଥାଗାରମାନଙ୍କରେ ଅଗଣିତ ବହି ଭର୍ତ୍ତି ହୋଇ ରହିଥିଲେ ମଧ୍ୟ ଆମର ଏଠି ଚାରିପାଖରେ ଯେଉଁ ହେରେଷାମି ଏବଂ ସେଥିରୁ ପ୍ରସୂତ ହେଉଥିବା ଭେରେସାମିଗୁଡ଼ାକ ଭିଡ଼ି କରି ରହିଛନ୍ତି, ସେଗୁଡ଼ାକର ଗନ୍ଧକୁ ବାରି ପାରିବା ଲାଗି ଆମକୁ କ'ଣ ପ୍ରକୃତରେ କୌଣସି ଶାସ୍ତ୍ର ଘାଣ୍ଟିବାକୁ ପଡ଼ିବ ? ଅତିରିକ୍ତ ମିଠା ହେଲେ କୁଆଡ଼େ ମିଠା ଭେରେସା ହୋଇଯାଏ, ଅତିରିକ୍ତ କଥା ହେଲେ କୁଆଡ଼େ କଥା ଭେରେସା ହୋଇଯାଏ, ଅଳଙ୍କାରଗୁଡ଼ାକ ଅତିବେଶୀ ହୋଇଗଲେ କୁଆଡ଼େ ମଣ୍ଡଣି ଭେରେସା ହୋଇଯାଏ । ଠିକ୍ ସେହିପରି ଭକ୍ତିଗୁଡ଼ାକ ଅତି ହେଲେ ଭକ୍ତି ବି ଭେରେସା ହୋଇ ଯାଉଥିବ, ଆନୁଗତ୍ୟଗୁଡ଼ାକ ହାଉଳାଉ ହେଲେ ଆନୁଗତ୍ୟଟା ମଧ୍ୟ ଭେରେସା ହୋଇ୍ ଯାଉଥିବ । ଠାକୁରାଣୀଙ୍କ ଲାଗି ହେବା ପାଇଁ ଫୁଲ ନିଶ୍ଚୟ ଦରକାର, କାରଣ ଫୁଲ ନ ହେଲେ ଠାକୁରାଣୀଙ୍କ ଦିହ ଲଙ୍ଗଳା ଦିଶିବ । କିନ୍ତୁ ତା' ବୋଲି ଯୋଉ ସେବକ ଯେତେ ମନ ସେତେ ଫୁଲ ଯଦି ଠାକୁରାଣୀଙ୍କ ଦେହକୁ ଗୋଟାସୁଦ୍ଧା ପୋତି ପକାଇବାକୁ ଇଚ୍ଛା କରିବ, ସିଏ କ'ଣ ଠାକୁରାଣୀଙ୍କୁ ଆଉ ଠାକୁରାଣୀ କରି ରଖିବ ? ଆପଣାର ଅତିସରାଗ ଦ୍ୱାରା ଠାକୁରାଣୀଙ୍କୁ ଗୋଟାସୁଦ୍ଧା ଭେରେସା କରି ପକାଇବ । ଗଣେଶ ମୂର୍ତ୍ତିକୁ ସଜାଇବା ସକାଶେ ପିଲାମାନେ କେତେ ସରଞ୍ଜାମ ଆଣି ଠୁଳ କରନ୍ତି । ଫୁଲ ଆଣନ୍ତି, ପତର ଆଣନ୍ତି, ଡାଳ ଆଣନ୍ତି,

ଦରକାର ପଡ଼ିଲେ ଗୋଟା ଗୋଟା କୁଣ୍ଡ ଉଠାଇ ଆଣନ୍ତି; ରଙ୍ଗ କାଗଜ ଆଣନ୍ତି, ଜରିକାଗଜ ବି ଆଣନ୍ତି । ସବୁଯାକ ମଣ୍ଡଣି ହୋଇ ସାରିଲେ ପୁଣି ବିଜୁଳି ଆଲୁଅର ରଙ୍ଗଡ଼ିମର ମାଳଟାକୁ ଆଣି ଅତ୍ର ତତ୍ର ସର୍ବତ୍ର ଜାଲପରି ଗୁଡ଼ାଇ ଦିଅନ୍ତି । ସାଜଗୁଡ଼ାକର ଭିତରେ ଠାକୁରେ କୁଆଡ଼େ ବୁଡ଼ି ଯାଆନ୍ତି, ଏବଂ ଠାକୁରଙ୍କ ବିହୁନେ ଅଠସ୍ତରି ପ୍ରକାରର ସାଜ ଭେରେସା ହୋଇ ପଡ଼ିରହେ, ତୁଚ୍ଛା ଭେରେସା ହୋଇ ଦିଶେ ।

ଆମ ସାଜଗୁଡ଼ାକ ଯଦି ଆମ ଉତ୍ସବକୁ ବଳିଯାଏ, ଆମ ମାଇକ୍‌ଗୁଡ଼ାକ ଯଦି ଆମ ଗୀତକୁ ବଳିଯାଏ ଓ ଆମ ମୁଣ୍ଡ ଗୁଡ଼ାକ ଯଦି ଆମ ଉଦ୍ଦେଶ୍ୟଗୁଡ଼ିକୁ ବଳିଯାଏ, ତେବେ ଆମର ଯାବତୀୟ ଉପଲକ୍ଷ ଓ ଅବସରମାନେ ଖାଲି ଭେରେସା ବୋଲି ସାବ୍ୟସ୍ତ ହୋଇଯାଏ । ସେହି ମନ୍ଦନ୍ୟାୟଟାରେ ମାତି ଆମର ଅନୁରକ୍ତି ଗୁଡ଼ାକ ମଧ୍ୟ ଭେରେସା ହୋଇ ଯାଇପାରେ, ଆମର ଅସାଧୁତାଗୁଡ଼ାକ ମଧ୍ୟ ସାଧୁତା ପରି ଦିଶିପାରେ, ସକଳ ପ୍ରକାରେ ଔପଚାରିକ ଗାମ୍ଭୀର୍ଯ୍ୟ ସତ୍ତ୍ୱେ ଆମର ପ୍ରଶସ୍ତିଗୁଡ଼ାକ ମଧ୍ୟ ଭେରେସା ହୋଇ ପଦାରେ ପଡ଼ି ଯାଇପାରେ । ଆମର ଉଦ୍ୟମ ଗୁଡ଼ାକ ଇସ୍କୁଲ ବାବୁ ଆସିଥିବା ସମୟରେ ଇସ୍କୁଲ ମାଷ୍ଟରଙ୍କର ବହୁ ସନ୍ତାପ ଦ୍ୱାରା ସମାକୁଳ ସକଳ ଉଦ୍ୟମ ପରି କେବଳ ଭେରେସା ବୋଲି ହିଁ ପ୍ରମାଣିତ ହୋଇପାରେ । ସ୍ୱାଭାବିକ ମଣିଷ ଯାହା କରେ, ତାକୁ ସ୍ୱାଭାବିକ ଭାବରେ କରେ । ଘରର ବୋହୂ ଯେତେବେଳେ ଠାଆଟିଏ ବାଢ଼େ, ସେତେବେଳେ କେଡ଼େ ସ୍ୱାଭାବିକ ହୋଇ ତାହା ବାଢ଼େ ଏବଂ ତେଣୁ ଠାଆଟି ମଧ୍ୟ କେଡ଼େ ସ୍ୱାଭାବିକ ଅଥଚ ଘଟଣ ହୋଇ ଦିଶୁଥାଏ । ଯେଉଁ କଥାଟି ହୃଦୟ ଭିତରୁ ବାହାରି ଥାଏ, ତାହା ମଧୁର ବା କଟୁ, କୋମଳ ବା କର୍କଶ ଯାହା ହୋଇଥାଉ ପଛକେ, ତାହା କେଡ଼େ ସ୍ୱାଭାବିକ ଭାବରେ ବାହାରି ଆସେ ଏବଂ କେତେ ସ୍ୱାଭାବିକ ଶୁଭେ; କାନକୁ ଶୁଭେ, ହୃଦୟକୁ ବି ଶୁଭେ । ଯେତେବେଳେ ମାଆ ନଖାଇ ନପିଇ ମଲୁ ପୁଅର ବିଛଣା ପାଖରେ ବସିଥାଏ, ରାତି ଦିନ କିଛି ଜାଣି ପାରେ ନାହିଁ, ସେତେବେଳେ ସେ କେଡ଼େ ସ୍ୱାଭାବିକ ଭାବରେ ଓ କେଡ଼େ ଗୌରବର ସହିତ ତାହା କରୁଥିବ । ଯେତେବେଳେ ଫୁଲଟିଏ ଫୁଟୁଥିବ, ନିଶ୍ଚୟ ଠିକ୍ ଏହିପରି ସ୍ୱାଭାବିକ ଭାବରେ ଫୁଟି ଉଠୁଥିବ । ଗୋଟିଏ ଋତୁ ଯାଇ ଆଉ ଗୋଟିଏ ଋତୁ ଆସିଲା ବେଳେ ସବୁ ଅଦଳବଦଳ ଗୁଡ଼ାକ କେଡ଼େ ସ୍ୱାଭାବିକ ଭାବରେ ହୋଇ ଯାଉଥିବ । ସେଇଥିଲାଗି ସେଗୁଡ଼ାକ ସ୍ୱାଭାବିକ ଲାଗେ, ସ୍ୱାଭାବିକ ଦିଶେ । ମଣିଷ ବି ତ ଗୋଟାଏ ସ୍ୱଭାବ ଧରି ଜନ୍ମ ହୋଇଛି ଓ ଆତଯାତ ହେଉଛି, ତେବେ ମଣିଷମାନେ ଅନେକ ସମୟରେ ଏଡ଼େ ଅସ୍ୱାଭାବିକ ଓ ଅରସିକ ହୋଇପଡୁଛନ୍ତି କିପରି ? ଆମେ ଯେଉଁମାନେ ଜୀବନଟାକୁହିଁ ଅଭିନୟ ବୋଲି ଗ୍ରହଣ କରି ସାରିଲୁଣି, କୋଉଠି ଉଦ୍ଧବ ବା କୋଉଠି ପରୀକ୍ଷିତ ବନି ଯେଉଁମାନଙ୍କର ଅବସ୍ଥା ପରେ ଅବସ୍ଥା

ଏକାନ୍ତ ନିତ୍ୟନୈମିତ୍ତିକ ଭାବରେ ଅତିକ୍ରାନ୍ତ ହୋଇ ଯାଉଛି, ଆମର ମଧ୍ୟ ତଥାପି ଏହି ପ୍ରଶ୍ନଟିକୁ ନିଜ ପାଖରେ ପଚାରି ପାରିବା ଉଚିତ । ପରସ୍ପର ପାଖରେ ପଚାରି ପାରିବାର ସାହସ ନଥିଲେ ମଧ୍ୟ ତଥାପି ଅନ୍ତତଃ ନିଜ ପାଖରେ ପଚାରି ପାରିବା ଉଚିତ ।

ସାହିତ୍ୟ ଲାଗି ଶୈଳୀ ଦରକାର, ତଥାପି ଶୈଳୀ ବସାଉ ବସାଉ ସାହିତ୍ୟଟା ଯେତେବେଳେ ଗୋଟାସୁଦ୍ଧା ଶୈଳୀ ବ୍ୟତୀତ ଆଉ କିଛି ହୋଇ ରହେ ନାହିଁ, ସେତେବେଳେ ଶୈଳୀ ନାମରେ ଯେତେ ବମ୍ଭାଳି ଫୁଟିଲେ ମଧ୍ୟ ସାହିତ୍ୟ ପ୍ରକୃତରେ ଭାରି ଭେରେସିଆ ହୋଇ ପଡ଼େ । ଏଭଳି ସାହିତ୍ୟ ଅର୍କୁଥିବାର ମହାମତିମାନେ ହୁଏତ ପୃଥିବୀଯାକର ସାହିତ୍ୟ ଚଷନ୍ତି, ପୃଥିବୀଯାକର ମାଟି ଭିତରେ ପଶି ଜିଆଙ୍କ ପରି କେତେ ମାଟି ଗାଳନ୍ତି, ତଥାପି ଭାରି ଭେରେସିଆ ହୋଇ ରହନ୍ତି । ରସଗ୍ରହଣ ଓ ରସ-ନିବେଦନର ଗବାକ୍ଷଗୁଡ଼ାକ ସେଠି ଯେପରି ଏକାବେଳେ ବନ୍ଦ ହୋଇ ରହିଥାଏ । ଅସଲ ଦେଖାଚାହାଁ ଗୁଡ଼ାକ ମୋଟେ ହୋଇପାରେ ନାହିଁ, ଅସଲ ପରତେ ଗୁଡ଼ାକ ଅପଚରା ହୋଇ ପଡ଼ି ରହିଥାଏ । ଠିକ୍ ସେହିପରି, ଆଦର୍ଶ ବିଷୟରେ ଉତ୍ସାହିତ ହୋଇ ଆମେ ଟିକିଏ କ'ଣ କହୁ କହୁ, କେତେବେଳେ ଜାଣତରେ ଅଥବା ଆଉ କେତେବେଳେ ଅଜାଣତରେ କଥାଗୁଡ଼ାକ ଏତେ ପରାକ୍ରମଶାଳୀ ହୋଇ ଖୋଦ୍ ଆଦର୍ଶଟାକୁ ଘୋଡ଼ାଇ ପକାଇବାକୁ ବସନ୍ତି ଯେ ତା'ପରେ ଆଦର୍ଶଟା ହିଁ ତଳେ ପୋତି ହୋଇ ରହିଯାଏ ଓ କଥାଗୁଡ଼ାକ ହିଁ ସର୍ବସାର ହୋଇ ଝଟକିବାରେ ଲାଗନ୍ତି । ଆଦର୍ଶ ଗୁଡ଼ାକୁ ନେଇ ସ୍ଥାନୀୟ ସ୍ତରରୁ ଜାତୀୟ ଅଥବା ମହାଜାତୀୟ ସ୍ତର ପର୍ଯ୍ୟନ୍ତ କେତେ କଥା କୁହାଯାଏ, କେତେ ଓଢ଼ଣି ଓ ବେଢ଼ଣି ଦିଆ ହୋଇ ପୁରୁଣା ଫଳାଗୁଡ଼ାକୁ ଦୋହରା ହୁଏ । ଶେଷକୁ ଅସଲ ପଦାର୍ଥଟିର ଦଶୀ ଉଡ଼ିଯାଏ, ଖାଲି କଥାଗୁଡ଼ିକହିଁ କଖାରୁ ବଡ଼ି ହୋଇ ଶୋଭା ପାଉଥାଏ । ସେଇ ଗୋଟାଏ ବଡ଼ିରେ ସତରଟା ଅବସରରେ କର୍ତ୍ତାମାନଙ୍କୁ ସତରଥର ବେଦୀ ଉପରେ ବସାଇ ସତରଟା ବ୍ୟଞ୍ଜନ ପରଷା ହେଉଥାଏ, ସ୍ୱୀକୃତ ସାଧୁଜନ ଓ ସୁଧୀଜନମାନେ ସେଠି ଭେରେସିଆ ଦୁଆରୀ ହୋଇ ବାହାରନ୍ତି, ଦାନ୍ତ ନିକୁଟି କେତେ ଗେଲେଇ ହୁଅନ୍ତି, କେତେ ପ୍ରଶସ୍ତି ଗାଆନ୍ତି । ସମ୍ପୃକ୍ତ ସମସ୍ତେ ପରମ ଆପ୍ୟାୟିତ ହେଲା ପରି ଘରକୁ ଫେରନ୍ତି । ଆଦର୍ଶଗୁଡ଼ାକ କଥା ଭିତରେ ପଚା ହୋଇ ରହେ ।

ଠିକ୍ ସେହିପରି, ଜୀବନଟାକୁ ସଜାଉ ସଜାଉ ଯେତେବେଳେ ଜୀବନଟାଯାକ ଖାଲି ଗୋଟାଏ ନିର୍ଧୂମ୍ ସାଜିବାରେ ଓ ଶେଷକୁ ଅଭିନୟ କରିବାରେ ହିଁ ପରିଣତ ହୋଇଯାଏ, ସେତେବେଳେ ଜୀବନରେ ତେଣିକି ଖାଲି ଭେରେସିଆ ହେବା ବ୍ୟତୀତ ଆଉ ଅନ୍ୟ ଗତି ନଥାଏ । ସେତେବେଳେ ବିଦ୍ୟା ବଦଳିଯାଏ, ବୁଦ୍ଧି ବଦଳିଯାଏ,

ବିବେକଗୁଡ଼ାକ ବଦଳିଯାଏ, ବୟସ ବା ବୟସ୍କତାର ଆଉ କୌଣସି ବାରଣ ରହେ ନାହିଁ । ଶାସ୍ତ୍ର ଅନୁସାରେ ବାସନା ଜନ୍ମିବା ମାତ୍ରକେ ଯେକୌଣସି ବୟସରେ ମଧ୍ୟ ମଣିଷ ଘର ଛାଡ଼ି ସନ୍ନ୍ୟାସୀ ହୋଇ ବାହାରିଯିବା ପରି, ଅଭିନୟକୁ ମନ ହେବା ମାତ୍ରକେ ମଣିଷ ଯେକୌଣସି ବୟସରେ ମଧ୍ୟ ଅତ୍ୟନ୍ତ ମଞ୍ଜୁଳ ଓ ଚମତ୍କାର ଭାବରେ ଅଭିନେତା ହୋଇ ଜୀବନରୁ ବାହାରି ଚାଲି ଆସିପାରେ । ଜୀବନ ଭିତରୁ ବାହାରି ଚାଲିଯିବା ପାଇଁ ମୋଟେ କିଛି ହେଲେ ଛାଡ଼ିବାକୁ ପଡ଼େ ନାହିଁ । ଚାକିରି ରହେ, କୁଟୁମ୍ବ ରହନ୍ତି, କୋଠାବାଡ଼ି ରହେ, ଆଡ଼୍‌ଡ଼ାଗୁଡ଼ାକ ହୁଏତ ଆହୁରି ଦଶଗୁଣ ଅଧିକ ଚଉଡ଼ା ହୋଇଯାଆନ୍ତି । ଅଭିନୟ କରିବାକୁ ମନ କଲେ ଖାଲି ଜୀବନଟିକୁହିଁ ଛାଡ଼ିବାକୁ ପଡ଼େ । ନିଜ ଭିତରେ ସବୁ ବାଟଚଲାକୁ ଏକାବେଳେକେ ବନ୍ଦ କରି ଦେବାକୁ ହୁଏ, କୌଣସି ବାଟ ଚାଲିବାକୁ ରହିଛି ବା ଥିଲା ବୋଲି ଏକାବେଳେକେ ଭୁଲି ଯିବାକୁ ହୁଏ । ଜୀବନରେ କୋଉଠି କାହା ସହିତ ଭେଟିବାର ଥିଲା ବା କେଉଁଠି କାହାରି ଲାଗି ଦୁଆରଟିକୁ ଖୋଲି ଦେବାକୁ ଥିଲା ବୋଲି ମଧ୍ୟ ଭୁଲି ଯିବାକୁ ହୁଏ । ସଂସାରରେ ଯେତେ ଯେଉଁଠି ବ୍ୟାଙ୍କ୍ ଅଛି, ସବୁଠି ଗୋଟାଏ ଗୋଟାଏ ଲକର୍ ଖୋଲିଦେଇ କେବଳ ନିଶ୍ଚିନ୍ତ ହୋଇ ବସି ଯିବାକୁ ହୁଏ । ତା'ପରେ ସଫଳତା ବଳେ ଆସେ, ଅଲବତ୍ ଆସେ । ଅଭିନୟ ଗୁଡ଼ାକ ରକ୍ତ ମାଂସରେ ପରିଣତ ହୋଇଯାନ୍ତି ।

ଅର୍ଥାତ୍, ଯେଉଁମାନେ ଜୀବନରେ ବାଟଟିଏ ଚାଲିବାକୁ ମନ କରନ୍ତି ନାହିଁ, ଖାଲି ଚକଡ଼ାଗୁଡ଼ାକୁ ଭୋଗ କରିବାକୁ ଚାହାନ୍ତି, ସେଇମାନେ ହିଁ ଅଭିନୟ ଶିଖନ୍ତି, ଅଭିନୟକୁ ହିଁ କ୍ରମେ ଜୀବନର ଶ୍ରଦ୍ଧା-ନାମ ବୋଲି ଗ୍ରହଣ କରି ନିଅନ୍ତି । ଜୀବନର ଭିତରକୁ, ସଂସାର ଭିତରକୁ ଓ ଏପରିକି ଆପଣା ଭିତରକୁ ମଧ୍ୟ ଯେପରି କେବେହେଲେ ଅନାଇବାକୁ ନ ପଡ଼ିବ, ସେଥିଲାଗି ସେମାନେ ଅଭିନୟଟାକୁ ହିଁ କୌଶଳ ରୂପେ ବ୍ୟବହାର କରନ୍ତି । ଏହିସବୁ ଅଭିନୟର ନାନାବିଧ ଉପକାରିତା ସମ୍ବନ୍ଧରେ ଶାସ୍ତ୍ର ପଢ଼ନ୍ତି, ଚାଲାଖ ହୁଅନ୍ତି; ସଂସାରର ଶୁଭଗ୍ରହଗୁଡ଼ାକ ସମସ୍ତେ ଏହିମାନଙ୍କ ପାଇଁ ସୁନାଚଟୁ ଧରି ବସି ଯାଆନ୍ତି । ଯିଏ ସକଳ ଆଦର୍ଶକୁ ଆପଣାର ଭୂମିଟି ମଧ୍ୟରୁ ବିତାଡ଼ିତ କରି ରଖିବାକୁ ଚାହୁଥାଏ, ଆଦର୍ଶଗୁଡ଼ାକର ବାହାନାରେ ସେହି ମଣିଷ କଥାକୁ ଆଶ୍ରା କରେ । କଥାରେ ମନ ମୋହେ, କଥାରେ ଫୁଲେ ଓ କଥାରେ ଫୁଲାଏ । କଥାରେ ଯୁଗ ଗଡ଼ାଇନିଏ, କଥାରେ ଶୁଆଇ ପକାଏ ଓ କଥାରେ ଶୀତଳ କରିଦିଏ ।

ଆଦର୍ଶ ବିଷୟରେ ଆମ ପୃଥିବୀରେ ଯେତେ ବେଶୀ କଥା କୁହା ହୋଇଛି ଓ ହେଉଛି, ଖୋଦ୍ ଜୀବନ ବିଷୟରେ ସମ୍ଭବତଃ ସେତେ ବେଶୀ କଥା କୁହା ହୋଇ

ନାହିଁ । ଏସବୁ ସିଆଣିଆ ମଣିଷମାନେ କରୁଛନ୍ତି ଏବଂ ମୁହୂର୍ତ୍ତଟିକୁ ଗଡ଼ାଇ ଗଡ଼ାଇ ନେବାରେ ଲାଗିଛନ୍ତି । ଯେତେବେଳେ ସାହିତ୍ୟକୁ ଗୋଟାସୁଦ୍ଧା ମୁହଁ କରି ଠିଆ ହେବାକୁ ଭିତରେ କେହି ତଥାପି ପ୍ରସ୍ତୁତ ହୋଇ ନଥାଏ, ସେତିକିବେଳେ ହିଁ ଶୈଳୀଗୁଡ଼ାକୁ ଜୀବନ-ଭୂଷଣ ଅଥବା ଜୀବନବଲ୍ଲଭ କରି ରଖିବା ଲାଗି ଭାରି ମନ ହୁଏ । ଶୈଳୀଟାକୁହିଁ ସାହିତ୍ୟ ବୋଲି ମନେ ହୁଏ । ଅନେକ ସମୟରେ ମୁଖାଗୁଡ଼ାକ ଯେପରି ମୁହଁ ପରି ମନେ ହୁଏ, ପ୍ରାୟ ଠିକ୍ ସେହିପରି । ଯେପରି କୋଳାହଳଗୁଡ଼ାକ ଅନେକ ସମୟରେ ଅସଲ ଶବ୍ଦଗୁଡ଼ିକୁ କବାଟ ଦେଇ ବାହାରେ ରଖିଥାନ୍ତି, ସେହିପରି । ପୋଲାଣ୍ଡର ପ୍ରଖ୍ୟାତ ବ୍ୟଙ୍ଗକାର ଷ୍ଟାନିସ୍ଲ ଲେକ୍ ତାଙ୍କର ଗୋଟିଏ ଉକ୍ତିରେ କହିଥିଲେ, ଖଣ୍ଡେ ଖବରକାଗଜ ଦେଇ ମଧ୍ୟ ଆମେ ଇଛା କଲେ ସାରା ପୃଥିବୀ ଆଡ଼କୁ ଅନାଇ ଦେଖିବାର ପ୍ରମାଦଟିରୁ ନିଜକୁ ବେଶ୍ ବଞ୍ଚାଇ ରଖି ପାରିବା । ଖବରକାଗଜ ଦ୍ୱାରା ପୃଥିବୀରେ କେତେ ଥାନରେ ମଣିଷର ଯାବତୀୟ ଲୋକନ ଓ ଅବଲୋକନକୁ ବନ୍ଦ କରି ରଖାଯାଇଛି । ପ୍ରଚାର ଦ୍ୱାରା କେତେ ଥାନରେ ସତ୍ୟକୁ ପାଟକନାରେ ଗୁଡ଼ାଇ ରଖି ଦିଆଯାଇଛି । ପାଟକନାଟି ଯାହା ଦେଖାଯାଉଛି, ସତ୍ୟ ମୋଟେ ଦେଖାଯାଉନାହିଁ ।

ଏହିପରି ଏକ ଦୁର୍ଦ୍ଦଶାରୁ ହିଁ ଯବନ ଜନ୍ମ ନିଏ । ଜୀବନ ଉପରେ ଅଭିନୟର ଦୌରାତ୍ମ୍ୟ ବଢ଼ିଲେ ଆଦର୍ଶକୁ ପୋତିଦେବା ପାଇଁ ଖାଲି କଥା ଆଉ କଥାର ଦୌରାତ୍ମ୍ୟ କ୍ରମେ ପ୍ରବଳ ହୋଇ ଉଠିଲେ, ଶୈଳୀଗୁଡ଼ାକହିଁ ସାହିତ୍ୟ ଉପରେ ଘୋଡ଼ା ଚଢ଼ିବାକୁ ବାହାରିଲେ, ସତେଅବା କାଳର ପ୍ରୟୋଜନ ପଡ଼ିଲା ପରି ଯବନ ଲାଗି ଡାକରା ପଡ଼େ । ଖବରକାଗଜଗୁଡ଼ାକୁ ଫାଡ଼ି ଦେଇ ଯବନ ସଂସାରଟାକୁ ସିଧା ଦେଖାଇଦିଏ, ଅଭିନୟଗୁଡ଼ାକୁ ଫାଡ଼ି ଜୀବନଟାକୁ ମୁହାଁମୁହିଁ କରି ଦେଖାଇଦିଏ । ସିଏ ମୃଷାଟାକୁ ନେଇ ଢୋଲ ଭିତରେ ପୂରାଇଦିଏ ।

ତା୧୦ ।୧୧ ।୧୯୭୫ରିଖ



# ନଅ

ଏକ ତମିଲ୍ ଉପନ୍ୟାସର ହିନ୍ଦି ଅନୁବାଦ ଲାଗି ଲେଖି ଦେଇଥିବା ଆପଣାର ଭୂମିକାଟିର ଶେଷକୁ ବୟୋଜ୍ୟେଷ୍ଠ ଓ ବରିଷ୍ଠତମ ତାମିଲ ଉପନ୍ୟାସକାର ଶ୍ରୀଯୁକ୍ତ କା.ନା. ସୁବ୍ରହ୍ମଣ୍ୟମ୍ ଲେଖିଛନ୍ତି ଯେ ଉଲ୍ଲିଖିତ ଉପନ୍ୟାସଟିରେ ଏପରି କେତେକ ପ୍ରସଙ୍ଗ ବା କଥା ରହିଛି, ଯାହାକୁ କି ସେ ଭାରତୀୟ ଉପନ୍ୟାସର ବିଶେଷତ୍ୱ ବୋଲି ମାନନ୍ତି । ତା'ପରେ ସେ କହିଛନ୍ତି ଯେ, ଭାରତୀୟ ଉପନ୍ୟାସର ବିଶେଷତ୍ୱ ବୋଲି ସିଏ ମନରେ ଯେଉଁସବୁ ବିଷୟର ଧାରଣା କରୁଛନ୍ତି, ସମ୍ୟକ୍ ଆଲୋଚନାର ସେହି ସବୁ ବିଷୟ ତେବେ ଯାଇ ସ୍ପଷ୍ଟ ହେବ, ଯେତେବେଳେ କି ଏହି କାଟର ଆହୁରି ପଚାଶ କି ଶହେ ଉପନ୍ୟାସକୁ ଭାରତୀୟ ଭାଷାମାନଙ୍କରୁ ଅନ୍ୟ ଭାଷାମାନଙ୍କରେ ଅନୁବାଦ କରାଇ ପ୍ରକାଶ କରାଯାଇ ପାରିବ । ଶ୍ରୀଯୁକ୍ତ ସୁବ୍ରହ୍ମଣ୍ୟମ୍‌ଙ୍କର ବକ୍ତବ୍ୟ ହେଉଛି ଯେ 'ରୁଷ ଉପନ୍ୟାସ' କହିବାବେଳେ ସେଗୁଡ଼ିକର ଏକ ବିଶିଷ୍ଟ ସ୍ୱରୂପ ଆମ ମାନସପଟରେ ସ୍ୱତଃ ଉକୁଟି ହୋଇ ଆସିଥାଏ । ସେହିପରି 'ଇଂରାଜୀ ଉପନ୍ୟାସ'ର ମଧ୍ୟ ଆପଣାର ଏକ ନିଜସ୍ୱ ସ୍ୱରୂପ ରହିଛି, 'ଫ୍ରେଞ୍ଚ' ଓ 'ଜର୍ମାନ' ଆଦି ଉପନ୍ୟାସ-ସାହିତ୍ୟର ମଧ୍ୟ ଆପଣାର ନିଜସ୍ୱ ସ୍ୱରୂପମାନ ରହିଛି । ଏହିଭଳି ଭାବରେ ବିଚାର କଲେ ଇଉରୋପୀୟ ଉପନ୍ୟାସ ସାହିତ୍ୟର ମଧ୍ୟ ଯେ ସୁବିଦିତ ଭାବରେ ଏକ ବିଶିଷ୍ଟ ବର୍ଣ୍ଣ ବା ବ୍ୟଞ୍ଜନା ରହିଛି, ଶ୍ରୀ ସୁବ୍ରହ୍ମଣ୍ୟମ୍ ତାହା ସୂଚାଇ ଦେଇଛନ୍ତି ଏବଂ ଇଉରୋପୀୟ ଉପନ୍ୟାସ କିପରି ଜାପାନୀ, ଚୀନ ବା ଭାରତୀୟ ଉପନ୍ୟାସ ସାହିତ୍ୟରୁ ସ୍ୱତନ୍ତ୍ର ଓ ଭିନ୍ନ, ଇଉରୋପୀୟ ଉପନ୍ୟାସଗୁଡ଼ିକର ସେହି ବିଶିଷ୍ଟ ବର୍ଣ୍ଣ ବା ବ୍ୟଞ୍ଜନାଟିକୁ ଆମ ଆଗରେ ସେ କଥାଟି ମଧ୍ୟ ସ୍ପଷ୍ଟ ହୋଇ ଧରା ପଡ଼ି ଯାଉଛି । ଉପସଂହାର କରି ଶ୍ରୀଯୁକ୍ତ ସୁବ୍ରହ୍ମଣ୍ୟମ୍ କହିଛନ୍ତି ଯେ ଆମ ଭାରତୀୟ ବିଭିନ୍ନ ଭାଷାରେ ଲେଖା ହୋଇଥିବା ଅନେକ ଉପନ୍ୟାସର ଅନ୍ୟାନ୍ୟ ଭାଷାମାନଙ୍କରେ ଅନୁବାଦ କରାଯିବା ପରେ ଯାଇ ଭାରତୀୟ ଭାଷାଗୁଡ଼ିକର ସୀମାକୁ ଅତିକ୍ରମ କରି ଏକ ବିଶିଷ୍ଟ ଭାରତୀୟ ଉପନ୍ୟାସ - ସ୍ୱରୂପ ମଧ୍ୟ ଆମ ଆଗରେ ପ୍ରକଟ ହୋଇଯାଇ ପାରିବ । ଅର୍ଥାତ୍ ଭାରତର ଯେକୌଣସି ଭାଷାରେ ଲେଖା ହୋଇଥିଲେ

ମଧ୍ୟ କୌଣସି ଏକ ଉପନ୍ୟାସରେ ଭାରତୀୟ ଉପନ୍ୟାସ-ସ୍ୱରୂପର ବିଶିଷ୍ଟ ନିବେଦନ ଓ ବ୍ୟଞ୍ଜନାଟି ରହିଛି କି ନାହିଁ, ଆମେ ସେତେବେଳେ ସେହି କଥାଟିକୁ ଆବିଷ୍କାର କରିପାରିବା ।

ଇଏ ଏକ ବିଚିତ୍ର ବିଚାର । ସମ୍ଭବତଃ ଏକ ଅସାହିତ୍ୟିକ ବିଚାର । ଅର୍ଥାତ୍ ସାହିତ୍ୟ ଭିତରେ ଆମର ବିଚାରଗୁଡ଼ିକ ଧର୍ମତଃ ଯେପରି ଭାବରେ ଆଦୌ ପ୍ରେରିତ ହେବାର କଥା ନୁହେଁ, ଏହି ବିଚାରଟି ପ୍ରାୟ ସେହିପରି ଭାବରେ ପ୍ରେରିତ ହୋଇଥିବା ପରି ମନେ ହେଉଛି । ଆମ ଭାରତୀୟ ବିଭିନ୍ନ ଭାଷାରୁ ଅନ୍ୟ ଭାଷାଗୁଡ଼ିକୁ ଆମ ଉପନ୍ୟାସଗୁଡ଼ିକର ଅନୁବାଦ ହେଲେ ଯାଇ ସେଗୁଡ଼ିକ ମଧ୍ୟରେ ରହିଥିବା ସାଧାରଣ ଭାରତୀୟତ୍ୱ ଅର୍ଥାତ୍ ଭାରତୀୟ ମହତ୍ତ୍ୱଗୁଡ଼ାକ ଯେ ପ୍ରକଟ ହୋଇ ପାରିବ ଓ ତାହା ନ ହୋଇଥିବା ପର୍ଯ୍ୟନ୍ତ ଆମେ ଭାରତୀୟମାନେ ମଧ୍ୟ ଆମ ଉପନ୍ୟାସଗୁଡ଼ିକର ଭାରତୀୟ ମହତ୍ତ୍ୱ ଓ ସାଧାରଣତ୍ୱଟିକୁ ଯେ ଅନୁଭବ କରି ପାରିବା ନାହିଁ, ଏପରି ଯୁକ୍ତିକୁ ପ୍ରକୃତରେ ଏକ ବିଚିତ୍ର ଯୁକ୍ତି ବୋଲି କୁହା ନ ଯାଇ ଆଉ କ'ଣ କୁହାଯାଇ ପାରିବ ? ଏବଂ ଯଦି ତାହାହିଁ ବାସ୍ତବ ସତ୍ୟ ହୋଇଥାଏ, ତେବେ ଆମ ସାହିତ୍ୟକାର ଅର୍ଥାତ୍ ସାହିତ୍ୟର ଆଲୋଚକମାନଙ୍କୁ ପ୍ରକୃତରେ ବଡ଼ ବିଚିତ୍ର ବୋଲି ହିଁ କହିବାକୁ ପଡ଼ିବ । ଏଥିରେ ସନ୍ଦେହ ନାହିଁ ଯେ ଆଗାମୀ କେତେ ବର୍ଷ ଭିତରେ ଭାରତୀୟ ଉପନ୍ୟାସଗୁଡ଼ିକର ଶତ ସଂଖ୍ୟାରେ ବିଦେଶୀ ବିଭିନ୍ନ ଭାଷାରେ ଅନୁବାଦ ହେବ । କାରଣ ଏବେ ଉଭୟ ପକ୍ଷରୁ ହିଁ ଏହି ଆଗ୍ରହଟି ଅତ୍ୟନ୍ତ ପ୍ରବଳ ଭାବରେ, ଏପରି କି ଅନେକ ସମୟରେ ଅତ୍ୟନ୍ତ ଉତ୍କଟ ଭାବରେ ମଧ୍ୟ ପ୍ରକାଶ ପାଇବାକୁ ଆରମ୍ଭ କଲାଣି । କେବଳ ଉପନ୍ୟାସ ନୁହେଁ, କବିତା, ଗଳ୍ପ ଓ ନାଟକର କ୍ଷେତ୍ରରେ ମଧ୍ୟ ଆମେ ପ୍ରାୟ ସେହି ଆଗ୍ରହଟିର ଏକ ପ୍ରକାରର ଅତିପ୍ରାବଲ୍ୟ ନିଶ୍ଚୟ ପ୍ରତ୍ୟକ୍ଷ କରିପାରିବା ଏବଂ ସେହି କାରଣରୁ ହିଁ, ମାତ୍ର ଦଶବର୍ଷ ପୂର୍ବେ ଆମ ଦେଶର ସାହିତ୍ୟର ଦେଶୀୟ ବିଭିନ୍ନ ଭାଷାରୁ ବିଦେଶୀୟ ନାନା ଭାଷାକୁ ଯେତେ ପରିମାଣରେ ଅନୁବାଦ ହୋଇ ପାରୁଥିଲା, ବର୍ତ୍ତମାନ ହୁଏତ ତା'ର ଦଶଗୁଣ ଅଥବା ତା'ଠାରୁ ଆହୁରି ଅଧିକ ଅନୁବାଦ ହୋଇ ପାରୁଛି । ଏହାଦ୍ୱାରା ଶୁଭ ହେଉଛି ବା ଅଶୁଭ ହେଉଛି, ସେ କଥା ବିଚାର କରିବାକୁ ହୁଏତ ଫୁରସତ ବି ନାହିଁ । କାରଣ ସତେଅବା କାଳର ଆବଶ୍ୟକତାରେ ପଡ଼ି ହିଁ ଏଗୁଡ଼ାକ ହେବାରେ ଲାଗିଛି । କାଳର ଲଗାମଗୁଡ଼ାକୁ ଆପଣାର ହାତରେ ଧରି, ଅର୍ଥାତ୍ ଆପଣାର ବିବେକ ମଧ୍ୟରେ ସେଗୁଡ଼ିକର ସନ୍ତୁଳନ କରାଇ କାଳକୁ ଏକ ନିର୍ଦ୍ଦିଷ୍ଟ ନିର୍ବାଚିତ ଅଥବା ଆକାଂକ୍ଷିତ ଦିଗରେ ଧାବିତ ବା ପ୍ରେରିତ କରାଇ ନେବା ଲାଗି ଯେତେବେଳେ ଆମ ଅନେକଙ୍କର ଆଉ କୌଣସି ବଳ ଅଥବା ବିଶ୍ୱାସ ରହିଥିବା ପରି ମନେହୁଏ ନାହିଁ, ପ୍ରାୟ ସେତିକିବେଳେ ହିଁ ଆମେ କାଳର

ଆବଶ୍ୟକତାକୁ ହିଁ ସତେ ଅବା ସ୍ୱଭାବପ୍ରଣୋଦିତ ଭାବରେ ଗୋଟାସୁଦ୍ଧା ନିଜର ଆବଶ୍ୟକତା ବୋଲି ମନେ କରିବାକୁ ଆରମ୍ଭ କରି ଦେଉ, ହାତରେ କ୍ରୀଡ଼ନକ ହୋଇ ରହିବାକୁ ପରମା ଗତି ଓ ପରମ ଶୁଭ ବୋଲି ମନେ କରୁ । ଆମ ଭଗବାନଗୁଡ଼ାକ ମଧ୍ୟ ସେତେବେଳେ ଆମରି ଚକ୍ରାନ୍ତ ଭିତରେ ପଡ଼ି କାଳର ଅଧୀନ ହୋଇ ରହନ୍ତି, କାଳର ବଜାର ଗୁଡ଼ାକରେ କିଣାବିକା ଓ ପରଖା ହେବାକୁ ଲାଗନ୍ତି ।

ଯେତେବେଳେ ଏ ଦେଶରେ ଇଂରେଜମାନେ ଶାସନ କରୁଥିଲେ, ସେତେବେଳେ ଇଂରାଜୀ ଅଫିସରମାନଙ୍କ ଭିତରୁ ଯେଉଁମାନଙ୍କର ସାହିତ୍ୟ ଆଡ଼କୁ କିଞ୍ଚିତ୍ ଆଗ୍ରହ ରହିଥିଲା, ପ୍ରଧାନତଃ ସେହିମାନଙ୍କ ହାତରେ ହିଁ ଭାରତୀୟ ସାହିତ୍ୟର ଅନ୍ୟ ଭାଷାରେ ଅନୁବାଦ ଆରମ୍ଭ ହୋଇଥିଲା । ତା'ପୂର୍ବରୁ, ଅର୍ଥାତ୍ ମୋଗଲମାନଙ୍କ ଅମଳରେ ଯାହାକିଛି ହୋଇଥିଲା, ତାହା ସଂସ୍କୃତ ଭାଷାରୁ ପାର୍ସି ଭାଷାକୁ ହୋଇଥିଲା ଓ ଦ୍ୱିତୀୟ କ୍ଷେପରେ ସେଗୁଡ଼ିକ ମଧ୍ୟରୁ କେତୋଟିର ଅନୁବାଦ ପାର୍ସିଭାଷାରୁ ଇଉରୋପୀୟ ଭାଷାକୁ, ବିଶେଷ କରି ଜର୍ମାନୀ ଭାଷାକୁ କରାଯାଇଥିଲା । ଇଂରେଜ ଅମଳରେ ପ୍ରଥମେ କେବଳ ପ୍ରାଚୀନ ସାହିତ୍ୟର ହିଁ ଇଂରେଜୀ ଭାଷାକୁ ଅନୁବାଦ ହୋଇଥିଲା । ସଂସ୍କୃତ ଏବଂ ପାଳି ଭାଷାରୁ ହିଁ ଏହିସବୁ ଅନୁବାଦ କରାଯାଇଥିଲା । ଭାରତୀୟ ବିଭିନ୍ନ ଭାଷାକୁ ସେଗୁଡ଼ିକର ଅନୁବାଦ ହେବା ପୂର୍ବରୁ ଇଂରାଜୀ ଭାଷାକୁ ସେଗୁଡ଼ିକର ଅନୁବାଦ ହୋଇଥିଲା । ଆଉ ଟିକିଏ ସ୍ପଷ୍ଟ କରି କହିଲେ, ଭାରତୀୟ ସାହିତ୍ୟର ଯେଉଁ ଗ୍ରନ୍ଥଟିକୁ ଆଜି ସମଗ୍ର ପୃଥିବୀରେ ଭାରତୀୟ ସଂସ୍କୃତିଭୂମି ଓ ଭାରତୀୟ ବିଚାରର ସବୁଠାରୁ ଅଧିକ ପ୍ରତିନିଧି-ସ୍ଥାନୀୟ ବୋଲି ସ୍ୱୀକାର କରାଯାଉଛି, ଯେଉଁସବୁ ଗ୍ରନ୍ଥର ଆକର୍ଷଣ ଏବଂ ପ୍ରଲୋଭନରେ ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ କେତେ କେତେ ପଣ୍ଡିତ ଏବଂ ଗବେଷକ ଭାରତର ପ୍ରାଚୀନ ଗ୍ରନ୍ଥରତ୍ନ ଗୁଡ଼ିକର ଅନୁବାଦ ଦ୍ୱାରା ଭାରତୀୟ ପ୍ରାଣାତ୍ମାର ଆବିଷ୍କାର କରିବା ଲାଗି ଏ ଦେଶକୁ ଆସିଛନ୍ତି, ସେତେବେଳେ ଭାରତୀୟ ଭାଷାରେ ସେ ସବୁର ପ୍ରାୟ କୌଣସି ଅନୁବାଦ ହୋଇ ନଥିଲା । ସେତେବେଳେ ଯେଉଁମାନେ ଭାରତୀୟ ପୁନର୍ଜାଗରଣର ନୂତନ ବନ୍ୟାରେ କର୍ଣ୍ଣଧାର ଓ ନାୟକ ହୋଇ ବାହାରିଥିଲେ, ସେମାନେ ଆପଣା ଭାଷାରେ ଭାରତୀୟ ସାହିତ୍ୟର ଅନୁବାଦ ଗୁଡ଼ିକର ଜରିଆରେ ଭାରତୀୟ ବିଦ୍ୟାର ମୂଳଗ୍ରନ୍ଥ ଗୁଡ଼ିକ ସହିତ ପରିଚିତ ହୋଇ ନଥିଲେ । ଇଂରାଜୀ ଅନୁବାଦ ଗୁଡ଼ିକର ମାଧ୍ୟମରେ ହିଁ ଭାରତୀୟ ସାହିତ୍ୟ ଏବଂ ଭାରତୀୟ ପୁରାତନ ଐତିହ୍ୟର ମଧ୍ୟକୁ ସେମାନଙ୍କର ବର୍ଣ୍ଣବୋଧ ଏବଂ ଉପନୟନ ହୋଇଥିଲା । ଏକଥା ବଡ଼ ବିଚିତ୍ର, ତଥାପି ସତ ।

ସେସବୁ ଯୁଗରେ ବା ସେସବୁ ଦଶକରେ ଭାରତୀୟ ଆଧ୍ୟାତ୍ମିକ ଐତିହ୍ୟ ବା ଭାରତୀୟ ବିଦ୍ୟାକୃତି ସମ୍ବନ୍ଧରେ ଆମ ଦେଶରେ ଯେଉଁମାନେ ଗୌରବାନ୍ୱିତ ଅନୁଭବ

କରିବାକୁ ଉଦ୍‌ବୋଧନ ବି ଦେଉଥିଲେ, ସେମାନେ ପ୍ରାୟ ସମସ୍ତେ ସମକଣ୍ଠରେ ପଣ୍ଡିତ ମାକ୍‌ସ୍ ମ୍ୟୁଲର୍, ପଣ୍ଡିତ ଉଇଲିୟମ୍ ଜୋନ୍‌ସ କିମ୍ବା ପଣ୍ଡିତ ଉଡ୍‌ରଫ୍‌ଙ୍କର ମହାନ୍ ସାଧନା ତଥା ମହାନ୍ ଦୃଷ୍ଟାନ୍ତ ଗୁଡ଼ିକ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଉଥିଲେ । ଜର୍ମାନୀରେ ମହାକବି ଗ୍ୟେଟେ କିପରି ଜର୍ମାନ୍ ଭାଷାନୁବାଦରେ ଅଭିଜ୍ଞାନଶକୁନ୍ତଳମ୍ ନାଟକଟିକୁ ପଢ଼ି ଭାବୋଲ୍ଲସିତ ହୋଇ ଶକୁନ୍ତଳାଙ୍କ ବିଷୟରେ ଜର୍ମାନ୍ ଭାଷାରେ କବିତାଟିଏ ଲେଖିଥିଲେ, ସ୍ୱୟଂ ମୂଳ ଅଥବା କୌଣସି ଅନୂଦିତ ଭାଷାରେ ନାଟକଟିକୁ ପାଠ ନ କରି ଥିଲେ ମଧ୍ୟ ଅନେକ ଉତ୍ସାହୀ ଭାରତୀୟ କେଡ଼େ ଉତ୍ସାହ-ବିଗଳିତ ଭାବରେ ଆମ ସମସ୍ତଙ୍କ ଆଗରେ ସେହି କଥାଟିର ସଂକୀର୍ତ୍ତନ କରି ବୁଲୁଥିଲେ ଏବଂ ଭାରତୀୟ ସାହିତ୍ୟର ଗରିମା ବିଷୟରେ ଆମ ଅଧମଗଣଙ୍କୁ ସୂଚାଇ ଦେବା ଲାଗି ଚେଷ୍ଟା କରୁଥିଲେ । ଦେଶର ସାଂସ୍କୃତିକ ପୁନରାବିଷ୍କାରର ଇତିହାସରେ ସିଏ ଅବଶ୍ୟ ଏକ ପର୍ଯ୍ୟାୟ ଥିଲା, ହୁଏତ ଏକ ସ୍ୱାଭାବିକ ପର୍ଯ୍ୟାୟ ମଧ୍ୟ ଥିଲା । ମାତ୍ର ସେହି ମନୋଦୃଷ୍ଟିଟି ଯେ ବଡ଼ ଅସ୍ୱାଭାବିକ ଭାବରେ ସ୍ୱାଧୀନ ଭାରତର ସଂସ୍କୃତିଦୃଷ୍ଟି ଏବଂ ସଂହତି-ଦୃଷ୍ଟି ମଧ୍ୟକୁ ଯେ ଅତ୍ୟନ୍ତ ପ୍ରବଳ ହୋଇ ସଂକ୍ରାମିତ ହୋଇ ଆସିଲା ଏବଂ ଆମର ଗୌରବ-ବୋଧର ଏକାଧିକ ଉତ୍ସ-ଦ୍ୱାରକୁ ପ୍ରାୟ ଗିଳି କରି ରହିବାକୁ ଯେ ତାହା ଏକ ପରିପୂର୍ଣ୍ଣ ପ୍ରୟାସ କରିବାକୁ ମଧ୍ୟ ଚେଷ୍ଟା କଲା, ଆମେ ତାହାକୁ ତୁଚ୍ଛା ବିଚିତ୍ର ବ୍ୟତୀତ ପ୍ରକୃତରେ ଆଉ କ'ଣ ବୋଲି କହି ପାରିବା ? ଏଗୁଡ଼ାକ ଅତ୍ୟନ୍ତ ବିଚିତ୍ର ଏବଂ ତୁଚ୍ଛା ବିଚିତ୍ର । ଏଇଟି ଦ୍ୱାରା ଆମ ଦେଶର ସଂହତି ରକ୍ଷା ହୋଇଛି ଅଥବା ଆମର ଜୀବନଗତ ଯାବତୀୟ ସଂହତି-ଦୃଷ୍ଟିରେ ତାହା ସତେ ଅବା ଗୋଟାଏ ଘାଆ ପରି ହୋଇ ରହିଛି, ସତେଅବା କୌଣସି ଦୁଷ୍ଟବ୍ରଣ ପରି ଆମର ଯାବତୀୟ ସଂହତି-ପ୍ରୟାସକୁ ଆବୋରି କରି ରହିଛି, ଆମେ ସ୍ଥିର ହୋଇ ପାରିଲେ ଏହି ବିଷୟରେ ହୁଏତ ଅନେକ କିଛି ଆଲୋଚନା କରିପାରିବା ଏବଂ ଆମର ନାନା ବ୍ୟାଧିର ନିଦାନ ଗୁଡ଼ିକ ବିଷୟରେ ହୁଏତ ଅନେକ ଅନ୍ତଃଦୃଷ୍ଟି ଲାଭ କରି ପାରିବା ।

ପ୍ରାଚୀନ ସାହିତ୍ୟ ପରେ ଆଧୁନିକ ସାହିତ୍ୟର ପର୍ଯ୍ୟାୟକୁ ଆସିଲେ ଆମେ ଦେଖିବାକୁ ପାଇବା ଯେ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଏବଂ ସ୍ୱାଧୀନତା ପରେ ଆମ ଦେଶର କେବଳ ସଂସ୍କୃତ ଏବଂ ପାଲିଶାସ୍ତ୍ରଗୁଡ଼ିକର ବିଶେଷ ପରିଧିଟିକୁ ଡେଇଁ ଆମେ ସାହିତ୍ୟର କ୍ଷେତ୍ରରେ ଅନ୍ୟ ପ୍ରୟାସମାନ ମଧ୍ୟ କରିବାରେ ବ୍ରତୀ ହେବାକୁ ଲାଗିଲୁ । କେତୋଟି ଉପନ୍ୟାସ ମଧ୍ୟ ସେତେବେଳେ ଭାରତୀୟ ଭାଷାରେ ନୁହେଁ, ମାତ୍ର ଇଂରାଜୀ ଭାଷାରେ ଲେଖା ହେଲା । କୌଣସି ଭାଷାରେ ଲେଖା ନ ହୋଇ ଆଗ ଇଂରାଜୀ ଭାଷାରେ ହିଁ ଲେଖାଗଲା । କାହିଁକି ଲେଖାଗଲା, ତାହାରି କାରଣ ଗୁଡ଼ିକୁ ନିର୍ଦ୍ଦିଷ୍ଟ କରି ଦେଖିବାକୁ

ଗଲେ ଆମକୁ ହୁଏତ ଆମର ତତ୍କାଳୀନ ସମାଜ, ସାମାଜିକ ଦୂରତ୍ୱ ଓ ଦୂରତ୍ୱ-ଦୃଷ୍ଟିର କେତେ ନା କେତେ ଖତଗଦାକୁ ଘାଣ୍ଟି ଦେଖିବାକୁ ପଡ଼ିବ । ଉପନ୍ୟାସକାର ମୁଲକ-ରାଜ୍ ଆନନ୍ଦ ଯେତେବେଳେ ସେଇ ଇଂରାଜୀ ଭାଷାରେ ଲେଖା ହୋଇ ଆମ ଦେଶକୁ ଆସିଲେ, ସେତେବେଳେ ଶସ୍ତା ପେଙ୍ଗୁଇନ୍ ସଂସ୍କରଣରେ ତାଙ୍କର ଯୋଡ଼ାଏ କି ପୁଞ୍ଜାଏ ଉପନ୍ୟାସ ଆମ ଦେଶର ରେଳବାଇ ବହି ଦୋକାନଗୁଡ଼ିକରେ ମଧ୍ୟ ମଣ୍ଡିତ ହେବାକୁ ଲାଗିଲା, ସେତେବେଳେ ତତ୍କାଳୀନ ସାହିତ୍ୟର ମଣ୍ଡଳିଗୁଡ଼ିକରେ ହୁଏତ କିଏ କେତେ ପ୍ରକାରେ କେତେ କ'ଣ ଭାବି ଯାଇଥିବେ । ଆମର ପରିତ୍ୟକ୍ତ ଚଉରା ଗୁଡ଼ାକ ହୁଏତ ଏବେ ଯାଇ ପାଣି ପାଇଲା ବୋଲି କେହି କେହି ଭାରି ଉଲ୍ଲସିତ ଅନୁଭବ କରିଥିବେ । ଆମର ସାହିତ୍ୟିକ ଭବିଷ୍ୟତ ଏବଂ ସାହିତ୍ୟିକ ସମୃଦ୍ଧି ଲାଗି ଇଏ ଗୋଟାଏ ନୂତନ ସମ୍ଭାବନା ଖୋଲିଗଲା ବୋଲି ଆବିଷ୍କାର କରି ସେତେବେଳେ କେହି କେହି ଅକୂଳ ପାରାବାରରେ ହୁଏତ ଥଳକୂଳ ପାଇଗଲା ପରି ଅନୁଭବ କରିଥିବେ ଏବଂ ସେହି ଦିଗରେ ଆପଣାର ଭାଗ୍ୟଟିକୁ ମଧ୍ୟ ଥରେ ପରୀକ୍ଷା କରି ଦେଖିବା ପାଇଁ ସଂକଳ୍ପ କରି ପକାଇଥିବେ । ସେହି ସଂକଳ୍ପର ସମୁଜ୍ଜ୍ୱଳ ଫଳ ଗୁଡ଼ାକ ଦେଖିବାକୁ ମଧ୍ୟ ଆମକୁ ଆଦୌ ବେଶୀ ସମୟ ଲାଗିଲା ନାହିଁ । କାରଣ ଶ୍ରୀ ମୁଲକ୍ ରାଜ୍ ଆନନ୍ଦଙ୍କର ପରେ ପରେ ସତେଅବା ତାଙ୍କରି ପଦାଙ୍କ ଅନୁସରଣ କରି ଖ୍ୱାଜା ଅହମ୍ମଦ ଆବାସ୍ ଆସିଲେ, ଭବାନୀ ଭଟ୍ଟାଚାର୍ଯ୍ୟ ଆସିଲେ ଓ ସେହି ପ୍ରେରଣାଟିର ଧ୍ୱଜା ଉଡ଼ାଇ ଗୋଟାଏ କି ଦୁଇଟା ଦଶକ ପରେ ଆର.କେ.ନାରାୟଣ ଆସିଲେ, କମଳା ମାର୍କଣ୍ଡେୟ ଆସିଲେ, ଖୁସ୍‌ବନ୍ତ ସିଂହ ଆସିଲେ ଓ ଆହୁରି କେତେ କିଏ ଆସିଲେ । ଗୋଟି ଗୋଟି ହୋଇ କେତେ କିଏ ଆସି ପହଞ୍ଚିଗଲେ । ଏମାନେ ସମସ୍ତେ ଇଂରାଜୀରେ ଲେଖିଥିଲେ, ଏବେ ମଧ୍ୟ ଲେଖୁଛନ୍ତି । ଆପଣାର ମାତୃଭାଷା ସମେତ କୌଣସି ଭାରତୀୟ ଭାଷାରେ ଏମାନେ କେହି କିଛି ଲେଖି ନାହାନ୍ତି, ଲେଖିବାକୁ ହୁଏତ ପ୍ରୟାସ ବି କରି ନାହାନ୍ତି । କାରଣ, ଏହି ବାଟଟାରେ ଗଲେ ଯେ ସିଦ୍ଧିବତୀ ଆଦୌ ମିଳିବ ନାହିଁ, ନିଜର ସାହିତ୍ୟିକ ଉତ୍ସାହ ଓ ସାହିତ୍ୟିକ ଉଦ୍ୟମର ବାଲ୍ୟକାଳରୁ ହିଁ ସେମାନେ ସେହି ସତ୍ୟଟିକୁ ଆବିଷ୍କାର କରି ନେଇଛନ୍ତି । ଦ୍ୱିଜ ହେବା ପୂର୍ବରୁ ହିଁ ଏମାନେ ଅନ୍ୟ ବସାକୁ ଉଡ଼ି ଚାଲି ଯାଇଛନ୍ତି । ଏହା କେବଳ ବିଚିତ୍ର ନୁହେଁ, ଏକ ଦୃଷ୍ଟାନ୍ତ ହିସାବରେ ପ୍ରକୃତରେ ଅନନ୍ୟ । ଖାଲି ଆପଣାର ଦେଶବାସୀମାନଙ୍କୁ ନୁହେଁ, ବିଦେଶୀମାନଙ୍କର ଆଖିକୁ ମଧ୍ୟ ଏକାବେଳେକେ ଝଲସାଇ ଦେଲାଭଳି ଅନନ୍ୟ । ବିଦେଶ କହିଲେ ଆମେ ସାଧାରଣତଃ ଯେଉଁ ଇଂଲଣ୍ଡ, ଆମେରିକା ଅଥବା ଋଷିଆକୁ ବୁଝୁଥାଉ, ସେ ସବୁ ଦେଶରେ ଏଗୁଡ଼ାକ କେବେ ହେଲେ ଘଟେ ନାହିଁ । ଅଜାଣତରେ ବି ଘଟେ ନାହିଁ । ସେସବୁ ଦେଶରେ କେହି ବାଉଳାରେ ମଧ୍ୟ

ନିଜ ଭାଷାକୁ ଛାଡ଼ି ଆଗ ଅନ୍ୟ କୌଣସି ଭାଷାରେ କବିତା, ଗଳ୍ପ ଅଥବା ଉପନ୍ୟାସଟିଏ ଲେଖି ବଜାରକୁ ଛାଡ଼ିବାର କଦାପି କଳ୍ପନା ବି କରିପାରେ ନାହିଁ । ଏମାନେ ତ ବଡ଼ ଦେଶ, ଜଣାଶୁଣା ଦେଶ । ଇଉରୋପରେ ହଲାଣ୍ଡ ଓ ଡ଼େନମାର୍କ ଭଳି ଦେଶ ମଧ୍ୟ ଅଛନ୍ତି, ଯେଉଁଗୁଡ଼ିକର ଆୟତନ ଆମ ଓଡ଼ିଶାର ଗୋଟିଏ ଅଞ୍ଚଳଠାରୁ ମଧ୍ୟ ଛୋଟ । ଫିନ୍‌ଲାଣ୍ଡ ବା ଆଇସଲାଣ୍ଡ ପରି ଆହୁରି କେତୋଟି ଦେଶ ଅଛନ୍ତି, ଯେଉଁଗୁଡ଼ିକର ଲୋକସଂଖ୍ୟା ତିରିଶ ଅବା ଚାଳିଶି ଲକ୍ଷ, ଆମ ଦେଶର ଗୋଟାଏ ଗୋଟାଏ ବଡ଼ ସହରର ଗୋଟାଏ ପେଟକୁ ମଧ୍ୟ ନିଅଣ୍ଟ । ସେଠାରେ ମଧ୍ୟ କୌଣସି ଲେଖକ ବା ସାହିତ୍ୟିକ କେବେହେଲେ ନିଜ ସାନ ଭାଷାଟିକୁ ଛାଡ଼ି ଆଉ କୌଣସି ବଡ଼ ବା ନାମଜାଦା ଭାଷାରେ ଲେଖିବାକୁ ଏବଂ ତଦ୍ୱାରା ସିଧା ବଡ଼ ବଜାରରେ ଯାଇ ପରିଚିତ ହୋଇ ଯିବାକୁ କଦାପି କଳ୍ପନା କରିପାରନ୍ତି ନାହିଁ । ହୁଏତ ମନ ବି ବଳାନ୍ତି ନାହିଁ । ଆମେ ଏ ଦେଶରେ ତଥାପି ଯେ ଠିକ୍ ଏହିସବୁ ଅକରଣି ଏବଂ ଅକଳଣିକୁ ମନ ବଳାଇଛୁ ଓ ଅନେକ ସମୟରେ ବୀରଙ୍କ ଭଳି ଏହାକୁ ହିଁ ସାହିତ୍ୟ-ଗଡ଼ରେ ଏକମାତ୍ର ବୁଦ୍ଧିସମ୍ପନ୍ନ କରଣି ଅଥବା ଚଳଣି ବୋଲି ଭାବି ନେଉଛୁ, ଏହାଦ୍ୱାରା ଆମେ ଭାରତୀୟ ବିଶେଷତାଟିକୁ ତଥା ଭାରତୀୟ ସାହିତ୍ୟଗତ ସଂହତିଟିକୁ ଅଧିକ ସୌଷ୍ଠବ କିମ୍ବା ସୁସ୍ଥତା ଆଣି ଦେବାରେ କେତେଦୂର ସାହାଯ୍ୟ କରିଛୁ, ଆମେ ମନ କଲେ ଓ ଚେଷ୍ଟା କଲେ ସେ ବିଷୟରେ ହୁଏତ କିଞ୍ଚିତ୍ ବିଚାର ବି କରି ପାରନ୍ତେ । ମାତ୍ର ଯେଉଁଠି ଉଚ୍ଚଶିକ୍ଷାର ମାଳଭୂମିମାନଙ୍କରେ ଅଧ୍ୟାପକ ଓ ଛାତ୍ରମାନେ ନିଜ ଭାଷାରେ କଥୋପକଥନ ନ କରି ବରଂ ଉତ୍‌ଫୁଲ୍ଲ ଭାବରେ ସତେ ଅବା କେଉଁ ଦେବତାର ବିଶେଷ ଆଶୀର୍ବାଦ ଲାଭ କରିଥିବା ପରି ଅଥବା କେଉଁ ଠାକୁରଙ୍କର କଳସଟିକୁ ମୁଣ୍ଡ ଉପରେ ମୁଣ୍ଡାଇଥିବା ପରି ଇଂରାଜୀ ଭାଷାରେ କଥାବାର୍ତ୍ତା କରନ୍ତି, ଇଂରାଜୀରେ ହିଁ ଆପଣାର ପ୍ରସନ୍ନତା, କୃତଜ୍ଞତା ଓ ସ୍ୱାଭାବିକତାଗୁଡ଼ିକୁ ପ୍ରକାଶ କରିବା ଲାଗି ଦଶପ୍ରହରଣ ହୋଇ ବସିଥାନ୍ତି, ସେହି କ୍ଷେତ୍ରରେ ସୁସ୍ଥତା କିମ୍ବା ସୁଷ୍ଠୁତାକୁ ହିଁ ମାନଦଣ୍ଡ ବୋଲି ସ୍ୱୀକାର କରି, ନିଜ ଗୋଡ଼ ତଳର ମାଟିକୁ ତଥା ଆପଣାର ଚତୁଃପାର୍ଶ୍ୱର ଜଳବାୟୁକୁ ମାଟି ଏବଂ ଜଳବାୟୁ ବୋଲି ମାନି ସେସବୁ କଥାର ବିଚାର କରିବା ଲାଗି ମଧ୍ୟ ଆମର ଏହି ସୁପ୍ତ ଡ଼ିହଟି ଉପରେ ଆହୁରି ଅନେକ ପ୍ରହର ବାକି ରହିଛି ।

ବଙ୍କିମଚନ୍ଦ୍ର ଓ ଶରତଚନ୍ଦ୍ର ଆଗ ବଙ୍ଗଳାରେ ଲେଖିଛନ୍ତି, କାରଣ ସେମାନେ ଆଗ ବଙ୍ଗଳାରେ ହିଁ ଭାବିଛନ୍ତି, ବଙ୍ଗଳା ଭାଷାଟି ଦେଇ ହିଁ ବଙ୍ଗୀୟ ଜୀବନର ଅଭିବ୍ୟକ୍ତିଗୁଡ଼ିକୁ ସ୍ୱକୀୟ ଅଭିବ୍ୟକ୍ତିରେ ଉକୁଟାଇବାର ଶ୍ରଦ୍ଧାକୁ ହିଁ ଏକମାତ୍ର ସ୍ୱାଭାବିକ ଓ ସୁସ୍ଥ ସାହିତ୍ୟିକ ଶ୍ରଦ୍ଧା ବୋଲି ଗ୍ରହଣ କରି ପାରିଛନ୍ତି । ମୁନ୍‌ସି ପ୍ରେମଚନ୍ଦ ଯଦି

ଇଂରାଜୀ ଭାଷାରେ ଲେଖିବାର ଫିସାଦରେ ପଡ଼ି ଯାଇଥାନ୍ତେ କିମ୍ବା ଯଦି ଝବେରଚାନ୍ଦ ମେଘାଣି ଗୁଜୁରାଟୀ ଭାଷାରେ ନ ଲେଖି ଆଗ ଇଂରାଜୀ ଭାଷା ଆଡ଼କୁ ମନ ବଳାଇ ଥାଆନ୍ତେ, ତେବେ ସେମାନଙ୍କ ହାତରେ ପଡ଼ି ହିନ୍ଦି ଏବଂ ଗୁଜୁରାଟୀ ଭାଷାର ଉପନ୍ୟାସ ସାହିତ୍ୟ ଯେ କୋଉ ଚୂଲୀ ଭିତରେ ଯାଇ ପଶିଥାନ୍ତା, ସେକଥା କିଏ କହି ପାରିବ ? ସ୍ୱାଧୀନତା ପରେ ଏମାନଙ୍କର କୃତିଗୁଡ଼ିକର ଏକାଧିକ ଅନୁବାଦ ହୋଇଛି । ଇଂରାଜୀ ଭାଷାରେ ବି ଅନୁବାଦ ହୋଇଛି । ମାତ୍ର ସେମାନଙ୍କର ମୃତ୍ୟୁ ଅନ୍ତେ ଏସବୁ ହୋଇଛି, ଅନ୍ୟମାନଙ୍କ ଦ୍ୱାରା ହୋଇଛି । ଏମାନେ ସମସ୍ତେ ନିଜ ଜୀବନକାଳରେ ସାହିତ୍ୟର ସାଧନା-ଭାଗଟିକୁ ହିଁ ବାଛିଛନ୍ତି, ସେଇଟିକୁ ହିଁ ଆପଣା ଜୀବନର ସର୍ବଶ୍ରେଷ୍ଠ ବରଦାନ ବୋଲି ଗ୍ରହଣ କରିଛନ୍ତି ଏବଂ ଭବିଷ୍ୟତ ବଂଶଧରମାନଙ୍କ ହାତରେ ହିଁ ଖ୍ୟାତି ଭାଗଟିକୁ ଛାଡ଼ି ଯାଇଛନ୍ତି । ଆମ ପୃଥିବୀର ଅଧିକାଂଶ କ୍ଷେତ୍ରରେ, ସାହିତ୍ୟରେ ବା ବିଜ୍ଞାନରେ, ସଂଗୀତରେ ଅଥବା କଳାରେ, ଯିଏ ଯେଉଁଠି ଯଥାର୍ଥରେ କିଛି ଖୋଜିଛି, କିଛି ପାଇଛି ଓ କିଛି ଗଢ଼ିବା ଲାଗି ସମର୍ଥ ହୋଇଛି, ସିଏ ମୂଳତଃ ଆପଣାର ସାଧନାର ଭାଗଟିକୁ ହିଁ ବାଛିଛି । ସିଏ ସାଧନାକୁ ହିଁ ଆପଣାର ପରମ ଧନ ବୋଲି ଗ୍ରହଣ କରିଛି ଏବଂ ଖ୍ୟାତି-ଭାଗଟିକୁ ଭବିଷ୍ୟତ ଲାଗି ରଖି ଯାଇଛି । ଆମେ ଏ ଯୁଗରେ ସେହି ଖ୍ୟାତି ଭାଗଟିକୁ ହିଁ ସବା ଆଗ ଆବୋରି ବସିବାଟାକୁ ସତେ ଅବା ସର୍ବବନ୍ଦ୍ୟ ଏକ ପୁରୁଷାର୍ଥ ପରି ଗ୍ରହଣ କରି ନେଇଛୁ । ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ନେଇଛୁ, ସାହିତ୍ୟ-କ୍ଷେତ୍ରରେ ମଧ୍ୟ ଠିକ୍ ସେହିପରି ଗ୍ରହଣ କରି ନେଇଛୁ । ସାହିତ୍ୟକାରର ସାଧନା ଏବଂ କୃତିକୁ ପରୀକ୍ଷା କରି ଆଗେ ମହାନୁଭବ ସାହିତ୍ୟରସିକ ରାଜାମାନେ ତାହାର ପୃଷ୍ଠପୋଷକତା କରୁଥିଲେ, ତା'ର ମୁଣ୍ଡରେ ମୁକୁଟ ଏବଂ କର୍ଣ୍ଣରେ କୁଣ୍ଡଳ ପିନ୍ଧାଇ ଦେଉଥିଲେ । ଏବେ ଆମେ ସବା ଆଗ କେୟୂର ଓ କୁଣ୍ଡଳକୁ ମନ କରୁଛୁ, ମୁକୁଟକୁ ବି ମନ କରୁଛୁ । ଯେ- କୌଣସି ପ୍ରକାରେ ମୁକୁଟଟାକୁ ମୁଣ୍ଡ ଲାଗି ମାରି ଆଣି ପାରିଲେ ତା ପରେ ସାହିତ୍ୟିକ ରୂପେ ଗଣା ହେବାରେ ଆଉ ଯେ କୌଣସି ପ୍ରକାରେ ପ୍ରତିବନ୍ଧକ ଆଦୌ ରହିବ ନାହିଁ, ଆମେ ଏହାକୁ ହିଁ ଯୁଗସତ୍ୟ ବୋଲି ଗ୍ରହଣ କରି ନେଇଛୁ । ପ୍ରଭାବଠାରୁ ପ୍ରଚାରଟା ହିଁ ସାହିତ୍ୟରେ ଆମ ଲାଗି କାମ୍ୟତର ଅଭୀଷ୍ଟ ହୋଇ ଦେଖାଗଲାଣି ଏବଂ ଏହି ଅସ୍ୱାଭାବିକ ଉଦ୍ୟମଟାରେ ଆମକୁ ଅନୁବାଦଟା ଭାରି ସାହାଯ୍ୟ କରୁଛି । ଇଂରାଜୀରେ ଲେଖିବାଟା ମଧ୍ୟ ଅନେକ ସାହାଯ୍ୟ କରୁଛି, ତାହା ଆମକୁ ଏକାବେଳେକେ ଅନେକ ବାଡ଼ ଡ଼ିଆଇଁ ନେଇ ଯାଉଥିବା ପରି ମନେ ହେଉଛି । ମୋ ଭାଷାରେ ମୁଁ ଯେଉଁଠି ଥାଏ ଅଥବା କୋଉଠି ବି ନ ଥାଏ ପଛକେ, ମୋର ଉପଲବ୍ଧିର ହାଣ୍ଡିଟି ଆଦୌ ଚୁଲୀ ଉପରକୁ ନ ଯାଇଥାଉ ପଛକେ, ମୋ ଲେଖାଗୁଡ଼ାକୁ ଇଂରାଜୀର ମଣ୍ଡନ ଦେଇ ବୁଲାଇ ଆଣି ପାରିଲେ ମୁଁ ତାହାରି ଦ୍ୱାରା ହିଁ ଗୋଟାସୁଦ୍ଧା ତରିଗଲି ବୋଲି ଭାବୁଛି ।

ଅନୁବାଦର ଏହି ନିଶାଟି ଓଡ଼ିଆ ସାହିତ୍ୟରେ ମଧ୍ୟ ଆମକୁ ମୋଟେ କମ୍ ଘାରି ନାହିଁ । ମୁଁ କ'ଣ ଲେଖୁଛି ବା କାହିଁକି ଲେଖୁଛି, ସେ ବିଷୟରେ ଆଦୌ କୌଣସି ଚିନ୍ତାନାହିଁ ବା କୌଣସି ଅନିସା ନାହିଁ । ମାତ୍ର ମୁଁ ଯେ ଲେଖୁଛି, ସେହି କଥାଟିକୁ ଅନେକ ଓ ଆହୁରି ଲୋକ ଜାଣନ୍ତୁ, ସେଇଟି ହିଁ ମୋର ସବୁଯାକ ଚିନ୍ତା ଓ ସବୁଯାକ ଧନ୍ଦା ହୋଇ ବସିଛି । ସାହିତ୍ୟ ଧର୍ମତଃ ଏକ ଅନ୍ତଃଯାତ୍ରା ଓ ଅନ୍ତର-ପ୍ରସାରକୁ ହିଁ ବୁଝାଇବା କଥା, ଆପଣାର ଚେତନାରେ ସର୍ବଜୀବନ ମଧ୍ୟକୁ ସମ୍ପ୍ରସାରିତ ହୋଇଯିବାର ଏକ ଶ୍ରଦ୍ଧା ଓ ସେହି ଶ୍ରଦ୍ଧାଟି ମଧ୍ୟ ଦେଇ ଆପଣାକୁ ପୂର୍ଣ୍ଣରୁ ପୂର୍ଣ୍ଣତର କରି ନେବା ସକାଶେ ଏକ ବାସନାକୁ ହିଁ ବୁଝାଇବା କଥା । ସାହିତ୍ୟ ମଧ୍ୟ ଆମର ଏହି ଅତିସଂକୀର୍ଣ୍ଣ ଓ ଦ୍ୱୀପବତ୍ ଅହଂଟିର ଏକ ଦ୍ୱାରୋନ୍ମୋଚନକୁ ବୁଝାଇବାର କଥା । ମାତ୍ର ସାହିତ୍ୟିକ ହେବାକୁ ଯାଇ ମୋର ସେସବୁ ଆଡ଼କୁ ଆଦୌ କୌଣସି ନିଘା ନାହିଁ, କୌଣସି ଅପେକ୍ଷା ନାହିଁ । ମୋର ସାହିତ୍ୟଟି ଦ୍ୱାରା ମୁଁ ଆହୁରି ଫୁଟି ଉଠିବି, ଆହୁରି ଆତ୍ମୀୟତା ଅର୍ଜନ କରିବି ଏବଂ ବୃହତ୍ତର ବହିଃଜୀବନ ତଥା ଅନ୍ତର୍ଜୀବନଟି ସହିତ ମୁଁ ଆହୁରି ସଂଯୁକ୍ତ ହୋଇ ପାରିବି ବୋଲି ମୋର ଆଦୌ କୌଣସି ଅପେକ୍ଷା ନାହିଁ, ସେଭଳି କୌଣସି ଅପେକ୍ଷାର ଆବଶ୍ୟକତା ଅଛିଛି ବୋଲି ବି ମୁଁ ହୁଏତ ମୋଟେ ଭାବି ପାରୁନାହିଁ । ମୁଁ ସମ୍ପ୍ରସାରଣ ଚାହୁଁନାହିଁ, ସାମ୍ରାଜ୍ୟ ଚାହୁଁଛି; ପ୍ରୀତିଇଚ୍ଛା କରୁନାହିଁ, ଖ୍ୟାତି କାମନା କରୁଛି । ନାନାପ୍ରକାର ଅନ୍ୟ ପ୍ରୀତି ମୋତେ ହୁଏତ ଏପରି ଭାବରେ ଆସି କାମୁଡ଼ି ଧରିଛନ୍ତି ଯେ ମୋର ସାହିତ୍ୟକୁ ନେଇ ମୁଁ ସତେଅବା ଗୋଟିଏ ଉଦ୍ଧତ ପଥର-ମୁଣ୍ଡାଟିଏ ହୋଇ ରହିଛି । ଆଗେ ଓଡ଼ିଆରୁ ଖୁବ୍ କ୍ୱଚିତ୍ କିଛି ଅନ୍ୟ ଭାଷାକୁ ଅନୁବାଦ ହେଉଥିଲା । ଆମ ସାହିତ୍ୟର ମୁହଁଗୁଡ଼ାକ ମନୁଷ୍ୟର ଇନ୍ଦ୍ରିୟ ଗୁଡ଼ାକ ପରି ବର୍ତ୍ତମାନ ସତେଅବା କେବଳ ବାହାର ଆଡ଼କୁ ହିଁ ମେଲା ହୋଇ ରହିଛି । ଗ୍ରହଣଦ୍ୱାର ଗୁଡ଼ାକ ଏକାବେଳେକେ ନିବୁଜ ହୋଇ ରହିଛି । ଗୋଟାଏ ପ୍ରକାରର ସ୍ପର୍ଶକାତରତା ଅଥବା ଅନ୍ୟ-ସଚେତନତା ମୋତେ ଏତେଦୂର ଅସହାୟ ଭାବରେ ଉଚ୍ଚାଟ କରି ରଖିଛି ଯେ ଯେଉଁ ମୂଳଦୁଆଟି ଉପରେ ମୁଁ ଗୋଡ଼ ରଖି ସାହିତ୍ୟ ଲେଖୁଛି, ସେହି ମୂଳଦୁଆଟି ଆଡ଼କୁ ମୋର ଆଦୌ କୌଣସି ଲୟ ନାହିଁ । ମୋର ଲୟ ହେଉଛି ଯେ ମୁଁ କାହାକୁ କିଛି ହେଲେ ନ କହି ସିଧା ଆଉ କୁଆଡ଼କୁ ଚାଲିଯିବି ଏବଂ ସିଧା ସେଇଠାରୁ ମୋର ସାହିତ୍ୟ-କୃତି ଓ ମୋର ସକଳ ସାହିତ୍ୟ-ସ୍ୱୀକୃତିର ପରମିଟ୍ ନେଇ ଚାଲି ଆସିବି । ମୋର ଲେଖା ଇଂରାଜୀରେ ବାହାରିବ, ସିଆଡ଼େ କୌଣସି ପତ୍ରିକା ଅଥବା କୌଣସି ଗ୍ରନ୍ଥ ଭିତରେ ସ୍ଥାନ ପାଇବ, ମୋତେ ସତେଅବା ହୀରା ପରି ଦିଶିବ, ମୁଁ ସିଆଡ଼ୁ ସଫଳତାର ବାଟୁଲିଖଡ଼ା ମାରି ସିଧା ଆସି

ଏଠାରେ ପହଞ୍ଚିଯିବି ଓ ଏଠାରେ ସ୍ୱୀକୃତି ଲାଭ କରିବି । ଓଡ଼ିଶା ବାହାରେ ଏବଂ ଏପରିକି ଭାରତବର୍ଷର ବାହାରେ ମଧ୍ୟ ମୁଁ ଓଡ଼ିଆ ସାହିତ୍ୟର ଗୌରବ ବଢ଼ାଇଛି ବୋଲି ସେତେବେଳେ ସମସ୍ତେ ଅଲବତ୍ କହିବେ, ନ କହିବାକୁ ବାଟ ହିଁ ନ ଥିବ ।

ତେଣୁ ମୋର ଲେଖାଗୁଡ଼ାକୁ ମୁଁ ତରବର ଓ ଟାଉଟାଉ କରି ଇଂରାଜୀ ଭାଷାରେ ଅନୁବାଦ କରି ପକାଇବି । ଲୋଡ଼ା ଓ ଅଲୋଡ଼ା, ସୁନା ଓ ପିତଳ ସବୁ କିଛିକୁ ଇଂରାଜୀରେ ଅନୁବାଦ କରି ପକାଇବି । ଏକଥା ଏକାନ୍ତ ସତ୍ୟ ଯେ ଓଡ଼ିଶାର ସାହିତ୍ୟକାରଙ୍କ ମଧ୍ୟରେ ଆଗେ ଯେତେଜଣ ଇଂରାଜୀ ଭିତରେ ଅବଗାହନ କରିଥିଲେ ଅର୍ଥାତ୍ ଇଂରାଜୀର ବଜାରକୁ ଯାତାୟାତ କରି ପାରୁଥିଲେ, ବର୍ତ୍ତମାନ ତାହାଠାରୁ ଅଧିକସଂଖ୍ୟକ ବ୍ୟକ୍ତି ସାହିତ୍ୟରେ ସେ କଥା କରି ପାରୁଛନ୍ତି । ଖାସ୍ ଓଡ଼ିଆରେ ଲେଖୁଥିବା ଅନେକ ସାହିତ୍ୟିକ ସେକଥା କରି ପାରୁଛନ୍ତି । ପ୍ରାୟ ପନ୍ଦର ବର୍ଷ ତଳେ ସ୍ୱର୍ଗତଃ ଶ୍ରୀ ମାୟାଧର ମାନସିଂହ ତାଙ୍କର ତିନୋଟି କ୍ରମିକ ପ୍ରବନ୍ଧରେ ଦାବୀ କରି କହିଥିଲେ ଯେ ଯେଉଁମାନେ ଓଡ଼ିଆରେ ଲେଖିବେ, ଓଡ଼ିଆ ଭାଷା ଏବଂ ଓଡ଼ିଆ ସାହିତ୍ୟ ଅଧ୍ୟୟନ କରିବା ଲାଗି ସେମାନଙ୍କର କୌଣସି ପ୍ରୟୋଜନ ନାହିଁ । କାରଣ ଆମର ଏଠି ଯେଉଁମାନେ ଓଡ଼ିଆରେ ଏମ୍.ଏ.ପାସ୍ କରୁଛନ୍ତି, ସେମାନେ ସ୍ଥାନ-ମଣ୍ଡୁକ ହୋଇ ରହି ଯାଉଛନ୍ତି, ବାହାର ପୃଥିବୀ ସହିତ ସେମାନଙ୍କର କୌଣସି ସଂସ୍ରବ ରହୁ ନାହିଁ । ସେମାନେ ଇଂରାଜୀ ସାହିତ୍ୟର କିଛି ହେଲେ ଜାଣୁ ନାହାନ୍ତି । ତେଣୁ, ଓଡ଼ିଆ ସାହିତ୍ୟରେ ଲେଖକ ହେବାକୁ ହେଲେ ବା ଯଥାର୍ଥ ଦକ୍ଷତାର ପରିଚୟ ଦେଇ ପାରିବାକୁ ହେଲେ ଆଗ ଇଂରାଜୀରେ ଏମ୍.ଏ.ପାସ୍ କରିବାକୁ ହେବ । କାରଣ ସେପରି ହେଲେ ଯାଇ ସେମାନଙ୍କର ଦୃଷ୍ଟି ଅଧିକ ଦୂରଯାଏ ଯାଇପାରିବ । ଓଡ଼ିଶାରେ ଜନ୍ମ ହୋଇ ଥିବାରୁ ସେମାନେ ବଳେ ବଳେ ଓଡ଼ିଆରେ ପ୍ରବୀଣତା ହାସଲ କରିବେ ଓ ପାଠ ପଢ଼ି ଇଂରାଜୀରେ ବି ଦଖଲ ପାଇ ଯିବେ । ତେଣୁ ସେମାନଙ୍କ ଭିତରୁ ସାହିତ୍ୟ ବୋଲି ଯାହା ପ୍ରସବିବ, ତାହା ଅବଶ୍ୟ ସାହିତ୍ୟ ଭଳି ସାହିତ୍ୟ ହେବ । ଡକ୍ଟର ମାନସିଂହ ପନ୍ଦର ବର୍ଷ ତଳେ ଯେତିକି କଳ୍ପନା କରିଥିଲେ, ତା'ଠାରୁ ଅନେକ ଅଧିକ ସଂଖ୍ୟାରେ ଏବେ ସାଧୁଜନମାନେ ଇଂରାଜୀରେ ଏମ୍.ଏ.ପାସ୍ କଲେଣି, ଓଡ଼ିଆରେ ଏମ୍.ଏ.ପାସ୍ କରିଥିବା ସାଧୁଜନମାନଙ୍କର ସଂଖ୍ୟା ମଧ୍ୟ କୌଣସି ଗୁଣରେ କମ୍ ହୋଇ ନାହିଁ । ସେହି ସମୟଟିର ତୁଳନାରେ ଏବେ ଅଧିକ ସାହିତ୍ୟ ଲେଖା ହେଲାଣି, ଅଧିକ ଅନୁବାଦ ବି ହେଲାଣି । ଓଡ଼ିଆମାନେ ଦିଲ୍ଲୀରେ ଆଦର ପାଇଲେଣି, କଲିକତାରେ ଛାପା ହେଲେଣି, ବିଲାତରେ ଓ ଆମେରିକାରେ ଯାଇ ବି ସଙ୍କୁଳା ହୋଇ ସାରିଲେଣି । ଖାସ୍‌ମୁକାମ୍ ଓଡ଼ିଶାରୁ ମଧ୍ୟ ପୁଞ୍ଜାଏ ସରିକି ଇଂରାଜୀ ପତ୍ରିକା ପ୍ରକାଶିତ ହେଲେଣି । ଆମେ ସମସ୍ତେ ଅନୁବାଦକୁ ହିଁ ଆମର ଅସଲ ଦ୍ୱାର ବୋଲି ଗ୍ରହଣ କରି ନେଲୁଣି,

ଅନୁବାଦ ଲାଗି କୋଉଠି ଟିକିଏ ରନ୍ଧ୍ର ପାଇ ପାରିବା ସକାଶେ ଏବେ ଆମେ କେତେ ଆଡ଼କୁ ଧାଁ ଧପଡ଼ କଲୁଣି । ଆଉ କିଏ ସ୍ୱତଃ ଆଗ୍ରହ କରି ଆମର ଲେଖାଗୁଡ଼ିକୁ ଅନୁବାଦ କରିବାକୁ ମନ କରିବା ପୂର୍ବରୁ ଆମେ ନିଜେ ତରବର କରି ସେଗୁଡ଼ାକୁ ଅନୁବାଦ କରିବାକୁ ଆଗଭର ବି ହେଲୁଣି, ଦରକାର ପଡ଼ିଲେ ଆଉ କାହା ଦ୍ୱାରା ସେଗୁଡ଼ିକର ଅନୁବାଦ କରି ନେବାକୁ ମଧ୍ୟ ଦଉଡ଼ ଧାପଡ଼ କଲୁଣି । ଯଦି ଆମେ ଦୈବାତ୍ କୌଣସି କ୍ଷମତା-ସ୍ଥାନରେ ରହିଛୁ, ତେବେ ସେହି କ୍ଷମତାର କୋଦଣ୍ଡ-ଶକ୍ତିକୁ ପ୍ରୟୋଗ କରି ଆମେ ଯାହା କିଛି ଧନ ଦରବ ଲେଖିଛୁ ଅଥବା ଲେଖୁଛୁ, ତାହାକୁ ଅଧସ୍ତନମାନଙ୍କଠାରୁ ଚାର ବରଗି ଅନୁବାଦ କରାଇ ଆଣିବାକୁ ବାହାରିଲୁଣି । ଏଗୁଡ଼ାକ ଯେ କେବଳ ଓଡ଼ିଶାରେ ବା ଓଡ଼ିଆ ଭାଷାରେ ହେଉଛି ସେକଥା ଆଦୌ ନୁହେଁ; ଏଗୁଡ଼ାକ ଭାରତବର୍ଷର ପ୍ରତ୍ୟେକ ଭାଷାରେ ନିଶ୍ଚୟ ହେଉଥିବ, ପ୍ରତ୍ୟେକ ସାହିତ୍ୟରେ ବି ହେଉଥିବ । ଏଗୁଡ଼ାକ ଶ୍ରୀଯୁକ୍ତ କା.ନା. ସୁବ୍ରହ୍ମଣ୍ୟମ୍‌ଙ୍କୁ ମଧ୍ୟ ନିଶ୍ଚୟ ଜଣାଥିବ । ଏହିସବୁ କରଣିଗୁଡ଼ିକ ଦ୍ୱାରା ଭାରତୀୟ ସାହିତ୍ୟାନୁଧାବନର ବିଶେଷ ମହତ୍ତ୍ୱଟି ଫୁଟି ଉଠୁଛି ବୋଲି ସିଏ କଣ ପ୍ରକୃତରେ ବିଶ୍ୱାସ କରିବେ ? ଯଦି ଆମେ ସମସ୍ତେ ଭଗବତ୍-କୃପାରୁ ଅଲୌକିକ ଶକ୍ତି ହାସଲ କରି ହଠାତ୍ ଇଂରାଜୀରେ ଲେଖିବାକୁ ଆରମ୍ଭ କରିପାରନ୍ତେ, ତେବେ ଏକ ଐତିହ୍ୟ ହିସାବରେ ଆମର ବିଶେଷ ମହତ୍ତ୍ୱଟିକୁ ଉପଲବ୍ଧି କରିବାରେ ଆମେ କ'ଣ ସର୍ବାଧିକ ପରିମାଣରେ ସମର୍ଥ ହୁଅନ୍ତେ ? ଏକଥା କେବଳ ସୁଧୀଜନବୃନ୍ଦ ହିଁ ବିଚାର କରିବେ ।

ତେଣୁ ମତେ ଆଗ ଆଉଜଣେ ଚିହ୍ନି ସାରିଲେ ଯାଇ ମୁଁ ନିଜକୁ ଚିହ୍ନିବି, ଏଇଟା ହେଉଛି ଏକ ଅରୀତି, ଏକ ଅସ୍ୱାଭାବିକତା, ହୁଏତ ଏକ ଅସୁସ୍ଥତା । ଆମେ ନିଜେ ନିଜକୁ ଚିହ୍ନିଲେ ଯାଇ ନିଜକୁ ଚିହ୍ନିବା । ଆପଣା ଭିତରେ ହିଁ ଯେ କସ୍ତୁରୀ ରହିଛି, ସ୍ୱୟଂ ଏହି ସତ୍ୟଟିକୁ ଆବିଷ୍କାର କରୁଥିଲେ କସ୍ତୁରୀମୃଗ ମଧ୍ୟ ନିଜର କସ୍ତୁରୀ-ମୃଗତ୍ୱର ଆବିଷ୍କାର କରି ପାରୁଥାନ୍ତା । ତିନି ତୁଣ୍ଡରେ ଛେଳି ପ୍ରକୃତରେ କୁକୁର ହୁଏ କି ନାହିଁ, ସେ ବିଷୟର କୌଣସି ଶାସ୍ତ୍ରପ୍ରମାଣ ନାହିଁ ସତ, ମାତ୍ର ଏକଥା ଅବଶ୍ୟ ସତ ଯେ, ତିନି ତୁଣ୍ଡରେ ଛେଳି ଆଉ ଛେଳି ହୋଇ ରହେ ନାହିଁ । ଭାରତବର୍ଷକୁ ଆଗ ବିଦେଶୀମାନେ ଆବିଷ୍କାର କରି ସାରିବା ପରେ, ବିଦେଶୀ ପଣ୍ଡିତ ଏବଂ ବିଦେଶୀ ସୌଦାଗରମାନେ ହିଁ ଭାରତୀୟତାର ବିଶେଷ ମହତ୍ତ୍ୱଟିକୁ ଆଗ ଠାବ କରିବା ମାତ୍ରକେ ଆମେ ସଙ୍ଗେ ସଙ୍ଗେ ଆପଣାକୁ ଯେ ଚିହ୍ନିବାକୁ ସମର୍ଥ ହେଉଛୁ, ସେହି ଅରୀତି ଭିତରେ ପଡ଼ିଛୁ ବୋଲି ହୁଏତ ଆମେ ଏପର୍ଯ୍ୟନ୍ତ ଆପଣାକୁ ଯଥାର୍ଥରେ ଚିହ୍ନିବାର ଏବଂ ଯଥାର୍ଥରେ ଉପଲବ୍ଧି କରିବାର

ବହୁ ଦୂରରେ ପଡ଼ି ରହିଛୁ; ଆପଣାର ଅନେକ ଅନ୍ତରଗ୍ଳାନି ଭିତରେ ପ୍ରାୟ ରୁନ୍ଧି ହୋଇ ରହିଛୁ, ସେହି ଗ୍ଳାନିଟିକୁ ବହନ କରି ଭାରି ପରମୁଖାପେକ୍ଷୀ ହୋଇ ରହିଛୁ ଓ ସଂସାରରେ ଆହୁରି ଅନେକ ପରମୁଖାପେକ୍ଷୀଙ୍କ ପରି ଆମଦ୍ୱାରା ଆଚରିତ ସକଳ ଦୁର୍ଗଜୟ ଓ ସକଳ ପ୍ରଦର୍ଶନପଟୁତା ସତ୍ତ୍ୱେ ଆମେ ତଥାପି ବଡ଼ ଅହଙ୍କାରୀ ହୋଇ ରହିଛୁ ।

ଭାରତବର୍ଷରେ ଯେ ଏକ ବିଶିଷ୍ଟ ମହତ୍ତ୍ୱ ଓ ବିଶିଷ୍ଟ ଅବଦାନ ରହିଛି, ସେହି କଥାଟିର ପରିଚୟ ଲାଭ କରିବାକୁ ହେଲେ ଆମକୁ ଆଗ ତିନୋଟି କଥାରୁ ଆରମ୍ଭ କରିବାକୁ ପଡ଼ିବ । ଭାରତୀୟ ସାହିତ୍ୟର ଯେ ଏକ ବିଶିଷ୍ଟ ମହତ୍ତ୍ୱ ଓ ବିଶିଷ୍ଟ ଅବଦାନ ରହିଛି, ଏହି ବିଶ୍ୱାସଟିକୁ ବଞ୍ଚି ପାରିବା ଲାଗି ଆପଣା ଭିତରେ ଭାରି ବହଳ ଓ ଟାଣ ହୋଇ ବସି ଯାଇଥିବା ପୁରୁଣା ଦୃଷ୍ଟିଟିକୁ ବଦଳାଇବା ଉଦ୍ଦେଶ୍ୟରେ ଆମକୁ ଆଗ ତିନୋଟି କଥା କରିବାକୁ ହେବ । ପ୍ରଥମତଃ, ଆମ ନିଜ ମାଟିକୁ ଭଲ ପାଇବାକୁ ହେବ । ଅର୍ଥାତ୍, ଆମର ନିଜ ମାଟିଟି ଭିତରେ ଯେ ଆମର ଅସଲ ଜୀବନଦାୟୀ ଚେରଗୁଡ଼ିକ ଭେଦ କରି ରହିଛି, ସେହି କଥାଟିକୁ ଅନୁଭବ କରିବାକୁ ହେବ । ଆମରି ମାଟିରେ ଆମର ଚେରଗୁଡ଼ିକ ରହିଛି ବୋଲି ଅନେକ ସମୟରେ ଆମର ହୋସ୍ ବି ନ ଥାଏ । ଆମେ ଆମର ନିଜ ମାଟିଟିକୁ ଆମର ବୋଲି କହିବାକୁ ବେଶ୍ ଲଜ୍ଜା ବି ଅନୁଭବ କରୁଥାଉ । ସେଥିଲାଗି ଆପଣା ଭାଷାରେ ଅବଗାହିବା ପୂର୍ବରୁ ମଧ୍ୟ ଇଂରାଜୀରେ କ'ଣ ଟିକିଏ ଗାରେଇ ପକାଇଲେ ଆମେ ସତେଅବା କୌଣସି ଏକ ଉଦ୍‌ଗମ–ଦୋଷରୁ ପରିତ୍ରାଣ ପାଇଗଲା ପରି ଅନୁଭବ କରୁଥାଉ ଏବଂ ଆମେ ଓଡ଼ିଆରେ ଲେଖିଥିବା କଞ୍ଚା ଜିନିଷଗୁଡ଼ାକ ଯେତେବେଳେ ଇଂରାଜୀ ଭାଷାରେ ଅନୂଦିତ ହୋଇ ପକ୍‌କା ପରି ଦିଶନ୍ତି, ଆମେ ସେତେବେଳେ ସତେଅବା ନବଜୀବନ ଲାଭ କଲାପରି ଅନୁଭବ କରୁ, ସତେଅବା ନବଯୌବନ ବେଶରେ ଶୋଭା ପାଉଥିବା ପରି ଅନୁଭବ କରୁ । ଆମର ଅନେକ ଗଭୀରରେ ଆମକୁ ଚିତା କାଟି ଅଥଚ ଆମ ଉପରେ ପ୍ରତିପତ୍ତି ବିସ୍ତାର କରି ରହିଥିବା ଏକ ଆତ୍ମ-ଗ୍ଳାନି ହେତୁ ହିଁ ଏଗୁଡ଼ାକ ହୁଏ । ଆମେ ଏଇଟାକୁ ଗୋଟାଏ ବାହାଦୁରୀ ବୋଲି ମନେକରୁ ସତ, ମାତ୍ର ଏହା ଆମ ବିପଣିଟିର କ୍ଷୁଦ୍ରତାଟିକୁ ହିଁ ପଦାରେ ପକାଇ ଦେଉଥାଏ । ଆମର ସତେ ଯେପରି କେଉଁଠି ହେଲେ କୌଣସି ଘର ନାହିଁ, ଆମ ଶ୍ରଦ୍ଧାଟିକୁ ପାଇବା ଲାଗି ସତେ ଯେପରି କେଉଁଠି କୌଣସି ବଗିଚା ନାହିଁ ଏବଂ ଏଠି ଆମ ସଂସାରରେ କେଉଁଠି ହେଲେ କୌଣସି ଆଖି ସତେ ଯେପରି ଆମକୁ ଆଦୌ ଲୋଡ଼ି ବାହାରି ନାହାନ୍ତି, ଆମର ଯାବତୀୟ ସାହିତ୍ୟାଚାର ଆମର ସେହି ଖଣ୍ଡିଆ ଦାଗଟାକୁ ହିଁ ଦେଖାଇ ଦେବାରେ ଲାଗିଥାନ୍ତି ।

ଭାରତବର୍ଷର ସାହିତ୍ୟ ମଧ୍ୟରେ ରହିଥିବା ମହତ୍ତ୍ୱ ଏବଂ ବିଶିଷ୍ଟ ଆବେଦନଟିକୁ ଜାଣିବାକୁ ହେଲେ ଆମକୁ ଭାରତବର୍ଷରେ ରହିଥିବା ବିଭିନ୍ନ ସାହିତ୍ୟକୁ ଜାଣିବାକୁ ହେବ । ଏହିସବୁ ସାହିତ୍ୟକୁ ଆମ ସାହିତ୍ୟଟିର ପରିପୂରକ ବୋଲି ଅନୁଭବ କରିବାକୁ ହେବ । ଏଇଟି ହେଉଛି ଦ୍ୱିତୀୟ କଥା । ଭାରତବର୍ଷରେ ସାହିତ୍ୟିକ ବିଚାରଣାର ରୀତି ମଧ୍ୟରେ ଏହି କଥାଟି ଏ ପର୍ଯ୍ୟନ୍ତ କୌଣସି ସ୍ୱୀକୃତି ହିଁ ଲାଭ କରିନାହିଁ । ଆମର ଆଞ୍ଚଳିକ ସାହିତ୍ୟଟିକୁ ହିଁ ଆମେ ସତେଅବା ଭାରତର ଏକମାତ୍ର ସାହିତ୍ୟ ବୋଲି ଧରି ନେଉଛୁ ଏବଂ ଉପର ସିଡ଼ିକୁ ଅନାଇ ଆମେ ଏକାବେଳେକେ ଇଂରାଜୀ ସାହିତ୍ୟ ଅଥବା ବିଶ୍ୱ ସାହିତ୍ୟକୁ ସିନା ଦେଖି ପାରୁଛୁ, ମାତ୍ର ଆମ ସାହିତ୍ୟର ସହଚର–ସାହିତ୍ୟଗୁଡ଼ିକୁ ଆଦୌ ଦେଖି ପାରୁନାହୁଁ । ଇଉରୋପର ବିଭିନ୍ନ ଭାଷାଗୁଡ଼ିକର ସାହିତ୍ୟରେ ଯେତିକି ଆଦାନ ପ୍ରଦାନ ସମ୍ଭବ ହୋଇପାରୁଛି, ସେଠାରେ ଗୋଟିଏ ଭାଷା ଓ ସାହିତ୍ୟ ଯେତିକି ଅନୁରାଗ ଏବଂ ଆବଶ୍ୟକତା-ବୋଧ ସହିତ ସେହି ମହାଦେଶର ଆଉ ଗୋଟିଏ ଭାଷାକୁ ଜାଣୁଛି ବା ଆଉ ଗୋଟିଏ ସାହିତ୍ୟ ସହିତ ପରିଚିତ ହେଉଛି, ଆମର ଏଠାରେ ତାହାର ଶତାଂଶ ମଧ୍ୟ ନାହିଁ ଏବଂ ତଦ୍ୱାରା ଆମେ ଯେ କୌଣସି ପ୍ରକାରେ ବଞ୍ଚିତ ହୋଇ ରହୁଛୁ, କୌଣସି ପ୍ରକାରେ ଉପବାସୀ ହୋଇ ରହିଯାଉଛୁ, ସେକଥା ଆମେ ଅନୁଭବହିଁ କରି ପାରୁନାହୁଁ ଏବଂ ସେହି କାରଣରୁହିଁ ଏଡ଼େବଡ଼ ଏକ ଦେଶରେ ଏଡ଼େବଡ଼ ଏକ ଐତିହ୍ୟକୁ ବହନ କରି ରହିଥିଲେ ମଧ୍ୟ ଏଠି ଆମର ପ୍ରକୃତରେ କିଛି ରହିଛି ବୋଲି ଆମେ ଅନୁଭବହିଁ କରି ପାରୁନାହିଁ । ଆମ ନିଜର ବୋଲି କହିବାକୁ ଆମ ହାତରେ କୌଣସି ଗଉଣି ପ୍ରକୃତରେ ଅଛି ବୋଲି ଅନୁଭବ କରିବା ଲାଗି ଆମର ଏପର୍ଯ୍ୟନ୍ତ ହୁଏତ ହେତୁ ବି ହୋଇନାହିଁ । ତାମିଲ ଭାଷାର ତିରୁକୁରାଳକୁ ଭାରତରେ ଅନ୍ୟ ଭାଷାର ସାହିତ୍ୟିକମାନେ କେତେଜଣ ଜାଣିଛନ୍ତି ? ସିନ୍ଧୁ-ଦେଶର ଶାହ୍ ଅବଦୁଲ ଲତିଫ୍‌ଙ୍କର ଅମର କବିତାକୃତି ସହିତ ଆମ ଭିତରୁ କେତେଜଣ ପରିଚିତ ଅଛନ୍ତି ? ସ୍ୱାଧୀନତା ପୂର୍ବରୁ ଏହିସବୁ ଅଜ୍ଞତାକୁ ବୁଝି ହେଉଥିଲା; ସେହି ଅଜ୍ଞତାର ଏକ ପରିସ୍ଥିତିଗତ କାରଣ ଯେ ରହିଛି, ସେକଥା ମଧ୍ୟ ବୁଝି ହେଉଥିଲା । ମାତ୍ର ଆମର ଭାବଭୂମିରେ, ଆମ ଅନୁରାଗଗୁଡ଼ିକର ବିଚରଣ-କ୍ଷେତ୍ରରେ ଆମ ସାହିତ୍ୟ ଏବେ ମଧ୍ୟ ଯେ ଏଡ଼େ ଅଜ୍ଞ ଓ ଅନ୍ୟବଶ ହେଇ ରହିଛି, ତାହାର କାରଣଗୁଡ଼ାକୁ ଜାଣିବା ସକାଶେ ଆମେ ପୁଣି ଆଉ କୁଆଡ଼େ ଯିବା ?

ତୃତୀୟ କଥାଟି ହେଉଛି ଯେ ପୃଥିବୀର ବିଭିନ୍ନ ଭାଷାର ସାହିତ୍ୟରୁ ଆମ ଭାରତୀୟ ଭାଷାଗୁଡ଼ିକୁ ଆହୁରି ଅଧିକରୁ ଅଧିକ ଅନୁବାଦ ମଧ୍ୟ ସମ୍ଭବ ହେବ । ପୃଥିବୀର ଅନ୍ୟ ପ୍ରତ୍ୟେକ ସାହିତ୍ୟର ଯେ ଏକ ବିଶିଷ୍ଟ ଆବେଦନ ରହିଛି, ସେହି କଥାଟିକୁ ଜାଣିବା ଲାଗି ସେଗୁଡ଼ିକ ସହିତ ଆମର ଅବଶ୍ୟ ପରିଚିତ ହେବା ଉଚିତ ଏବଂ ଅନ୍ୟର

ବିଶିଷ୍ଟତାଗୁଡ଼ିକୁ ଅନୁଭବ କରି ପାରିବା ସଙ୍ଗେ ସଙ୍ଗେ ଆପଣାର ବିଶିଷ୍ଟତା ବିଷୟରେ ମଧ୍ୟ ସଚେତନ ହେବା ଲାଗି ମଣିଷ ଯେ ଅଧିକ ଅବକାଶ ପାଇଥାଏ, ମନୁଷ୍ୟ–ସଂସ୍କୃତିର ତୁଳନାତ୍ମକ ଅଧ୍ୟୟନ କରୁଥିବା ସମାଜବିଜ୍ଞାନୀମାନେ ଆମକୁ ସେହି ସତ୍ୟଟିର ଅନେକ ପ୍ରମାଣ ଯୋଗାଇ ଦେଇ ପାରିବେ । ଆମର ନିଜ ଦରବଟିକୁ ନିଜର ବୋଲି ଜାଣିବା ଲାଗି ଆମେ ଅନେକ ସମୟରେ କବାଟ କିଳି ଘର ଭିତରକୁ ପଶିଯାଉ, ଆମ ନିଜର ଶ୍ଳାଘ୍ୟ ଓ କାମ୍ୟ ବସ୍ତୁଟିକୁ ଭଲପାଇ ପାରିବା ଲାଗି ଆମେ ଅନେକ ସମୟରେ ଅନ୍ୟ ସବୁକିଛିକୁ ଅକାମ୍ୟ ଓ ଅଶ୍ଳାଘ୍ୟ ବୋଲି ଘୃଣା କରିବାକୁ ହିଁ ହୁଏତ ଏକ ଆବଶ୍ୟକତା ବୋଲି ମନେ କରିଥାଉ । ଆମର ନିଜ ଗହଣାଗୁଡ଼ିକୁ ଦେଖି ଖୁସି ହେବାଲାଗି ଆମେ ଅନେକ ସମୟରେ ସେଗୁଡ଼ିକ ସହିତ ହୁଏତ ଗୋଟାଏ ସିନ୍ଦୂକ ଭିତରକୁ ପଶିଯିବାକୁ ମନ କରୁ । ମାତ୍ର ଏହାଦ୍ୱାରା ଧ୍ରୁବ ଓ ଅଧ୍ରୁବ ଦୁଇଟିଯାକକୁ ହିଁ ହରାଇବାକୁ ପଡ଼େ । ଆପଣାର ଦ୍ରବ୍ୟଟି ସହିତ ମୋହ ବଢ଼େ, ଆପଣାର ଅଜ୍ଞତାଟିକୁ ନେଇ ଅହଙ୍କାର ବଢ଼େ, ଭିତରେ ସଙ୍ଗଲୋଭୀ ମଣିଷ-ହୃଦୟଟିକୁ ଉପବାସୀ ବି ରହିବାକୁ ପଡ଼େ । ତେଣୁ ବିଚିତ୍ରତାକୁ ଜାଣିଲେ ଯାଇ ଆପଣାର ଚିତ୍ରଟିକୁ ସମଗ୍ର ଏବଂ ଯଥାର୍ଥ ଭାବରେ ଜାଣିବା ସମ୍ଭବ ହୁଏ । ପୃଥିବୀର ପ୍ରାୟ ପ୍ରତ୍ୟେକ ପ୍ରଧାନ ଭାଷାର ସାହିତ୍ୟର ଇଂରାଜୀ ଭାଷାକୁ ଅନୁବାଦ ହୋଇଛି । କେଉଁ ଭାଷାର କମ୍ ହୋଇଛି, କେଉଁ ଭାଷାର ଅଧିକ ହୋଇଛି । ମାତ୍ର ତଥାପି ହୋଇଛି ଏବଂ ହୁଏତ ବୋଧହୁଏ ସେହି କାରଣରୁ ହିଁ ଇଂରାଜୀ ଭାଷା ଓ ଇଂରାଜୀ ସାହିତ୍ୟ ଆପଣା ପରିଧିଟିର କଳନା କରିବା ସମୟରେ ସମଗ୍ର ବିଶ୍ୱର ପରିଧିଟିକୁ ହିଁ କଳ୍ପନା କରିପାରୁଛି ଏବଂ ତାହା ଅତ୍ୟନ୍ତ ସ୍ୱାଭାବିକ ବୋଲି ମନେ ହେଉଛି । ଇଂରାଜୀ ଭାଷା ଓ ଇଂରାଜୀ ସାହିତ୍ୟର ପ୍ରାଚୀରଗୁଡ଼ିକ ସତତ କ୍ରମବିସ୍ତୃତ ହେବାରେ ଲାଗିଛି । ଅନ୍ୟ ଭାଷାରୁ ଇଂରାଜୀ ଭାଷାକୁ ଶବ୍ଦ ଆସୁଛି, ଅନ୍ୟ ସାହିତ୍ୟରୁ ଇଂରାଜୀ ସାହିତ୍ୟକୁ ସମ୍ପଦ ମଧ୍ୟ ଆସୁଛି । ଏହାଦ୍ୱାରା ଇଂରାଜୀ ଭାଷାର ସମୃଦ୍ଧି ହେଉଛି । ସମଗ୍ର ବିଶ୍ୱକୁ ଆମେ ଆମ ସାହିତ୍ୟ ଭିତରକୁ ଡାକି ଆଣି ପାରିଲେ ଆମ ସାହିତ୍ୟ ବି ସେହିପରି ସମୃଦ୍ଧ ହେବ, ଆମ ଆପଣା ସହିତ ମଧ୍ୟ ଆମର ପରିଚିତିଟି ଅଧିକ ଘନିଷ୍ଠ ହେବ, ବୃହତ୍ତର ସମଗ୍ରତାଟି ଭିତରେ ଆମର ନିଜ ଆସ୍ଥାନଟି ଆମକୁ ଅଧିକ ସ୍ପଷ୍ଟ ହୋଇ ଦିଶିପାରିବ । ଏଡ଼େବଡ଼ ଆକାଶରେ ସତେଅବା କୋଉଠି ବାଉଳା ହୋଇ ହଜିଯିବା ଲାଗି ଆମର ଆଉ କୌଣସି ଭୟ ହିଁ ନ ଥିବ ।

ତା୧୬।୧।୧୯୭୬ରିଖ



# ଦଶ

୧୫୧୫ ଖ୍ରୀଷ୍ଟାବ୍ଦରେ ଫ୍ରାନ୍‌ସର ରାଜା ଦ୍ୱାଦଶ ଲୁଇଙ୍କର ମୃତ୍ୟୁ ହେଲା । ତାଙ୍କର କୌଣସି ସନ୍ତାନସନ୍ତତି ନ ଥିଲେ, ତେଣୁ ତାଙ୍କ କୁଟୁମ୍ବର ଜଣେ ନିକଟତମ ଲେଖାଯୋଖା ଭାଇ ଫ୍ରାନ୍‌ସିସ୍ ପ୍ରଥମ ଫ୍ରାନ୍‌ସିସ୍ ନାମ ଗ୍ରହଣ କରି ଫ୍ରନ୍‌ସର ସିଂହାସନରେ ବସିଲେ । ରାଜା ଫ୍ରାନ୍‌ସିସ୍ ଉତ୍ତର ଇଟାଲୀର ଲମ୍ବାର୍ଡ଼ି ସମତଳ ଭୂମିଟିକୁ ପୁନର୍ବାର ଜୟ କରି ଆଣିଲେ ଓ ତାହାକୁ ଫ୍ରାନ୍‌ସର ଅନ୍ତର୍ଭୁକ୍ତ କଲେ । ମଝିରେ ଥିବା ଉଚ୍ଚ ଆଲପସ୍ ପର୍ବତକୁ ସସୈନ୍ୟ ଅତିକ୍ରମ କରି ସେ ବିଜୟୀ ଭାବରେ ମିଲାନୋ ନଗରୀରେ ପ୍ରବେଶ କଲେ ଏବଂ ପୂର୍ବତନ ଶାସକଙ୍କୁ ରାଜ୍ୟରୁ ବିତାଡ଼ିତ କରିଦେଲେ ।

କଥିତ ଅଛି, ରାଜା ଫ୍ରାନ୍‌ସିସ୍‌ଙ୍କର କଳା ଓ ପାଣ୍ଡିତ୍ୟ ଆଡ଼କୁ ଖୁବ୍ ରୁଚି ଥିଲା, କୁଆଡ଼େ ଅନୁରାଗ ବି ଥିଲା । ଅର୍ଥାତ୍ ତାଙ୍କ ସଭାରେ ସବୁବେଳେ କଳାବିତ୍ ଓ ଗୁଣୀ ପଣ୍ଡିତମାନେ ରହନ୍ତୁ ଓ ତାଙ୍କ ସଭାର ମର୍ଯ୍ୟାଦାଟିକୁ ବୃଦ୍ଧି କରନ୍ତୁ ବୋଲି ସେ ସବୁବେଳେ ଇଚ୍ଛା କରୁଥିଲେ । ଇଟାଲୀ ଜୟ କରି ସେ ଇଟାଲୀର ପ୍ରସିଦ୍ଧ ଶିଳ୍ପୀ ଓ ବିଦ୍ୱାନ ମାନଙ୍କ ମଧ୍ୟରୁ କେତେଜଣଙ୍କୁ ମଧ୍ୟ ଆପଣା ସହିତ ଫ୍ରାନ୍‌ସକୁ ନେଇ ଆସିବା ଲାଗି ଆଗ୍ରହୀ ହେଲେ । ଖ୍ରୀଷ୍ଟିଆନ୍ ଜଗତର ଓ ତତ୍କାଳୀନ ଖ୍ରୀଷ୍ଟିଆନ୍ ରାଜ୍ୟଶାସକମାନଙ୍କର ପରମମାନ୍ୟ ପୋପ୍ ଆପଣାର ସଭା ଭିତରୁ ମିଖାଏଲ୍ ଆଞ୍ଜୋଲୋ ଅଥବା ରାଫାଏଲ୍ କାହାରିକୁ ହେଲେ ଫ୍ରାନ୍‌ସର ରାଜସଭାକୁ ପଠାଇବା ଲାଗି ସମ୍ମତ ହେଲେ ନାହିଁ । ଫ୍ରାନ୍‌ସିସ୍ ତା'ପରେ ପ୍ରସିଦ୍ଧ ଶିଳ୍ପୀ ଲେଓନାର୍ଦ୍ଦୋ ଡ଼ା. ଭିଞ୍ଚିଙ୍କୁ ସେହି କାର୍ଯ୍ୟଟି ଲାଗି ବାଛିଲେ । ତାଙ୍କୁ ମାସିକ ସାତଶହ କ୍ରାଉନ ବେତନ ମିଳିବ ଓ ଫ୍ରାନ୍‌ସର ଗୋଟିଏ ସାନ ଦୁର୍ଗଭବନରେ ସେ ବାସ କରି ପାରିବେ ବୋଲି ଠିକ୍ ହେଲା । ଲେଓନାର୍ଦ୍ଦୋ ଇଟାଲୀ ଛାଡ଼ି ଫ୍ରାନ୍‌ସ-ପ୍ରବାସରେ ରହିଲେ ।

ସେଠାରେ ସେ ଆପଣାର ଶିଳ୍ପସାଧନାରେ ରତ ହୋଇ ରହିଲେ । ଗତ ପ୍ରାୟ ଦଶବର୍ଷ ଧରି ମୋନାଲିସା ଜିଓକୋଣ୍ଡାଙ୍କର ଛବିଟିକୁ ଆଙ୍କି ସାରିବା ପରେ ସିଏ ତାକୁ ସେହିପରି ଅଧାରଙ୍ଗି ଛାଡ଼ି ଦେଇଥାନ୍ତି । ସେତେବେଳକୁ ଛବିଟି ତଦାନୀନ୍ତନ ଶିଳ୍ପୀମହଲରେ

ମୋନାଲିସା ବୋଲି ପ୍ରଖ୍ୟାତି ଲାଭ କରି ସାରିଲାଣି । ଭିଞ୍ଚି ତା'ପରେ ଜନ୍ ଦି ବାପ୍‌ଟିଷ୍ଟଙ୍କର ଛବିଟିକୁ କରିବାରେ ବ୍ୟସ୍ତ ହୋଇ ରହିଥାନ୍ତି । ଦିନ ରାତି ପୂର୍ବାହ୍ନ ବା ଅପରାହ୍ନ କିଛି ଅଣ୍ଟୁ ନଥାଏ । ସେହିପରି ଏକ ଅପରାହ୍ନ ସମୟରେ ସିଏ ଆପଣାର ଶିଳ୍ପଶାଳା ବାହାରେ କାହାର ପାଦଶବ୍ଦ ଶୁଣି ପାରିଲେ । ତାଙ୍କର କେତୋଟି କ୍ଷଣ ବର୍ତ୍ତମାନ ବୃଥା ଅତିପାତ ହୋଇଯିବ ବୋଲି ଭାବି ସେ ତାଙ୍କର ଜଣେ ପରିକରଙ୍କୁ କହିଲେ ଯେ ସିଏ ଶୀଘ୍ର ତଳକୁ ଯିବେ ଓ ଆଗନ୍ତୁକମାନଙ୍କୁ ସେହି ତଳେ ଅଟକାଇ ରଖିବେ । ମୋଟେ ଉପରକୁ ଆସିବାକୁ ଦେବେ ନାହିଁ । ଭିଞ୍ଚିଙ୍କର ଦେହ ଭଲ ନାହିଁ ବୋଲି କହି ସେ ସେମାନଙ୍କୁ ବିଦାୟ ଦେଇ ଆସିବେ ।

ପରିକର ଜଣକ ଧଡ଼୍ କରି ତଳକୁ ଚାଲିଗଲେ । କିନ୍ତୁ ସେଠାରେ ଯାହାକୁ ଭେଟିଲେ, ତାଙ୍କୁ ଫେରାଇ ଦେବେ କ'ଣ, ସବୁପ୍ରକାର ସଂଭ୍ରମ ସହକାରେ ଉପରକୁ ହିଁ ପାଛୋଟି ଆଣିବାକୁ ବାଧ୍ୟ ହେଲେ । ଷ୍ଟୁଡ଼ିଓର କବାଟ ଖୋଲିଦେଇ ବିନୟର ସହିତ ତାଙ୍କୁ ଭିତରକୁ ଯିବା ଲାଗି କହିଲେ । କାରଣ ତଳେ ଫ୍ରାନ୍‌ସର ରାଜା ସ୍ୱୟଂ ଫ୍ରାନ୍‌ସିସ ହିଁ ଉପରକୁ ଆସିବା ପାଇଁ ଅପେକ୍ଷା କରୁଥିଲେ । ଏହିସବୁ କଥା ଏଡ଼େ ଶୀଘ୍ର ଘଟିଗଲା ଯେ ଭିଞ୍ଚି ମୋନାଲିସାଙ୍କର ଛବିଟିକୁ ଢାଙ୍କି କରି ରଖିଦେବା ଲାଗି ଆଉ କୌଣସି ସମୟ ହିଁ ପାଇଲେ ନାହିଁ । କେହି ଆଗନ୍ତୁକ ତାଙ୍କର ଷ୍ଟୁଡ଼ିଓ ଭିତରକୁ ଆସୁଛନ୍ତି ବୋଲି ଗନ୍ଧ ପାଇବା ମାତ୍ରକେ ସେ ସର୍ବଦା ତାଙ୍କର ଅତୀବ ପ୍ରିୟ ସେହି ଛବିଟିକୁ କୌଣସି ଆବରଣ ଦେଇ ଘୋଡ଼ାଇ ରଖୁଥିଲେ । ସେଇଟିକୁ ସେ କାହାରିକୁ ଦେଖାଉ ନଥିଲେ ।

ମାତ୍ର ଚବିଶି ବର୍ଷ ବୟସ୍କ ବଳିଷ୍ଠ ଓ ମାଂସୋଜ୍ଜ୍ୱଳ ଯୁବକ ରାଜା । ପରିଚ୍ଛଦଗୁଡ଼ାକ ତଳୁ ଉପରଯାଏ ଜରିରେ ଜକ ଜକ ହୋଇ ଉଠୁଛି । ତୀଖ ନାସିକା, ଉଚ୍ଚ କପାଳ, ହାଣିଦେଲା ପରି ଆଖି, ହସ୍ତୀଦନ୍ତ ପରି କଠିନ ଏବଂ ମସୃଣ ଗ୍ରୀବାଦେଶ– ଦେଖିବା ମାତ୍ରକେ ଦେଖଣାହାରିର ମଥା ନଇଁ ଆସିବ, ଜଣେ ରାଜା ହିଁ ଆସିଲେ ବୋଲି ବଳେ ବଳେ ଜଣା ପଡ଼ିଯିବ । ତାଙ୍କର ଅଧରଠାରୁ ପୟର ପର୍ଯ୍ୟନ୍ତ ଯାବତୀୟ ବର୍ଣ୍ଣାଢ଼୍ୟତା ଏବଂ ସାଜସଜ୍ଜା ତାଙ୍କ ଭିତରେ ରହିଥିବା କାମୁକତାଟିକୁ ବଡ଼ ସ୍ପଷ୍ଟ ଭାବରେ ଧରା ପକାଇଦେଇ ଯାଉଛି ।

ରାଜା ଫ୍ରାନ୍‌ସିସ୍ ଧସଧସ ହୋଇ ଭିତରକୁ ପଶି ଆସିଲେ । ଶିଳ୍ପୀଙ୍କର କୁଶଳ ପୁଚ୍ଛା କଲେ । ଏହାମଧ୍ୟରେ ସେ କ'ଣ ସବୁ ନୂଆ ଛବି ଆଙ୍କିଛନ୍ତି ବୋଲି ତାଙ୍କଠାରୁ ଜାଣିବାକୁ ଆଗ୍ରହ କଲେ । ତା'ପରେ ପରଦା ସେପାଖରୁ ଛଳଛଳ ହୋଇ ଦିଶି ଯାଉଥିବା ମୋନାଲିସାଙ୍କର ଛବିଟି ଉଦ୍ଦେଶ୍ୟରେ ଆଙ୍ଗୁଳି ଦେଖାଇ ସେଇଟି କି ଛବି ବା କାହାର ଛବି ବୋଲି ପ୍ରଶ୍ନ କଲେ ।

"ଆଜ୍ଞା, ସେଇଟି ମୋ'ର ଗୋଟିଏ ପୁରୁଣା ଛବି । ଛାମୁ ସେଇଟାକୁ ଆଗରୁ ମଧ ଦେଖିଛନ୍ତି ।"

ରାଜା ଛବିଟିକୁ ଆଉଥରେ ଦେଖିବାଲାଗି ମନ କଲେ । ଭିଞ୍ଚି ଟିକିଏ କୁଣ୍ଠା ପ୍ରକାଶ କରୁଥିଲେ, ମାତ୍ର ରାଜାଙ୍କର ଜଣେ ଗହଣଲୋକ ଇତିମଧ୍ୟରେ ଆଗକୁ ବାହାରିଯାଇ ଆପଣା ହାତରେ ପରଦାଟିକୁ ଅପସରାଇ ଦେଲା ଓ ମୋନାଲିସାଙ୍କର ଛବିଟି ଆପଣାର ସମସ୍ତ ଲାବଣ୍ୟ ସହିତ ସମସ୍ତଙ୍କର ଦୃଷ୍ଟିସମକ୍ଷକୁ ଆସିଗଲା ।

ଗୋଟିଏ ଆଖିରେ ରାଜା ଛବିଟିକୁ ଅନାଇ ରହିଥାନ୍ତି । "ଅଦ୍ଭୁତ, ବଡ଼ ଅଦ୍ଭୁତ, ଏପରି ଜଣେ ସୁନ୍ଦରୀ ସ୍ତ୍ରୀ ମୁଁ ଆଗରୁ କେବେହେଲେ ଦେଖି ନଥିଲି । ବଡ଼ ଅଦ୍ଭୁତ ! ସ୍ତ୍ରୀଟି କିଏ ?"

"ମାଡ଼ୋନାଲିସା, ଫ୍ଲରେନ୍‌ସର ଜଣେ ନାଗରିକଙ୍କର ପତ୍ନୀ ।"

"ଏହି ଛବିଟିକୁ ତୁମେ ଏବେ ଆଙ୍କିଛ ?"

"ନାହିଁ ଆଜ୍ଞା, ଦଶ ବର୍ଷ ପୂର୍ବରୁ ।"

"ସିଏ କ'ଣ ଏବେ ମଧ ଠିକ୍ ଏହିପରି ସୁନ୍ଦର ଦେଖାଯାଉଛି ?"

"ଆଜ୍ଞା, ତାଙ୍କର ମୃତ୍ୟୁ ହୋଇଯାଇଛି ।"

ରାଜାଙ୍କର ପାରିଷଦ ତାଙ୍କୁ ଭଲ କରି ବୁଝାଇ ଦେଇ କହିଲେ ଯେ ଶିଳ୍ପୀ ଲେଓନାର୍ଦ୍ଦୋ ଏହି ଛବିଟିକୁ ଗତ ବେଶ୍ କେତେ ବର୍ଷ ହେଲା କରୁଛନ୍ତି ଓ ଛବିଟି ଏପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ରାଜା ସେକଥା କଳ୍ପନା ବି କରିପାରୁ ନଥାନ୍ତି । ଏଡ଼େ ସୁନ୍ଦର ଓ ସୌଷମ୍ୟଯୁକ୍ତ ବପୁ, ଉନ୍ନତ ବକ୍ଷ, ଅଧର ଉପରେ ସତେଅବା ଜଣେ ବ୍ରତଚାରିଣୀର ହସ, ଏଡ଼େ କାନ୍ତ, ଏଡ଼େ କୋମଳ, ଏଡ଼େ ଉଦ୍‌ବୋଧକ, ଏଥିରେ ପୁଣି ବାକି ଆଉ କ'ଣ ରହିଛି ? ଶିଳ୍ପୀମାନଙ୍କର ବିଚିତ୍ର ଖିଆଲ ଗୁଡ଼ାକର କଳ୍ପନା କରି ସିଏ ଭାରି ବିସ୍ମିତ ହେଉଥାନ୍ତି । ତାଙ୍କ ଆଗରେ ଏହି ଦୁଇଟିଯାକ ଛବି–ଏ ପାଖରେ ମୋନାଲିସାଙ୍କର ଓ ସେ ପାଖରେ ଜନ୍ ଦି ବାପ୍‌ଟିଷ୍ଟଙ୍କର । ତାଙ୍କର ବିସ୍ମୟ ସତେ ଅବା ହଠାତ୍ ଥଳ ପାଇଲା ଏବଂ ସେ କହି ଉଠିଲେ, "ମୁଁ ଏହି ଦୁଇଟିଯାକ ଛବିକି କିଣି ନେବି । ଏ ଦୁଇଟି ପାଇଁ ତୁମକୁ କେତେ ଦେବାକୁ ପଡ଼ିବ ?"

ଲେଓନାର୍ଦ୍ଦୋ ଆପତ୍ତି କରି କହିଲେ, "ସେଗୁଡ଼ିକୁ ମୁଁ ଏପର୍ଯ୍ୟନ୍ତ ଶେଷ କରିନାହିଁ । ସେଗୁଡ଼ିକ ଅସମାପ୍ତ ହୋଇ ରହିଛନ୍ତି ।"

"ଏଇ କଥା ! ତେବେ ଆମେ ଆଉ କିଛି ସମୟ ଏଠାରେ ଠିଆହେଉଛୁ,

ତୁମେ ଚଟ୍‌ଚାଟ୍ ତୁଳି ମାରି ଏଇଟିକୁ ଯାହା କରିବାର କଥା କରିଦିଅ । ଆଉ ମୋନାଲିସା ଯେମିତି ଅଛି, ଠିକ୍ ସେମିତି ଥାଉ । ତାକୁ ମୁଁ ଠିକ୍ ଏହି ଅବସ୍ଥାରେ ହିଁ କିଣି ନେବାକୁ ଇଚ୍ଛା କରୁଛି । ତେଣୁ ମୋତେ ଖାଲି ଦାମ୍‌ଟା କହିଦିଅ । ଛବି ଅଧା ହୋଇଛି ବୋଲି ଯେ ମୁଁ ଦାମ୍‌ରେ କିଛି କମ୍ କରି ଦେବାକୁ କହୁଛି, ସେକଥା ଆଦୌ ନୁହେଁ । ସେହି ବିଷୟରେ ତୁମେ ଏତେଟିକିଏ ହେଲେ ଭୟ କରିବ ନାହିଁ ।

ଶିଳ୍ପୀ କିପରି ଏହି ସ୍ଥୂଳରୁଚି ସଉକୀ ମଣିଷଟିକୁ ବୁଝାଇ କହିଥାନ୍ତେ ଯେ ମୋନାଲିସାଙ୍କର ଛବିଟିକୁ ସେ ଆଦୌ ହାତଛଡ଼ା କରିବାକୁ ଚାହୁଁ ନଥାନ୍ତି, କୌଣସି ଦାମ୍ ଦେଲେ ମଧ୍ୟ ନୁହେଁ । ଛବିଟି କେବଳ ତାଙ୍କରି ପାଖରେ ରହିଥିବ, କେବଳ ତାଙ୍କରି ପାଖରେ ।

"ତୁମେ ତେବେ ଦାମ୍ ବିଷୟରେ କିଛି କହିବ ନାହିଁ ? ଆଚ୍ଛା, ମୁଁ କହି ଦେଉଛି । ମୁଁ ତିନି ହଜାର କ୍ରାଉନ୍ ଦେବି । ହେବ କି ନାହିଁ ? ତୁମେ କ'ଣ କହୁଛ ? କମ୍ ହେଉଛି ? ଆଚ୍ଛା, ସାଢ଼େ ତିନି ହଜାର ?"

ଲେଓନାର୍ଡ଼ୋ କିଛି କହି ପାରୁ ନଥାନ୍ତି । ଖାଲି ସେହିପରି ଥଙ୍ଗମଙ୍ଗ ହୋଇ ଅନାଇ ରହିଥାନ୍ତି ।

"ଆଚ୍ଛା, ଆଚ୍ଛା, ମୁଁ ତେବେ ଚାରି ହଜାର ଦେବି," ଭାରି ହୃଷ୍ଟ ହୋଇ ରାଜା ଏଥର କହିଲେ ।

ଚାରି ହଜାରର କଥା ଶୁଣି ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ରୋମ୍‌ର ସର୍ବଶ୍ରେଷ୍ଠ ଶିଳ୍ପୀ ମଧ୍ୟ କେବେହେଲେ ଦୁଇଟା ଛବିକୁ ଚାରିହଜାର କ୍ରାଉନ୍ ଦାବୀ କରି ନାହାନ୍ତି । ଆଉ ଲେଓନାର୍ଡ଼ୋ ଏମିତି କି ଶିଳ୍ପୀ ଯେ ସେ ଚାରି ହଜାରରେ ବି ରାଜି ହେଉ ନାହାନ୍ତି । ଲେଓନାର୍ଡ଼ୋ ବଡ଼ ଅପ୍ରସ୍ତୁତ ହୋଇ ଅନାଇ ରହିଥାନ୍ତି । ବଡ଼ ଆତୁର ଓ ଅନୁନୟଭରା ଆଖିରେ ରାଜାଙ୍କ ଆଡ଼କୁ ଚାହିଁଥାନ୍ତି, ସତେ ଯେପରି ତାଙ୍କ ପାଖରେ କୌଣସି କୃପାଭିକ୍ଷା କରୁଥାନ୍ତି । ଆବଶ୍ୟକ ହେଲେ ରାଜାଙ୍କର ଗୋଡ଼ ଧରି ମଧ୍ୟ କେବଳ ଏହି କଥାଟିକୁ ହିଁ କହିବାକୁ ଇଚ୍ଛା କରୁଥାନ୍ତି ଯେ ମୋନାଲିସାଙ୍କର ଛବିଟିକୁ ସେ ନିଜ ପାଖରେ ରଖିବାକୁ ଚାହାନ୍ତି, କୌଣସି ମୂଲ୍ୟର ବିନିମୟରେ ମଧ୍ୟ ସେଇଟିକୁ ହାତଛଡ଼ା କରିବାକୁ ଚାହାନ୍ତି ନାହିଁ ।

ରାଜା ଭାବିଲେ, ଲେଓନାର୍ଡ଼ୋ ଚାରି ହଜାରରେ ସମ୍ମତ ହୋଇଗଲେ । ତେଣୁ କାମ ସରିଗଲା ବୋଲି ଭାବି ସିଏ ଚଉକୀରୁ ଉଠିଲେ ଏବଂ ଯିବାକୁ ବାହାରିଲେ । ଗଲାବେଳେ କହିଗଲେ, "ତେବେ ସେହି ଚାରି ହଜାରରେ ହିଁ ଛିଣ୍ଡିଲା । ତୁମେ

ଯେତେବେଳେ ଚାହିବ, ତୁମର ଦାମ୍‌ଟା ତୁମକୁ ସଙ୍ଗେ ସଙ୍ଗେ ମିଳିଯିବ । କାଲି ସକାଳେ ମୋ ଲୋକ ଆସି ଛବି ଦୁଇଟିକୁ ଏଠାରୁ ନେଇଯିବେ । ଛବିଗୁଡ଼ିକୁ ମୁଁ ଭାରି ଯତ୍ନର ସହିତ ରଖିବି, ସେ ବିଷୟରେ ତୁମେ କୌଣସି ଚିନ୍ତା କରିବ ନାହିଁ ।"

ରାଜା ସଦଳବଳେ ଆସିଥିଲେ, ସଉଦା କରି ସେହିପରି ସଦଳବଳେ ଚାଲିଗଲେ । ଲେଓନାର୍ଡ଼ୋ ପାଖରେ ପଡ଼ିଥିବା ଚଉକୀଟି ଉପରେ ଯାଇ ବସି ପଡ଼ିଲେ । ସେଇ ଗୋଟିଏ ଲୟରେ ଛବିଟି ଆଡ଼କୁ ଅନାଇ ରହିଥାନ୍ତି । ସେଇଟି ପ୍ରକୃତରେ ତାଙ୍କର ହାତଛଡ଼ା ହୋଇଯିବ ବୋଲି ସେ ବିଶ୍ୱାସ ହିଁ କରି ପାରୁ ନ ଥାନ୍ତି । ପିଲାଙ୍କ ପରି କେତେ ନା କେତେ ଭାବନା ତାଙ୍କୁ କେତେ ପ୍ରକାରେ ଉଦ୍‌ବେଳିତ କରି ଦେବାରେ ଲାଗିଥାଏ । ସିଏ ଭାବୁଥାନ୍ତି, ଛବିଟିକୁ କୌଣସି ସ୍ଥାନରେ ନେଇ ଲୁଚାଇ ଦେଲେ ଆଉ ହେବ କି ? ରାତି ପାହିବା ପୂର୍ବରୁ ସେ କୌଣସି ବିଶ୍ୱସ୍ତ ଲୋକ ହାତରେ ସେଇଟିକୁ ଏକାବେଳକେ ଇଟାଲୀକୁ ପଠାଇ ଦେବେ କି, ଅଥବା, ମୁଣ୍ଡକାଟ ହେବାର ଧମକ ଦିଆଗଲେ ମଧ ଛବିଟିକୁ ସିଏ ରାଜାଙ୍କୁ ଦେବାଲାଗି ସିଧା ନାହିଁ କରିଦେବେ କି ? ବା ବର୍ତ୍ତମାନ ମୁହୂର୍ତ୍ତରେ ସ୍ୱୟଂ ଫ୍ରାନ୍‌ସ ଛାଡ଼ି ଇଟାଲୀକୁ ପଳାଇ ଯିବେ କି ?

ଏମିତି ଚିନ୍ତା କରି କରି ରାତି ହେଲା । ଲେଓନାର୍ଡ଼ୋ ଚଉକୀଟି ଉପରେ ସେମିତି ବସି ରହିଥାନ୍ତି ଓ ମୋନାଲିସାଙ୍କର ଛବିଟି ଆଡ଼କୁ ନିର୍ନିମେଷ ହୋଇ ଅନାଇ ରହିଥାନ୍ତି । ସ୍ଥିର ବିବର୍ଣ୍ଣ ମୁଖ ଓ ସ୍ଥିର କାରୁଣ୍ୟମୟ ନୟନ । ଏମିତି ଏମିତି ଅଧ ରାତି ହୋଇଗଲା । ହଠାତ୍ କ'ଣ ଗୋଟାଏ ସ୍ଥିର କରି ପକାଇଥିଲା ପରି ଲେଓନାର୍ଡ଼ୋ ବସିଥିବା ଚଉକୀଟି ଉପରୁ ଧଡ଼୍ କରି ଉଠି ପଡ଼ିଲେ ଏବଂ ସିଧା ଯାଇ ତାଙ୍କ ପରିକରଙ୍କର ଶୋଇବା ଘର ଭିତରେ ପହଞ୍ଚିଲେ ।

"ଉଠ, ଉଠ ଶୀଘ୍ର ଉଠ । ବର୍ତ୍ତମାନ ରାଜାଙ୍କ ପାଖକୁ ଯିବାକୁ ହେବ । ମୋତେ ତାଙ୍କ ସହିତ ଦେଖା କରିବାକୁ ହିଁ ହେବ ।"

"ବର୍ତ୍ତମାନ ରାତି ଏତେ ବେଶୀ ହୋଇଗଲାଣି । ଆପଣ ଭାରି କ୍ଳାନ୍ତ ହୋଇ ପଡ଼ିଥିବେ । ଏତେ ପର୍ବତ ପଥ ଅତିକ୍ରମ କରି ଯିବା ଲାଗି ଆପଣଙ୍କ ଶରୀରରେ ବଳ ବି ନାହିଁ । ସକାଳ ହେଲେ ଯିବା, ଆପଣ ଏତେ ତରତର ହେଉଛନ୍ତି କାହିଁକି ?

"ନାଇଁ, ନାଇଁ, ବର୍ତ୍ତମାନ ଯିବାକୁ ହେବ । ଉଠ, ଆଲୁଅ ଜଗାଅ, ମୋ ସହିତ ଆସ । ଯଦି ତୁମେ ନ ଯାଇ ପାରିବ, ତେବେ ମୁଁ ଏକା ଯାଉଛି ।"

ଆଉ ଅନ୍ୟ ଚାରା ନ ଥିଲା । ପରିକର ଉଠିଲେ, ଲୁଗାପଟା ପିନ୍ଧି ସେ

ଲେଓନାର୍ଡ଼ୋଙ୍କ ସହିତ ବାହାରିଲେ । ପର୍ବତ ଉଠି ବେଶ୍ କେତେ ସମୟ ପର୍ଯ୍ୟନ୍ତ ଚାଲିବାକୁ ପଡ଼ିଲା । ଅନ୍ଧାର ରାତି, ବନ୍ଧୁର ବାଟ, ପରିକରଙ୍କର କାନ୍ଧରେ ହାତ ପକାଇ ଲେଓନାର୍ଡ଼ୋ ଗୋଟିଏ ଗୋଟିଏ କରି ଆଗକୁ ପାଦ ପକାଉଥାନ୍ତି । ସୁଁ' ସୁଁ' ପବନରେ ଅରଣ୍ୟ କମ୍ପୁଥାଏ । ସେଦିନ ରାତିରେ ରାଜା ଯେଉଁ ଦୁର୍ଗଟିରେ ଅବସ୍ଥାନ କରୁଥିଲେ, ସେଠାରେ ଏବେ ମଧ୍ୟ ଆଲୁଅ ଜଳୁଥାଏ । ଗୀତ ବାଦ୍ୟର ମାଦକ ଝଙ୍କାର ସେଇଆଡୁ ଆସୁଥାଏ । ଅନ୍ତରଙ୍ଗ କତିପୟ ପାଖଲୋକଙ୍କୁ ଗହଣରେ ଧରି ରାଜା ରାତ୍ରିର ବିଳାସଭୋଜନ କରୁଥାଆନ୍ତି । ରାତ୍ରି-ସଭାର ନର୍ମ-ସହଚରୀମାନେ ସୁରାପାନ କରୁଥାନ୍ତି, କରାଉ ବି ଥାଆନ୍ତି । ସେମାନଙ୍କ ମଧ୍ୟରେ ରାଜାଙ୍କର ନିଜ ଭଉଣୀ ମଧ୍ୟ ଥାଆନ୍ତି । ସେହି ରାତିଟି ସକାଶେ ନିଜ ଭାଇଙ୍କର ଆପ୍ୟାୟନ ଲାଗି ସିଏ କେଉଁ ଦୂର ପ୍ରଦେଶରୁ କଅଁଳ ବୟସର ଝିଅଟିଏ ବରାଦ କରି ଆଣିଥାନ୍ତି । ଯାମଶେଷର ଏହି ସଦ୍ୟ ଲାଭଟିକୁ ନେଇ ରାଜା ବିହ୍ୱଳ ହୋଇ ରହିଥାନ୍ତି । ତାହାକୁ ହିଁ କେନ୍ଦ୍ର କରି ନାନା କୌତୁକ-କ୍ରୀଡ଼ାରେ ମତ୍ତ ହୋଇ ରହିଥାନ୍ତି ।

ଶିଳ୍ପୀ ଲେଓନାର୍ଡ଼ୋ ଡ଼ା ଭିଞ୍ଚି ରାଜସାକ୍ଷାତ ଲାଗି ଆସି ପହଞ୍ଚିଛନ୍ତି ବୋଲି ଦ୍ୱାରରକ୍ଷୀ ନିବେଦନ କଲା । 'ତାଙ୍କୁ ଭୋଜନଶାଳାକୁ ନେଇଆସ' ବୋଲି ଆଦେଶ ଦେଇ ରାଜା ଆପଣାର ଭଗିନୀଙ୍କ ସହିତ ତାଙ୍କୁ ସଂଖୋଳିବା ପାଇଁ ଆଗଭର ହୋଇଗଲେ । ଈଷତ୍ ସମ୍ଭ୍ରମ ଏବଂ ଈଷତ୍ ବିରକ୍ତି ସହିତ ଉପସ୍ଥିତ ରମଣୀମାନେ ରାତ୍ରିର ଉତ୍ସବଟି ମଧ୍ୟକୁ ଶିଳ୍ପୀଙ୍କର ଅନୁପ୍ରବେଶକୁ ଅବଲୋକନ କରିବାରେ ଲାଗିଥାନ୍ତି । ଦୀର୍ଘକାୟ ବୃଦ୍ଧ ଲେଓନାର୍ଡ଼ୋ, ମୁଣ୍ଡରେ ଲମ୍ବ ଲମ୍ବ ବାଳ, ବିଷର୍ଣ୍ଣ ବଦନ, ସତେଅବା ଆଉ କେଉଁ ଅନ୍ୟ ଭୁବନ ଏବଂ ଅନ୍ୟ ଏକ ସୃଷ୍ଟି ଭିତରୁ ଏଠି ଆସି ହଠାତ୍ ଖସି ପଡ଼ିଛନ୍ତି । ବିଳାସ-ସଭାର ରସ – କ୍ଷଣଗୁଡ଼ାକ ଏକାବେଳେକେ ପାଣି ଫାଟିଗଲା ପରି ମନେ ହେଉଥାଏ । ଏପରି ଏକ ସମାଗମ ମଧ୍ୟକୁ ଏହି ବିଚିତ୍ର ଅତିଥି ବାଟ ଭୁଲି କୁଆଡୁ ଆସି ପହଞ୍ଚିଗଲେ ?

ଚିରାଭ୍ୟସ୍ତ ଭଦ୍ରତା ଓ ବଦାନ୍ୟତା ସହିତ ରାଜା ସମ୍ବୋଧନ କରି କହିଲେ, "ଶିଳ୍ପୀଶ୍ରେଷ୍ଠ ଲେଓନାର୍ଡ଼ୋ, ଆପଣଙ୍କ ଭଳି ଜଣେ ବିରଳ ଅତିଥିକୁ ବର୍ତ୍ତମାନ ଆମେ କ'ଣ ଦେଇ ଆପ୍ୟାୟିତ କରିବୁ ? ମୁଁ ଜାଣିଛି ଯେ ଆପଣ ମାଂସ ଖାଆନ୍ତି ନାହିଁ । ମାତ୍ର କିଞ୍ଚିତ୍ ମିଷ୍ଟାନ୍ନ ଓ ଫଳ ଗ୍ରହଣ କରିବାରେ ଆପଣଙ୍କର ନିଶ୍ଚୟ କୌଣସି ଆପତ୍ତି ହେବ ନାହିଁ ତ !

"ଆପଣଙ୍କୁ ମୋର ଅନେକ ଧନ୍ୟବାଦ, ଆଜ୍ଞା !" ମୋର କିଛି ନ ହେଲେ ଚଳିବ । ମୁଁ ଆପଣଙ୍କ ସହିତ ଗୋଟିଏ ଜରୁରୀ ବିଷୟରେ କିଛି କଥାବାର୍ତ୍ତା କରିବାକୁ ଆସିଛି ।"

ରାଜା ତାଙ୍କୁ ଏକାନ୍ତକୁ ପାଖରେ ଥିବା ଗୋଟିଏ ବଖରା ଭିତରକୁ ଡାକି ନେଇ ଗଲେ । ରାଜାଙ୍କ ସହିତ ତାଙ୍କର ଭଉଣୀ ମଧ ତାଙ୍କ ଅନୁଗମନ କଲେ ।

ଅନୁନୟସୂଚକ ହାତ ବଢ଼ାଇ ଲେଓନାର୍ଦ୍ଦୋ କହିବାକୁ ଆରମ୍ଭ କଲେ, "ଆଜ୍ଞା, ମୁଁ ମୋର ସେହି ଛବିଟି ବିଷୟରେ ଆପଣଙ୍କ ସହିତ କିଛି କଥାବାର୍ତ୍ତା କରିବାକୁ ଆସିଛି । ମୋର ଯେଉଁ ଛବିଟିକୁ କିଣିବାଲାଗି ଆପଣ ଇଚ୍ଛାପ୍ରକାଶ କରିଅଛନ୍ତି, ସେହି ମୋନାଲିସା ଛବିଟି ବିଷୟରେ ।"

"କିନ୍ତୁ କାଲି କ'ଣ ସେହି ଛବିଟିର ଦାମ୍ ବିଷୟରେ କଥା ଛିଡ଼ିଯାଇ ନ ଥିଲା ?"– ଫ୍ରାନସିସ୍ ପଚାରିଲେ ।

ମୁଁ ଦାମ୍ ବିଷୟରେ କିଛି କହିବାକୁ ଆସିନାହିଁ, ଆଜ୍ଞା !" –ଲେଓନାର୍ଦ୍ଦୋ ଉତ୍ତର ଦେଇ କହିଲେ ।

"ତେବେ ଆଉ କେଉଁ ବିଷୟରେ ?"

କିପରି କଥାଟାକୁ ଆଣି ସେ ଏହି ସ୍ଥୁଳରୁଚି ମଣିଷଟି ଆଗରେ ପକାଇବେ ଓ ସେହି ବିଷୟରେ ତାଙ୍କର ହୃଦ୍‌ବୋଧ କରାଇ ପାରିବେ, ଲେଓନାର୍ଦ୍ଦୋ ହଠାତ୍ ସେହି ଉପାୟଟିକୁ ସତେଅବା ମୋଟେ ଖୋଜି ପାଉ ନଥାନ୍ତି । ନିଜକୁ ଟାଣି ଓଟାରି ସେ ତଥାପି କଥାଟିକୁ ପକାଇଲେ ।

"ଆଜ୍ଞା, ଆପଣ ମୋ ପ୍ରତି ଟିକିଏ ଦୟା କରନ୍ତୁ । ଆପଣ ସେହି ଛବିଟିକୁ ମୋ'ଠାରୁ ନେଇ ଯାଆନ୍ତୁ ନାହିଁ । ସେହି ଛବିଟି ଆପଣଙ୍କର ହୋଇ ହିଁ ରହିଲା । ମୁଁ ସେଇଟି ପାଇଁ ଆପଣଙ୍କୁ ଆଦୌ କୌଣସି ପଇସା ମାଗୁ ନାହିଁ । ସେହି ଛବିଟି କେବଳ ମୋ' ପାଖରେ ଥାଉ, ମୁଁ ମରିବା ପର୍ଯ୍ୟନ୍ତ ମୋ ପାଖରେ ଥାଉ, ମୋର ଏତିକି ଅନୁରୋଧ ।"

ଅତ୍ୟନ୍ତ ବିକଳ ଆଖିରେ ଲେଓନାର୍ଦ୍ଦୋ ରାଜାଙ୍କର ଭଗିନୀଙ୍କ ଆଡ଼କୁ ଅନାଇ ରହିଲେ । ରାଜା କିଛି ହେଲେ ବୁଝି ପାରୁ ନଥାନ୍ତି, କେବଳ ଏକ ଭ୍ରୂକୁଟିର ଭଙ୍ଗୀରେ ଅନାଇ ରହିଥାନ୍ତି । ଏତିକିବେଳେ ଭଗିନୀ କହିଲେ, "ଆପଣ ଶିଳ୍ପୀଙ୍କର ଅନୁରୋଧଟିକୁ ରକ୍ଷା କରନ୍ତୁ । ତାଙ୍କ ପ୍ରତି ସହୃଦୟ ହୁଅନ୍ତୁ ।"

"କ'ଣ ହେଲା ! ତେବେ ତୁମେ ମଧ ତାଙ୍କରି ପକ୍ଷରେ କଥା କହୁଛ ? ଇଏ କ'ଣ ଗୋଟାଏ ଷଡ଼ଯନ୍ତ୍ର କରାଯାଇଛି ନା କ'ଣ ?" ଭଉଣୀ ଶଙ୍କି ନ ଯାଇ ଧୀର

କଣ୍ଠରେ ବୁଝାଇଲା ପରି ପୁଣି ରାଜାଙ୍କୁ କହିଲେ, "ତୁମେ ବୁଝି ପାରୁନା ? ମୋନାଲିସାଙ୍କୁ ସିଏ ଏବେ ବି କେଡ଼େ ଭଲ ପାଉଛନ୍ତି ।"

"କିନ୍ତୁ ତାଙ୍କର ତ କେଉଁ ଦିନରୁ ମୃତ୍ୟୁ ହୋଇ ସାରିଲାଣି ?"

"ଜଣେ ମରିଗଲା ପରେ ମଧ୍ୟ ଲୋକେ କ'ଣ ତାକୁ ଭଲ ପାଉ ନାହାନ୍ତି ? ଶିଳ୍ପୀଙ୍କର ସ୍ମୃତିଟିକୁ ତାଙ୍କରି ପାଖରେ ରହିବାକୁ ଦିଅନ୍ତୁ । ତାଙ୍କୁ ଆଘାତ ଦେବାଲାଗି ଆଦୌ କୌଣସି ବିଚାର କରନ୍ତୁ ନାହିଁ ।"

ଉଦାର ରାଜା ବୁଝିଲେ । ଲେଓନାର୍ଡ୍ଡୋଙ୍କୁ ଉଦ୍ଦେଶ୍ୟ କରି କହିଲେ, "ଆଚ୍ଛା, ତୁମର ପ୍ରାର୍ଥନାଟିକୁ ମୁଁ ସ୍ୱୀକାର କଲି । କିନ୍ତୁ ମନେ ରଖିବାକୁ ହେବ ଯେ ଏହି ଛବିଟି ହେଉଛି ମୋର ଏବଂ ତା'ର ପ୍ରତିଶ୍ରୁତ ଦାମ୍‌ଟି ଅବଶ୍ୟ ଦେଇ ଦିଆଯିବ ।"

ଲେଓନାର୍ଡ୍ଡୋଙ୍କୁ ସତେ ଅବା ଥଳ ମିଳିଗଲା ପରି ଲାଗିଲା । କୃତକୃତ୍ୟ ହେଲାପରି ସେ ସେଠାରୁ ବିଦାୟ ନେଇ ଆସିଲେ । ସିଏ ଚାଲିଯିବା ପରେ ରାତ୍ରିର ଭବନରେ ପୁଣି ବାଜା ବାଜି ଉଠିଲା, ନୃତ୍ୟ ଆରମ୍ଭ ହୋଇଗଲା । ହଠାତ୍ କୁଆଡୁ ଆସି ମୁହୂର୍ତ୍ତକ ଲାଗି ଆବେଶଟିର ଅବିଚ୍ଛିନ୍ନତାକୁ ଭଙ୍ଗ କରି ଦେଇଥିବା ସେହି ବିଚିତ୍ର ଅତିଥିଟିକୁ ପୁଣି ଭୁଲିଯିବା ଲାଗି କାହାକୁ ହେଲେ ଅଧିକ ସମୟ ଲାଗିଲା ନାହିଁ ।

× × × ×

ଶିଳ୍ପୀ ସବୁଦିନେ ଏହିପରି ବିଚିତ୍ର । କାହାରି ସହିତ ମୋଟେ ଖାପ ନ ଖାଉଥିଲା ପରି ବିଚିତ୍ର । ରାଜାମାନେ ମଧ୍ୟ ସବୁ ଯୁଗରେ ଠିକ୍ ଏପରି ଏକାଭଳି । ସେମାନେ ଜଗତଟାକୁ କିଣି ନେବାକୁ ଚାହାନ୍ତି, ମୂଲ ଦେଇ ଅମୂଲର ଆଲେହନ କରିବାକୁ ଚାହାନ୍ତି । ସେମାନେ ଜଗତଟାକୁ କେବଳ ଆପଣା ଦେହର ଏକ ବିସ୍ତାର ବୋଲି ମଣୁଥାନ୍ତି ଏବଂ ଆପଣାର ସେହି ଅନୁମାନଟିକୁ ସାବ୍ୟସ୍ତ କରି ଦେଖାଇ ଦେବାକୁ ହିଁ ସେମାନେ ଜୀବନର ସବୁଠାରୁ ବଡ଼ ବା ହୁଏତ ଏକମାତ୍ର ସାର୍ଥକତା - ପଦବାଚ୍ୟ ସାର୍ଥକତା ବୋଲି ବିଚାର କରୁଥାନ୍ତି ।

ଏମାନଙ୍କ ମଧ୍ୟରେ କିଏ ଯବନ, କିଏ ମ୍ଳେଚ୍ଛ ? କିଏ ପଂକ୍ତିର ଆଉ କିଏ ଅପାଂକ୍ତେୟ ? ସବା ଆଗ କାହାର ଯାଇ ପଂକ୍ତିରେ ବସିବା ଉଚିତ ? କୌଣସି ଏକ ଯୁଗରେ ମନୁଷ୍ୟର ଗୋଷ୍ଠୀଗୁଡ଼ାକ ଜୀବନର ଯେଉଁ କଥା ଏବଂ ଯେଉଁ ଅଭିଜ୍ଞତାଗୁଡ଼ାକୁ ସର୍ବୋଚ୍ଚ ମୂଲ୍ୟ ଦେଇ ବିଚାର କରନ୍ତି, ତାହାରି ଉପରେ ହିଁ ଏହି ପ୍ରଶ୍ନଟିର ଉତ୍ତର ଦିଆଯାଇ ପାରିବ । ତଥାପି ଏ କଥାଟି ମଧ୍ୟ ଇତିହାସର ଗୋଟିଏ ସତ୍ୟ ଯେ ରାଜାମାନେ

ଶିଳ୍ପୀମାନଙ୍କୁ ସବୁବେଳେ ପ୍ରାୟ ନିର୍ବୋଧ ଏବଂ ତେଣୁ ଅସଲ କ୍ଷେତ୍ରଗୁଡ଼ାକରେ ଏକାନ୍ତ ଅଯୋଗ୍ୟ ବୋଲି ବିଚାର କରି ଆସିଛନ୍ତି । ସେମାନେ ଜାଗିରି ଦେଇ ସୌନ୍ଦର୍ଯ୍ୟ କିଣିଛନ୍ତି, ସଭାରେ ଶିଳ୍ପୀ ଓ ସାହିତ୍ୟିକ ମାନଙ୍କର ପଂକ୍ତି ବସାଇ ସତେଅବା ଏକ ଜମିଦାରୀ ପରି ସାହିତ୍ୟକୁ ଭୋଗ କରିଛନ୍ତି, କଳାକୁ ଭୋଗ କରିଛନ୍ତି, ଜୀବନର କଳା-ପ୍ରସ୍ଥ ଅଥବା କଳା-ପୃଷ୍ଠଗୁଡ଼ାକର ପୋଷକତା କରି ଆସିଛନ୍ତି । ଏହି ଦୁଇପକ୍ଷଙ୍କ ଭିତରେ ମନୁଷ୍ୟ-ଜାତିକୁ କିଏ ପ୍ରକୃତରେ ତା'ର ଯଥାର୍ଥ ପଂକ୍ତିରେ ବସାଇ ଆସିଛି, ସେହି ବିଷୟଟିରେ ମଧ୍ୟ ଆମ ଭିତରେ ନିଶ୍ଚୟ ଅନେକ ମତଭେଦ ରହିବ । ଆମରି ଭିତରେ ପରସ୍ପରର ପାର୍ଶ୍ୱବର୍ତ୍ତୀ ହୋଇ ରହିଥିବା ରାଜା ଓ କଳାକୃତ୍‌ମାନେ ହୁଏତ ଏହି ବିଷୟଟିକୁ ନେଇ ପରସ୍ପର ସହିତ ଏକ ସମ୍ପୂର୍ଣ୍ଣ ବିବାଦଟିଏ ମଧ୍ୟ ଆଣି ବେଶ୍ ବାଡ଼ିଦେଇ ପାରିବେ । ଏକଥା ଏକାନ୍ତ ସତ ଯେ ଆମେ ନିଜେ ମଧ୍ୟ କେତେବେଳେ ରାଜା ହୋଇ ବସୁ, ପୁଣି କେତେବେଳେ କଳାକୃତ୍‌ର ପଙ୍ଗତ ବି ସଜାଇବାରେ ଲାଗିଥାଉ । କଳାକୃତ୍‌ର ପରଗୁଡ଼ାକୁ ଦେହରେ ଲଗାଇ କିଏ ଗୋଟାଏ ପକ୍‌କା ରାଜା ହେବାକୁ ଇଚ୍ଛା କରୁଥାଏ, ଗୋଟାଏ ତୁଚ୍ଛା କାମୁକ ପରି ଜିଭଟାକୁ ଲହ ଲହ କରିବାରେ ଲାଗିଥାଏ । ସାହିତ୍ୟକୁ ଓ କଳାକୁ ଏମାନେ ଗୋଟାଏ ଅନୁଷ୍ଠାନରେ ପରିଣତ କରି ରଖିଥାନ୍ତି, ଗୋଟାଏ ଡିହପରି କେତେ ପ୍ରକାର ସରଞ୍ଜାମ ଓ ସାଜମଣ୍ଡନ ଦେଇ ଖଟୁଲିଟିକୁ ସଜାଇ ସେମାନେ ତାହାରି ଉପରେ ସ୍ୱୟଂ ଦିଅଁ ହୋଇ ବସି ଯିବାକୁ ମନ କରୁଥାନ୍ତି । ମୁଠା ମୁଠା ପଇସା ଖରଚ ହୁଏ, ମୁଠା ମୁଠା ବାନା ଉଡ଼େ, ମୁଠା ମୁଠା ହରିବୋଲ ଦିଆହୁଏ, ମୁଠା ମୁଠା ଫଟୋ ଉଠାହୁଏ । ରାତିଗୁଡ଼ାକୁ ଗୋଟା ସୁଦ୍ଧା ଦିନ କରି ଦିଆହୁଏ । ସଂସ୍କୃତିକୁ ସତେଅବା ତୁଚ୍ଛା ଗୋଟାଏ ଭାଣ୍ଡରେ ପରିଣତ କରି ତୁଳି ଉପରକୁ ଉଠାଇ ଦିଆହୁଏ । ଆମ ଘରେ ଏତେ ସମ୍ପତ୍ତି ରହିଛି ବୋଲି ବାଦୀପାଲା ଲାଗିଯାଏ । ପଣ୍ଡିତମାନେ ନୋଳି ପିନ୍ଧି ବେକରେ ଖାଳେଇ ଗଳାଇ ଆମ ସମସ୍ତଙ୍କର ଜୟଗାନ କରିବାରେ ଲାଗନ୍ତି ଓ ଏହି ସବୁଯାକ ଉପଚାର ମଧ୍ୟଦେଇ ରାଜାଙ୍କୁ ହିଁ ବାହା ବାହା ଦେବାରେ ଲାଗିଥାନ୍ତି । ରାଜାର ପଣତ ଧରି ଓ ରାଜାର ବେହରଣ ଖଟି ସେମାନେ ଧନ୍ୟ ହୁଅନ୍ତି ।

ରାଜାମାନେ ସମ୍ଭବତଃ ସାହିତ୍ୟ, କଳା ଓ ସଂସ୍କୃତି ସହିତ ଏକ ପରିଣୟ-ସୂତ୍ରରେ ଆବଦ୍ଧ ହୋଇ ରହିବାକୁ ଚାହୁଥାନ୍ତି । ସେଥିଲାଗି ମୋନାଲିସାଗୁଡ଼ାକୁ ସେମାନେ ଆପଣା ଘରେ ଖୁଣ୍ଟରେ ନେଇ ବାନ୍ଧି ରଖିବାକୁ ଇଚ୍ଛା କରୁଥାନ୍ତି । ସେମାନେ ମୋନାଲିସାଗୁଡ଼ାକୁ କିଣି ଆଣିବାର ପ୍ରାୟ ଏକ ଉଚ୍ଚାଟିତ ସରାଗ ଦେଖାଇବାରେ ଲାଗିଥାନ୍ତି । ସେମାନେ ସେଥିଲାଗି ଉତ୍ସବଗୁଡ଼ାକୁ ବଜାର ବୋଲି ମଣନ୍ତି ଓ ବଜାରଗୁଡ଼ାକୁ ଉତ୍ସବ ବୋଲି ମଣନ୍ତି । ତାଙ୍କର କାମାତୁରତା ଏବଂ ବିଷୟାତୁରତାର ଅଭିଧାନଗୁଡ଼ାକୁ

ସେମାନେ ତୁମର ଓ ମୋର ଅଭିଧାନ ହିସାବରେ ମଧ୍ୟ ଚଳାଇ ଦେବାକୁ ଚାହୁଥାନ୍ତି । ପୁଣି, ଆମରି ଭିତରେ କେଉଁ ପାପ ଅଥବା ଦୁର୍ଭାଗ୍ୟବଶତଃ ଯଦି ରାଜା ଓ କଳାକୃତ୍ ଦୁଇଜଣଯାକଙ୍କର ଏକାବେଳେକେ ଉପଦ୍ରବ ଲାଗି ରହିଥାଏ, ତେବେ ଅଧିକାଂଶ କ୍ଷେତ୍ରରେ ରାଜାହିଁ କଳାକୃତ୍‌କୁ ଅତ୍ୟନ୍ତ କୌଶଳ ସହକାରେ ପ୍ରାୟ ଏକାବେଳେକେ ଆତ୍ମସାତ୍ ବା ମଣ କରିନିଏ । ଆମେ ସେତେବେଳେ ଗୋଟାକୁ ବିକି ଆରଟାଲାଗି ଗହଣା ଗଢ଼ିବାରେ ଲାଗିଥାଉ, ଏଠି ଡିହ ହରାଇ ସେଠି ମହତ କିଣିବାରେ ନସରପସର ପରାକ୍ରମ ବି ଦେଖାଉଥାଉ । ସାହିତ୍ୟ ଓ କଳା ଭିତରେ ଥାଇ ମଧ୍ୟ ଗୋଟାସୁଦ୍ଧା ରାଜା ପରି ଦେଖାଯାଉ, ରାଜାର ହିଁ ମଣିମାଳଗୁଡ଼ାକୁ ପିନ୍ଧି ବୁଲିବାରେ ଲାଗିଥାଉ । ଆମରି ଭିତରେ ଲେଓନାର୍ଡୋକୁ ବଶକରି ଅର୍ଥାତ୍ ବଧ କରି ଆମରି ଭିତରର ରାଜାଟା ପରିଧାନ ବଦଳାଇ ସତେଅବା ଗୋଟାଏ ରାଜର୍ଷି ପରି ଦେଖାଯାଉଥାଏ, ସତେଅବା କେଉଁ ବଶିଷ୍ଠଙ୍କ ଆଶ୍ରମରୁ ଗାଭୀ ଚୋରାଇ ଆଣିବାର ସିଦ୍ଧତପସ୍ୱୀ ହୋଇ ବାହାରିଥାଏ ।

ରାଜା ଫ୍ରାନ୍‌ସିସ୍‌ଙ୍କ ସଂସାର ଆଉ ଲେଓନାର୍ଡୋ ଡ଼ା ଭିଞ୍ଚିଙ୍କର ସଂସାର ଦୁଇଟାଯାକ ହେଉଛନ୍ତି ଦୁଇଟା ଅଲଗା ଅଲଗା ସଂସାର ଏବଂ ଦୁଇ ସଂସାରରେ ଦୁଇଟା କିସମର ଉତ୍ସାହ । ଗୋଟିଏ ଗିଳି ପକାଇବାର ସଂସାର ଏବଂ ଆଉ ଗୋଟାଏ ହେଉଛି ଆପଣାକୁ ସମ୍ପୂର୍ଣ୍ଣ ରୂପେ ଗୋଳାଇ ଉକୁଟାଇ ନୂତନ କରି ଓ ସୁନ୍ଦରତର କରି କିଛି ସୃଷ୍ଟି କରିବାର ସଂସାର । ଗୋଟିଏ ହେଉଛି କର୍ତ୍ତୃତ୍ୱ, ଅଧିକାର, ଗ୍ରାସ ଓ ନିୟନ୍ତ୍ରଣର ସଂସାର । ଆଉ ଗୋଟିଏ ଶ୍ରଦ୍ଧାର ସଂସାର । ଗୋଟାଏ ହେଉଛି କୋଳାହଳର ସଂସାର, ମିଛ କୀର୍ତ୍ତନ ଓ ମିଛ ରୋଦନର ସଂସାର । ଆଉ ଗୋଟାଏ ନୀରବ ହୋଇଯିବାର ସଂସାର, ଅନ୍ତରଙ୍ଗ ହେବାର ସଂସାର, ସତେଅବା କୌଣସି ଜନନୀ ପରି ଆପଣାକୁ ଅଭିନିବେଶିତ କରି ରଖିବାର ସଂସାର । ଗୋଟାଏ ହେଉଛି କ୍ଷମତାର ସଂସାର, ପ୍ରତାପୀ ଅହଂକାର ଓ ଅସ୍ୱୀକାରର ସଂସାର; ଆଉ ଗୋଟାଏ ସମ୍ମିଳିତ ହେବାର ସଂସାର, ଡୋର ବାନ୍ଧିବାର, ଛନ୍ଦି ହୋଇଯିବାର ସଂସାର, ଭଲ ପାଇବାର ସଂସାର । ଏହି ଦୁଇଟା ମଧ୍ୟରୁ କୋଉଟା ବାସ୍ତବ ଏବଂ କୋଉଟା ଅବାସ୍ତବ, କୋଉଟା ପ୍ରକୃତ ଓ କୋଉଟା ଅପ୍ରକୃତ, ସେହି ବିଷୟରେ ଏବେ ମଧ୍ୟ ଦ୍ୱିମତ ରହିଛି । କଳହ ରହିଛି, ଦ୍ୱିପାକ୍ଷିକ ସବଳ ଯୁକ୍ତିମାନ ରହିଛି । ମାତ୍ର ଏକଥାଟି ଏକାବେଳେକେ ଏକ ନିଦା ସତ୍ୟ ଯେ, ଯିଏ ଏପାଖଟିକୁ ବାସ୍ତବ ବୋଲି ସ୍ୱୀକାର କରିନିଏ, ତାକୁ ଆର ପାଖଟା ଏକାବେଳେକେ ଅବାସ୍ତବ ଭଳି ଦିଶେ; ଯିଏ ଏପାଖଟାକୁ ଅସଲ ଜୀବନ ବୋଲି ଗ୍ରହଣ କରିନିଏ, ଆରପାଖଟା ତାକୁ ଗୋଟାଏ ତୁଚ୍ଛା ଅଭିନୟ ଅଥବା ମିଛଶ୍ରମ ବୋଲି ହିଁ ପ୍ରତୀତ ହେବାକୁ ଲାଗେ । ଯିଏ ରାଜା ହୋଇ ବସିବା ବା ରାଜସ୍ତବ ଗାଇବାକୁହିଁ ବାସ୍ତବ ଓ ଅସଲ ବୋଲି ଗ୍ରହଣ କରେ,

ଜୀବନର ସୃଜନଭାଗଟା ତାକୁ ଏକାବେଳେକେ ଅବାସ୍ତବ ଓ ତାତ୍ପର୍ଯ୍ୟହୀନ ବୋଲି ବୋଧହୁଏ ଏବଂ ଯିଏ ଲେଓନାର୍ଦ୍ଦୋ ଡ଼ା ଭିଞ୍ଚିଙ୍କର ମାର୍ଗକୁ ହିଁ ଅସଲ ମାର୍ଗ ବୋଲି ମାନେ, ତାହାରିଲାଗି ବଞ୍ଚେ ଏବଂ ନିଷ୍ଠାର ସହିତ ସେଇଟିକୁହିଁ ଆକାଂକ୍ଷା କରେ, ସିଏ ରାଜପଣ ଓ କ୍ଷମତାପଣକୁ ତୁଚ୍ଛା ଆଡ଼ମ୍ବର ଓ ତୁଚ୍ଛା ନିଷ୍ଫଳତା ବୋଲି ମଧ୍ୟ ମାନିନିଏ । ଯିଏ ଯୋଉଟାକୁ ଚାହେ, ସତେଅବା ବଡ଼ ସ୍ୱାଭାବିକ ଭାବରେ ଆରଟା ତା'ର ଜୀବନ ଉପରୁ କ୍ରମଶଃ ଖସି ଖସି ଯିବାରେ ଲାଗିଥାଏ ।

ଯେଉଁ ସଂସାରରେ ରାଜାମାନଙ୍କର ପ୍ରାଦୁର୍ଭାବଟା ଅତିରିକ୍ତ ହୋଇପଡ଼େ, ସେଠାରେ କଳାକୃତ୍ ଓ ସାହିତ୍ୟକାର, ଯଦି ତା'ର ସର୍ବପ୍ରଥମ ଅନୁରକ୍ତି କଳା ଓ ସାହିତ୍ୟ ପ୍ରତିହିଁ ରହିଥାଏ, ଯଦି କୌଣସି ରାଜାର ସଭାରେ ଭାଣ୍ଡ ହୋଇ ବିରାଜିତ ରହିବାକୁ ସେ କେବେହେଲେ ଚାହୁଁ ନ ଥାଏ, କଳାବିତ୍ ଓ ସାହିତ୍ୟକାର ଯେ ସେଠି ଧର୍ମତଃ ଯବନ ହୋଇ ରହିବ, ସେଇଟା ବୁଝିବାକୁ ଆମକୁ ଆଉ କୌଣସି କଷ୍ଟହିଁ କାହିଁକି ଲାଗିବ ? ଯେଉଁଠି ସମସ୍ତେ ଫୁଲ ଛିଣ୍ଡାଇ ରସିକ ହେବାଲାଗି ହସ୍ତୀ, ଅଶ୍ୱ ଏବଂ ରଥ ଧରି ଅଭିଯାନରେ ବାହାରିଥାନ୍ତି, ସେଠି ଫୁଲଟିଏ ଫୁଟାଇବାକୁ ଧର୍ମ ବୋଲି ଗ୍ରହଣ କରିଥିବା ମାଳି ଯେ ତୁଚ୍ଛା ଯବନପଣରେ ଗଣାହେବ, ଆମର ସେ ବିଷୟରେ ଆଉ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି, ଦୁଃଖ କରିବାର ବି କ'ଣ ଅଛି ?

ତା ।୧୧ ।୦୨ ।୧୯୭୭ରିଖ



# ଏଗାର

ଆମର ଏହି କଳିଙ୍ଗ ଭୂଇଁରେ ହିଁ ଯୁଦ୍ଧ ଲାଗିଥିଲା । ଆମର ଏହି ଧଉଳି ପାହାଡ଼ର କାନ୍ଥରେ । ଲକ୍ଷ ଲକ୍ଷ ଅର୍ଥାତ୍ କୁଆଡ଼େ ଲକ୍ଷାଧିକ ଲୋକ ହତାହତ ହେଲେ । ଦୟା ନଦୀର ପାଣି ରକ୍ତରେ ଲାଲ ହୋଇଗଲା । ଅଶୋକ କଳିଙ୍ଗ ବିଜୟ କରିବାକୁ ଆସିଥିଲେ । ସେତେବେଳେ ସେ ଚଣ୍ଡାଶୋକ ଥିଲେ । ସାକ୍ଷାତ ଚଣ୍ଡ ଥିଲେ । ସିଏ ଦିଗ୍‌ବିଜୟ କରି ଚକ୍ରବର୍ତ୍ତୀ ରାଜା ବୋଲାଇବାକୁ ସମର ଅଭିଯାନରେ ବାହାରିଥିଲେ । ତାଙ୍କର ଭାଗ୍ୟ, କଳିଙ୍ଗର ଭାଗ୍ୟ ଅଥବା ବୌଦ୍ଧ ଧର୍ମର ଭାଗ୍ୟ କେଜାଣି, ଯୁଦ୍ଧ ସରିଯିବା ପରେ ଏହି କଳିଙ୍ଗ ଭୂମିରେ ହିଁ ଚଣ୍ଡାଶୋକ ଧର୍ମାଶୋକ ହେବେ ବୋଲି ସତେଅବା ବିଧିଲିଖନ ହୋଇ ରହିଥିଲା । ଉତ୍କଳବାସୀ କହନ୍ତି, ଉତ୍କଳ ହିଁ ଅଶୋକଙ୍କର ହୃଦୟ ପରିବର୍ତ୍ତନ କରାଇଲା । ଯିଏ ଓଡ଼ିଶାକୁ ଭଲପାଏ, ଅର୍ଥାତ୍ ଆପଣାର ଭୂଇଁଟାକୁ ନେଇ ଯିଏ ଗର୍ବ ଅନୁଭବ କରେ, ସିଏ ଏକଥା ନ କହି ପ୍ରକୃତରେ ଆଉ କ'ଣ ବା କହି ପାରିବ ? ଓଡ଼ିଶାର ପଣ୍ଡିତମାନେ ମଧ୍ୟ ଅନେକ ସମୟରେ ପ୍ରାୟ ସେହି କଥା କହିଥାନ୍ତି ।

ଓଡ଼ିଶା ହିଁ ଅଶୋକଙ୍କୁ ବଦଳାଇ ଦେଲା । ଚଣ୍ଡାଶୋକଙ୍କୁ ଧର୍ମାଶୋକ କରାଇଲା । ଯିଏ ଚଣ୍ଡାଶୋକ ଥିଲେ ଓ ତା'ପରେ ଧର୍ମାଶୋକ ହେଲେ, ଏହି ପରିବର୍ତ୍ତନଟିରେ ତାଙ୍କର ଯେ ପ୍ରକୃତରେ କୌଣସି ଶ୍ରେୟ ଥିଲା, ଏହି କ୍ଷେତ୍ରରେ ସେହି କଥାଟିର କୌଣସି ଚର୍ଚ୍ଚା ହୁଏ ନାହିଁ । ଯେଉଁ ବୁଦ୍ଧଦେବଙ୍କର ଜୀବନ ଓ ବାଣୀ ଜୀବନାଦର୍ଶ ଓ ଜୀବନ-ଚାରଣାର ଏକ ପରାକ୍ରମଶାଳୀ ବିକଳ୍ପ ରୂପେ ଗୋଟିଏ ଅନୁତପ୍ତ ହୃଦୟକୁ ଆପଣାର କରି ନେଇଥିଲା, ଜଣେ ରାଜାକୁ ମଣିଷ କଲା, ଆମେ ଓଡ଼ିଶାରେ ସେହି ବିଷୟରେ ମଧ୍ୟ ବେଶୀ କିଛି ଚର୍ଚ୍ଚା କରୁଥିଲା ପରି ପ୍ରାୟ ଦୃଷ୍ଟିଗୋଚର ହୁଏ ନାହିଁ । ଏସବୁ ବ୍ୟାପାର ଆମରି ଭୂଇଁରେ ଘଟିଲା, କେବଳ ଏହି କଥାଟି ହିଁ ଆମକୁ ସତେଅବା ଗୋଟାସୁଦ୍ଧା ଗିଳି ପକାଇବାକୁ ଆସେ, ଆମର ନିଶଫୁଲା ଅଭିମାନଗୁଡ଼ାକୁ ସୁନାବେଶ କରି ଦେଇଯାଏ, ଆମ ବେରସିକତା ଗୁଡ଼ାକୁ ତାହାର ରସୋତ୍ତୀର୍ଣ୍ଣତାର ବେଙ୍ଗ ଚମତ୍କାରେ କଷି ଗୋଟାସୁଦ୍ଧା ଅନ୍ୟ ଆକୃତି ଓ ବନ୍ୟ ଆକୃତିରେ ପରିଣତ କରି ଦେଇଯାଏ ।

ଯେତେବେଳେ ଚଣ୍ଡାଶୋକ ମଗଧ ଦେଶରୁ ଦକ୍ଷିଣମୁହାଁ ହୋଇ ଆସି କଳିଙ୍ଗ ଆକ୍ରମଣ କରିଥିଲେ, ସେତେବେଳେ ଓଡ଼ିଶାର କୋଉ ରାଜାଙ୍କ ସହିତ ସେ ଯୁଦ୍ଧ କରିଥିଲେ ଏବଂ ସେ ରାଜା ସ୍ୱୟଂ ବୌଦ୍ଧ ଥିଲେ କି ନାହିଁ, ଇତିହାସକୁ ଉଖାରି ତଥ୍ୟଗୁଡ଼ାକୁ ସତ୍ୟରେ ପରିଣତ କରୁଥିବା ବିଶେଷଜ୍ଞମାନେ ଆମକୁ ସେ ବିଷୟରେ ହୁଏତ କେତେ କ'ଣ କହିବେ; ମାତ୍ର ଅନ୍ତତଃ ଗୋଟାଏ କଥା ପକ୍‌କା ସତ ଯେ ସେମାନେ ଏକମତ ହୋଇ କଦାପି କିଛିହେଲେ କହିବେ ନାହିଁ । ବୁଦ୍ଧପ୍ରଚାରିତ ଧର୍ମଟି ସେତେବେଳେ ହୁଏତ କେବଳ ଭିକ୍ଷୁମାନଙ୍କ ପର୍ଯ୍ୟନ୍ତ ହିଁ ପ୍ରବେଶ କରି ପାରିଥିଲା, ରାଜାଙ୍କ ଯାଏ ଅର୍ଥାତ୍ ରାଜସଭା ଯାଏ ଆସି ନଥିଲା । ବୌଦ୍ଧ ଭିକ୍ଷୁମାନେ ଆପଣାର ପ୍ରବ୍ରଜ୍ୟାକ୍ରମରେ ଜନପଦ ପରେ ଜନପଦ ପାର ହୋଇ ସେତେବେଳକୁ ହୁଏତ ମଗଧରୁ କଳିଙ୍ଗଯାଏ ଆସି ସାରିଥିଲେ । ମଗଧରୁ ଆଗ ଭିକ୍ଷୁମାନେ ଆସିଥିଲେ, ତା'ପରେ ସେହି ମଗଧରୁ ରାଜା ଆସିଲେ । ସୈନ୍ୟବାହିନୀ ନେଇ ଆସିଲେ, ଦିଗ୍‌ବିଜୟ କରିବାକୁ ଆସିଲେ । ଅଶୋକ କଳିଙ୍ଗ ଜୟ କଲେ, ବୌଦ୍ଧ ଧର୍ମ ଅଶୋକଙ୍କୁ ଜୟ କଲା – ହୁଏତ ତା'ପରେ ଯାଇ ଧର୍ମ ମହାମାତ୍ୟଙ୍କର ଆଦେଶନାମାକୁ ବହନ କରି ରାଜଧର୍ମ ରୂପେ ବୌଦ୍ଧଧର୍ମ ଓଡ଼ିଶାକୁ ଆସିଲା ଏବଂ ସମସ୍ତେ ରାଜ-ଅନୁରକ୍ତିର ମର୍ଯ୍ୟାଦା ଦେଇ ରାଜଧର୍ମଟିକୁ ଗ୍ରହଣ କରିନେଲେ । ସେହିମାନଙ୍କର ଭୂମିକୁ ଆସି ଯେଉଁ ରାଜାଙ୍କର ହାତରୁ ଖଡ଼୍‌ଗ ଖସି ପଡ଼ିଲା, ସେମାନେ ସେହି ରାଜାଙ୍କର ପ୍ରଚାରିତ ଧର୍ମଟିକୁ ଗ୍ରହଣ କରୁଛନ୍ତି ବୋଲି ତତ୍କାଳୀନ କଳିଙ୍ଗବାସୀମାନେ କୌଣସି ବିଶେଷ ଉତ୍ସାହ ଅନୁଭବ କରିଥିବେ କି ନାହିଁ, ବର୍ତ୍ତମାନ ଅନୁମାନ କରି ସେକଥା ଆଦୌ କହି ହେବ ନାହିଁ ।

ମାତ୍ର ଆମେ ଏ କାଳରେ ସର୍ବୋଦୌ ସେହି କଥାଟିକୁ ନେଇ ଯେ ଏକ ବିଶେଷ ଉତ୍ସାହ ଅନୁଭବ କରିଥାଉ, ଅଶୋକଙ୍କର ଅଥବା ବୌଦ୍ଧ ଧର୍ମର ଗାଥାଟିକୁ ସ୍ମରଣ କଲାବେଳେ ଯେ ଆମେ ସବାଆଗ ଏବଂ ସବୁଠାରୁ ଅଧିକ ପରିମାଣରେ ଆପଣା ଭୂମିଟିରହିଁ ପ୍ରତିଷ୍ଠା କରିବା ଲାଗି ବ୍ୟଗ୍ରତା ଦେଖାଉ, ଆମ ସାହିତ୍ୟକୁ ପଢ଼ିଲେ ଓ ଆମ ଭୂମିପ୍ରେମୀମାନଙ୍କର ଗହଣରେ ଆସିଲେ ଆମକୁ ସେହି କଥାଟିର ହିଁ ଭୂରି ଭୂରି ପ୍ରମାଣ ମିଳି ଯାଇଥାଏ । ଆପଣାର ମହିମା ଫଳରେ ହିଁ ଏହି ଭୂମି ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରି ଦେଇଥିଲା ବୋଲି ଯେତେବେଳେ ଆମେ ନିଶଗୁଡ଼ାକୁ ଲାଙ୍ଗୁଳବତ୍ ଫୁଲାଇ କହିବାରେ ଲାଗୁ, ସେଥିଲାଗି କେତେ ଐତିହାସିକ ସତ୍ୟର ଅବତାରଣା କରୁ, ଆମେ ସେତେବେଳେ ବୌଦ୍ଧଧର୍ମର କୌଣସି ପ୍ରେରଣାକୁ ଅନୁଭବ କରୁ ନ ଥାଉ, ବୁଦ୍ଧ-ଜୀବନର ପ୍ରେରଣାଟି ସେତେବେଳେ ଆମକୁ ଛାଡ଼ି ସତେଅବା ଆଉ କୁଆଡ଼େ ହିଁ ରହିଥାଏ । ଆମ ପାଖରେ ଆମର ଭୂମିଟା ହିଁ ଏକମାତ୍ର ଆସ୍ୱାଦ୍ୟ ହୋଇ ରହିଥାଏ,

ଆମର ସବୁଯାକ ଖୋସଣିରେ ସେଇଟି ହିଁ ଏକମାତ୍ର ଗୋଟାଳି ହୋଇ ଖୋସା ହୋଇଥାଏ, ଏହି ଗୁଡ଼ିକ ହିଁ ଆମ ଧୋବା ତୁଠରେ ଏକମାତ୍ର ପରିମଳ ହୋଇ ରହିଥାଏ । ଆମ ଆମ୍ର-କଳନାର ଏକମାତ୍ର ବାଡ଼ି ହୋଇ ରହିଥାଏ ।

ଏବେ କଟକରେ ବୌଦ୍ଧଧର୍ମ ଓ ଜୈନଧର୍ମ ବିଷୟରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ବସିଥିଲା । ଓଡ଼ିଶା ବାହାରୁ କେତେ ପଣ୍ଡିତ ଓ ବିଦଗ୍ଧ ପ୍ରତିନିଧିମାନେ ସେହି ସମ୍ମିଳନୀରେ ଯୋଗ ଦେବାକୁ ଆସିଥିଲେ । ଭାରତ ବାହାରୁ ପ୍ରତିନିଧି ଆସିଥିଲେ । ଓଡ଼ିଶା ଭିତରୁ ମଧ୍ୟ ଆସିଥିଲେ । ସେମାନେ ସମସ୍ତେ ପ୍ରବନ୍ଧ ଲେଖି ଆଣିଥିଲେ । ସେମିନାର୍ ଗୁଡ଼ିକରେ ସେଗୁଡ଼ିକର ଉପସ୍ଥାପନା କଲେ । ପ୍ରସ୍ତୁତ ପ୍ରବନ୍ଧ ଗୁଡ଼ିକ ଉପସ୍ଥିତ ଆହୁରି କେତେ କେତେ ପଣ୍ଡିତଙ୍କ ଦ୍ୱାରା ଆଲୋଚିତ ହେଲା । ବୌଦ୍ଧଧର୍ମ ଓ ଜୈନଧର୍ମର ଦୁରୂହ ସତ୍ୟଗୁଡ଼ାକ ସେମିନାର୍‌ର ମଣ୍ଡପଟି ଉପରେ ସତେଅବା ଏକାବେଳେକେ ହାତ ପାଆନ୍ତାରେ ଆସି ମିଳିଗଲା ପରି ଲାଗିଲା । ବୁଦ୍ଧିର ଦାନ୍ତଗୁଡ଼ାକ ଆହୁରି ପୋଖତ ହୋଇଗଲା ପରି ମନେହେଲା । ଯାହା ବୁଝି ହେଉ ନଥିଲା, ସେଗୁଡ଼ାକ ବୁଝି ହୋଇଗଲା ପରି ଲାଗିଲା । ତଥ୍ୟର ଅରଣ୍ୟରେ ବାଟ ମିଳିଗଲା ପରି ଲାଗିଲା ଏବଂ ସେହି ବାଟ ଉପରେ ହୁଏତ ନୂଆ ସାଥୀମାନେ ବି ମିଳିଗଲେ । ମୋଟ ଉପରେ, ଯେତେବେଳେ ସେମିନାର୍‌ର ଗହଳ ଭାଙ୍ଗିଲା, ସେତେବେଳେ ସମସ୍ତେ ଅଧିକ ଖୁସି ହୋଇ ଘରକୁ ଗଲେ, ସତେଅବା ଅଧିକ ସମୃଦ୍ଧ ହୋଇ ଘରକୁ ଗଲେ; ଏହିଭଳି ସେମିନାର୍‌ମାନ ଅଧିକରୁ ଅଧିକ ସଂଖ୍ୟାରେ ହେଉଥାଉ ଓ ଏହିପରି ପଙ୍ଗତମାନ ଅଧିକରୁ ଅଧିକ ଅନୁମୋଦନ ସହିତ ବସୁଥାଉ ବୋଲି ଶୁଭ ମନାସି ସେମାନେ ଓଡ଼ିଶାରୁ ଗଲେ । ଏଠି ଓଡ଼ିଶାରେ ଏଭଳି ଗୋଟିଏ ସମାରୋହ ସମ୍ଭବ ହୋଇ ପାରିଲା ବୋଲି ସେମାନେ ଓଡ଼ିଶାବାସୀଙ୍କ ଉଦ୍ଦେଶ୍ୟରେ କୃତଜ୍ଞତା ଜଣାଇ ଗଲେ, ଅର୍ଥାତ୍, ଏହି ସେମିନାର୍‌ଟି ଦ୍ୱାରା ସମ୍ପୃକ୍ତ ସମସ୍ତଙ୍କର ସେର ପୂରିଲା, ମାଣ ପୂରିଲା, ଜ୍ଞାନଗତ ଗୁଜରାଣ ବି ମେଣ୍ଟିଲା; କେତେ ନା କେତେ କଲ୍ୟାଣ ହେଲା ।

ଇତିହାସର ଖାତାରେ ବୌଦ୍ଧଧର୍ମ ଓ ଜୈନ-ଧର୍ମର ଆବିର୍ଭାବ ହୋଇଥିଲା, ମହାବୀର ଜୈନଙ୍କର ବି ଆବିର୍ଭାବ ହୋଇଥିଲା । ଧର୍ମରେ ବିଚରଣକୁ ହିଁ ଯଦି ଧର୍ମର ସବୁଠାରୁ ବଡ଼ କଥା ବୋଲି ଗ୍ରହଣ କରାଯାଏ, ତେବେ ଗୋଟିଏ ଧର୍ମ ହିସାବରେ ବୌଦ୍ଧ ଧର୍ମ ଓ ଜୈନଧର୍ମ ଆମର ଏଠି ଅଥବା ଅନ୍ୟ କେଉଁଠି ପ୍ରଚାରିତ ହେବା ଆଗରୁ ବୁଦ୍ଧଦେବ ଓ ମହାବୀର ଜିନ ଏକ ନୂତନ ଜୀବନସାହସର ବାର୍ତ୍ତାବହ ହୋଇ ଆମରି ଏହି ଧରାପୃଷ୍ଠରେ ବିଚରଣ କରିବାକୁ ଆସିଥିଲେ । ଜୀବନର ବାର୍ତ୍ତାଗୁଡ଼ିକୁ କୌଣସି

ସୂତ୍ରାୟଭ ପରିବେଢ଼ଣ ଦେଇ ସେମାନେ ସେଥିରୁ କୌଣସି ପ୍ରକାର ଧର୍ମଟିଏ ଅର୍ଥାତ୍ ଛାଞ୍ଚଟିଏ ତିଆରି କରିବା ଲାଗି ଆଦୌ କୌଣସି ପ୍ରୟାସ କରି ନ ଥିଲେ । ସେମାନେ ଆପଣାର ବାର୍ତ୍ତାଟିକୁ ବଞ୍ଚାଇଥିଲେ । ବୁଦ୍ଧଦେବଙ୍କର ଯାତ୍ରାଟି ବନ୍ଦ ହୋଇଗଲା ପରେ, ଅର୍ଥାତ୍ ତାଙ୍କର ମହା-ପରିନିର୍ବାଣ ପରେ ଯାଇ ତାଙ୍କର ଅନୁଗାମୀମାନେ ସେଥିରୁ ନାନା ଯାନର ଭିଆଣ କରାଇଲେ । ମହାବୀର ଏଠୁ ବିଦାୟ ନେଇ ଚାଲିଗଲା ପରେ ଯାଇ ତାଙ୍କରି ସନ୍ତକଟାକୁ ଯୋଡ଼ି ଧର୍ମର ମାର୍ଗଗୁଡ଼ାକୁ ଚିହ୍ନାଇବା ସକାଶେ ନାନା ଅମ୍ବରର ବିବଖାଣ ହେଲା । ଏ ଅମ୍ବର ସେ ଅମ୍ବରଠାରୁ ଅଲଗା ହୋଇଗଲେ, ଏ ଯାନ ସେ ଯାନଠାରୁ ଆବଶ୍ୟକ ପଡ଼ିଲେ ପ୍ରାୟ ବିପରୀତମୁହାଁ ହୋଇ ପରସ୍ପରର ପରିଚୟ ଦେଲେ; ବାଦରୁ ବିବାଦମାନ ଭିଆଇଲେ । ହୁଏତ ଯାତ୍ରା ବିଲକୁଲ ବନ୍ଦ ହୋଇଗଲା ପଛକେ, ମାତ୍ର ଯାନଗୁଡ଼ାକ ସତେଅବା କେଉଁ ପ୍ରଦର୍ଶନୀ ପଡ଼ିଆରେ ଯୁଗାନୁକ୍ରମିକ ଭାବରେ ଆପଣାର ଧ୍ୱଜାଗୁଡ଼ାକୁ ମୁଣ୍ଡରେ ବାନ୍ଧି ଓ ଶଙ୍ଖଗୁଡ଼ାକୁ ତୁଣ୍ଡରେ ଲଗାଇ ଉତ୍ତର-ପୁରୁଷମାନଙ୍କର ଅଧ୍ୟୟନ ଲାଗି ମହଜୁଦ ହୋଇ ରହିଲେ, ପଣ୍ଡିତମାନଙ୍କର ଆଙ୍ଗୁଠି-ସ୍ପର୍ଶ ପାଇ ଶାପମୁକ୍ତ ହେବାଲାଗି ସତେଅବା ଗୁଡ଼ାଏ ପଥର ହୋଇ ଅପେକ୍ଷା କରି ରହିଲେ । ବୁଦ୍ଧ ଇତିହାସ ହେଲେ, ମହାବୀର ଇତିହାସ ହେଲେ, ଧର୍ମଗୁଡ଼ାକ ଖୋଳପରି ସାଇତା ହୋଇ ରହିଲେ, ଶିକାଗୁଡ଼ାକ ପରି କେବଳ ଐତିହ୍ୟ ହୋଇ ରହିଲେ; ସଂସ୍କୃତି କହିଲେ ପଣ୍ଡିତମାନେ ସଚରାଚର ଯେଉଁ ଚର୍ବଣ ଓ ପୁନଃଚର୍ବଣକୁ ବୁଝିଥାଆନ୍ତି, ପ୍ରଧାନତଃ ସେଗୁଡ଼ାକ ଲାଗି ସୁନା ଓ ରୁପାର ତାଳାରେ ସଜାହୋଇ ରହିଥିବା ଅର୍ହ୍ଣଣିଆ ହୋଇ ରହିଲେ ।

ବୌଦ୍ଧଧର୍ମ ଓ ଜୈନଧର୍ମର ଉପାଖ୍ୟାନଗୁଡ଼ାକୁ ମନେ ପକାଇ ଆମେ ଓଡ଼ିଶାରେ ନିଜକୁ ସତେଅବା କେଡ଼େ ଭାଗ୍ୟଶାଳୀ ବୋଲି ମନେ କରିଥାଉ । ଖାଲି ଧଉଳି ପାହାଡ଼ର ଯୁଦ୍ଧପଡ଼ିଆକୁ ମନେ ପକାଇ ନୁହେଁ, ଆମର ପିଣ୍ଡଦିଅଁ ଦେବଦେବ ଜଗନ୍ନାଥଙ୍କୁ ମନେ ପକାଇ ମଧ୍ୟ ଆମେ ନିଜକୁ ଅନେକ ସମୟରେ କେଡ଼େ ଭାଗ୍ୟଶାଳୀ ବୋଲି ଅନୁଭବ କରିଥାଉ । ମହାବୀର ସ୍ୱୟଂ ଆମର ଏହି ଓଡ଼ିଶାଖଣ୍ଡକୁ ଆସିଥିଲେ । ତେଣୁ ଓଡ଼ିଶାର ଭୂଇଁ ତାଙ୍କର ଚରଣ ସ୍ପର୍ଶ ଲାଭ କରିଥିଲା ଓ ଧନ୍ୟ ହୋଇଥିଲା । ଅର୍ଥାତ୍ ସେହି ଦିନରୁ ଜୈନଧର୍ମ ଓଡ଼ିଶାର ଆପଣାର ଧର୍ମ ହୋଇ ରହିଲା, ଆମ ଭିତରଘରେ ଆମର ବଡ଼ବଡ଼ୁଆ ହୋଇ ରହିଥିଲା । ଅଗ୍ରଜିନ ଅର୍ଥାତ୍ କଳିଙ୍ଗଜିନ ସର୍ବପ୍ରଥମେ ଏହି କଳିଙ୍ଗରେ ହିଁ ପୂଜା ପାଉଥିଲେ । କଳିଙ୍ଗ ଜିନ ହିଁ ଅଗ୍ରଜିନ ଥିଲେ, ଅର୍ଥାତ୍ ଜିନଙ୍କ ମଧ୍ୟରେ ସର୍ବାଗ୍ର ଥିଲେ । ମଗଧର ନନ୍ଦବଂଶୀ ରାଜାମାନେ କଳିଙ୍ଗ ଆକ୍ରମଣ କରି ଖାଲି ରାଜ୍ୟ ଜୟ କରି ନଥିଲେ, ସେ ଅଗ୍ରଜିନଙ୍କୁ ଏଠାରୁ ମଗଧ ନେଇ ଯାଇଥିଲେ । ହୁଏତ ତା'ପରେ କିଛିକାଳ ପର୍ଯ୍ୟନ୍ତ

କଳିଙ୍ଗଜିନ ତାଙ୍କର ଏହି ସ୍ଥାନ-ପରିବର୍ତ୍ତନ ଫଳରେ ମଗଧରେ ମଗଧଜିନ ହୋଇ ପୂଜା ପାଇଥିଲେ । ଏବଂ, ଯଥାସମୟରେ ଖାରବେଳ ଚକ୍ରବର୍ତ୍ତୀ ରାଜା ହେଲେ, ଅପହୃତ ଜୈନ ମୂର୍ତ୍ତିଟିକୁ ଉଦ୍ଧାର କରି ସେ ମଗଧରୁ କଳିଙ୍ଗକୁ ଆଣିଲେ । ଘରର ଇଷ୍ଟଦେବ ଘରେ ପୁନର୍ବାର ଥାପନା ହୋଇ ରହିଲେ ।

ବୁଦ୍ଧଦେବ ସ୍ୱୟଂ ଓଡ଼ିଶାକୁ ଆସି ନ ଥିଲେ ସତ, ମାତ୍ର ଅଶୋକଙ୍କର କଳିଙ୍ଗ-ବିଜୟ ତଥା ବୌଦ୍ଧଧର୍ମରେ ନୂତନ ଦୀକ୍ଷା ଗ୍ରହଣ ପରେ ବୌଦ୍ଧଧର୍ମ ହିଁ କ୍ରମେ ଉତ୍କଳ ବା ଓଡ଼ିଶାର ଦାଣ୍ଡ, ଘର ଓ ବାରି ସବୁଠାରେ ଆସି ପୂରିକରି ରହିଥିଲା । ତା'ପରେ ବେଶ୍ କେତେଟା ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ବୌଦ୍ଧ କିଏ, କେଉଁ ରୀତିଟା ବୌଦ୍ଧ ଓ କେଉଁ ରୀତିଟା ଅବୌଦ୍ଧ, ଏକଥା ନିଶ୍ଚିତ କରି କହିବା ପ୍ରକୃତରେ ବଡ଼ କଷ୍ଟକର ହୋଇ ପଡ଼ିବ । ଇତିହାସକାରମାନେ ଜାତି, ବର୍ଣ୍ଣ, ଭେଦ-ନିରୂପଣର କେତେ ଭାଗ ଓ ମାପ ବାହାର କରି ଯେତେ ଯାହା ବାହାଦୂରୀ ଦେଖାଇ ବାହାରିଲେ ମଧ ଏହି କ୍ଷେତ୍ରରେ ତଥାପି କେବଳ ପରାଜୟ ହିଁ ସ୍ୱୀକାର କରିବେ ଏବଂ ଏହି ମିଶାମିଶିଟା କାଳକ୍ରମେ ଏତେ ବେଶୀ ପ୍ରବଳ ହୋଇପଡ଼ିଲା ଯେ ଅବଶେଷରେ ବୁଦ୍ଧଙ୍କୁ ଜଗନ୍ନାଥଙ୍କ ଭିତରେ ଆସି ଲୀନ ହିଁ ହୋଇଯିବାକୁ ପଡ଼ିଲା । ବୁଦ୍ଧଙ୍କର ନାଆଁ ରହିଲା, ମାତ୍ର ବୁଦ୍ଧତ୍ୱ ଗଲା । ହିନ୍ଦୁ ଧର୍ମର ଜାଲଟା ଭିତରେ ପଡ଼ି ବୁଦ୍ଧ ମହତ ହରାଇଲେ ସତ, ମାତ୍ର ସେ ହିନ୍ଦୁ ଧର୍ମର ନବମ ଅବତାର ରୂପେ ପୂଜା ପାଇଲେ, ହିନ୍ଦୁ ଧର୍ମର ଠାକୁରମାନଙ୍କର ବଂଶାବଳୀ ବହିରେ ତଥାକଥିତ ନବମ ଅବତାର ହୋଇ ରହିଲେ । ଓଡ଼ିଶା ଦେଶକୁ ଆସି ଏହି ଛୁଆଁଗୁଡ଼ାକ ଆହୁରି ଅଧିକ ପରିମାଣରେ ଗୋଳାଇ ହୋଇଗଲା । ଏଠି ନବମ ଅବତାର ବୁଦ୍ଧ ଅବତାର ବାଟ ଦେଇ ଜଗନ୍ନାଥ ଅବତାର ହୋଇ ରହିଲେ । କଳିଯୁଗର ସବୁଯାକ କଳିର ଗୋଟାସୁଦ୍ଧା ସମାଧାନ ହୋଇଗଲା । ଯୁଗ ପରେ ଯୁଗର ଥାପନକର୍ତ୍ତା ଭଗବାନ ଓଡ଼ିଶାରେ ଯେ ଜଗନ୍ନାଥ-ବିଗ୍ରହ ମଧ୍ୟରେ 'ବଉଧ ରୂପ ବହି' ରହିଲେ, ସେ କଥାକୁ ଆମର ଭକ୍ତ କବିମାନେ ଗାଇଲେ, ଆମ ଭକ୍ତ ମନଗୁଡ଼ାକ ସେହି ତତ୍ତ୍ୱଟାକୁ ଏକାବେଳେକେ ଠୋ' କରି ବୁଝିଗଲେ । ବୌଦ୍ଧ ଧର୍ମର ଅସଲ ବାରୁଦଟିକୁ ଜଗନ୍ନାଥଙ୍କ ଦାରୁ ଭିତରେ ଏହିପରି ଭାବରେ ଦାରୁଭୂତ କରି ରଖି ଦିଆଗଲା । ବୌଦ୍ଧଧର୍ମ ଯେ ପ୍ରତିଷ୍ଠିତ ତତ୍କାଳୀନ ଧର୍ମର ଏକ ପ୍ରତିବାଦ ରୂପେ ଆମ ଜୀବନ-ମୂଲ୍ୟାୟନର ଆକାଶରେ ଆସି ଦେଖା ଦେଇଥିଲା, ବୁଦ୍ଧଦେବଙ୍କର ଜୀବନ-ଚରିତ ଯେ ମୂଳତଃ ଏକ ଅନ୍ୟ ପ୍ରେରଣାର ଆହ୍ୱାନ ଏବଂ ଉଦ୍‌ବୋଧନ ରୂପେ ତତ୍କାଳୀନ ସାମାଜିକ ସ୍ଥୂଳକାୟତାଗୁଡ଼ାକୁ ଦୋହଲାଇ ଦେବାକୁ ଆସିଥିଲା, ବୁଦ୍ଧଦେବଙ୍କୁ ଜଗନ୍ନାଥଙ୍କ ଭିତରେ ଆଣି ପୂରାଇ ଦେଇ ଆମେ ବଡ଼ ଚମତ୍କାର ଭାବରେ ସେହି ଆହ୍ୱାନ ଏବଂ ଉଦ୍‌ବୋଧନଗୁଡ଼ାକୁ ଚଳୁ କରି ପକାଇଲୁ; ସବୁକିଛିକୁ

ଆମେ ବେଶ୍ ଶୀତଳ କରିଦେଇ ପାରିଲୁ । ପୁରୁଣା ଆସ୍ଥାନଗୁଡ଼ାକ ଯେମିତି ଥିଲା, ଠିକ୍ ସେମିତି ରହିଲା, ସ୍ଥୂଳକାୟତାଗୁଡ଼ାକ ଆଗରୁ ଯେମିତି ଥିଲା, ପୂର୍ଣ୍ଣ ପ୍ରତାପ ତଥା ମାହାତ୍ମ୍ୟରେ ଠିକ୍ ତାହାହିଁ ହୋଇ ରହିଲା – ଜଗନ୍ନାଥଙ୍କ ଭିତରେ ବୁଦ୍ଧ ଗୋଟାସୁଦ୍ଧା ଗିଳି ହୋଇଗଲେ । ପୁରୁଣା ପରମ୍ପରାଟା ନୂତନଟି ଦ୍ୱାରା କୌଣସି ପ୍ରକାରେ ଚହଲି ଗଲାନାହିଁ କିମ୍ବା ଦୋହଲି ଗଲାନାହିଁ । ମାତ୍ର ଗୋଟାଏ ନୂଆ ନାମକରଣ ଦ୍ୱାରା ପରମ୍ପରା ହିଁ ନୂତନକୁ ଗିଳି ପକାଇଲା । ବୁଦ୍ଧଦେବ କେବଳ ଏକ ନାମ ହୋଇ ରହିଲେ, ନାଆଁ ବୁଡ଼ାଇ ବାନା ଉଡ଼ାଇ ରହିଲେ । ଆମ ଜଗନ୍ନାଥଙ୍କର ପାକୁଆ ପାଟିରେ ସିଏ ସତେଅବା ଏକ ଦାନ୍ତ ହୋଇ ରହିଲେ । ନୀଳାଚଳ-ତୀର୍ଥକୁ ଦନ୍ତ-ତୀର୍ଥ ବୋଲି ଚିହ୍ନାଇ ଦେବାଲାଗି ଉତ୍ସାହୀ ଇତିହାସ-ଠାବକାରୀମାନେ କେତେ କ'ଣ ବଖାଣି ଯାଇଛନ୍ତି । ଜଗନ୍ନାଥ ବିଗ୍ରହଙ୍କର ନାଭିମଣ୍ଡଳରେ ବୁଦ୍ଧଦେବଙ୍କର ଦନ୍ତ ହିଁ କୁଆଡ଼େ ପ୍ରସ୍ଥାପିତ ହୋଇ ରହିଛି ବୋଲି ସେମାନେ କେତେ କେତେ ତଥ୍ୟାନୁମାନକୁ ଜୀବନ୍ୟାସ ଦେବାଲାଗି ଚେଷ୍ଟା କରିଛନ୍ତି । ଜଗନ୍ନାଥଙ୍କ ଭିତରେ ବୁଦ୍ଧଙ୍କର ଦାନ୍ତ ନାହିଁ, ମାତ୍ର କୃଷ୍ଣଙ୍କର ହାଡ଼ ହିଁ ସଂରକ୍ଷିତ ହୋଇ ରହିଛି ବୋଲି ବୈଷ୍ଣବ କିମ୍ବଦନ୍ତୀରେ ଯେଉଁ ଓଲଟା ଅପବାଦଟି ରହିଛି, ସେମାନେ ସେଥିରୁ ମଧ୍ୟ ସମଗ୍ର ପ୍ରସଙ୍ଗଟିର ଅସଲ କୌତୁକଟିକୁ ତଥାପି ଧରିପାରି ନାହାନ୍ତି ।

ଜଗନ୍ନାଥ ହେଉଛନ୍ତି ଦେବତା, ବୁଦ୍ଧଦେବ ଦେବତା ନ ଥିଲେ । ଜଗନ୍ନାଥ ହେଉଛନ୍ତି ଏକ ଐତିହ୍ୟ, ବୁଦ୍ଧଦେବ ପୁରୁଣା ଐତିହ୍ୟକୁ ବଦଳାଇ ତାହା ସ୍ଥାନରେ କେତେକ ନୂତନ ମୂଲ୍ୟାକାଂକ୍ଷାର ପ୍ରବର୍ତ୍ତନ କରିବା ଲାଗି ଇଚ୍ଛା କରିଥିଲେ । ବୁଦ୍ଧଦେବଙ୍କୁ ଭଗବାନଙ୍କର ନବମ ଅବତାର ବୋଲି କହି ଯେପରି ଭାବରେ ଭାରତର ଧର୍ମଗାଦୀଟା ଉପରେ ତାଙ୍କୁ ନେଇ କେବଳ ଗୋଟାଏ ମୂର୍ତ୍ତି କରି ବସାଇ ଦିଆଯାଇଛି, ଠିକ୍ ସେହିପରି ଆମ ଓଡ଼ିଶାରେ ଜଗନ୍ନାଥଙ୍କୁ ମଧ୍ୟ ବଉଧ ବୋଲି କହି କାଳକ୍ରମେ ଜଗନ୍ନାଥଙ୍କ ଭିତରେ ବୁଦ୍ଧଦେବଙ୍କୁ ଆଣି ଗୋଟାସୁଦ୍ଧା ପୋତି ଦିଆଯାଇଛି । ପ୍ରତିଷ୍ଠିତ ସ୍ଥିତାବସ୍ଥାର ପ୍ରତୀକ ବଡ଼ ଠାକୁର ଜଗନ୍ନାଥ ବୌଦ୍ଧ ଧର୍ମ ଓ ବୁଦ୍ଧ ଜୀବନର ଆହ୍ୱାନଟାକୁ ଗୋଟାସୁଦ୍ଧା ଗିଳି ପକାଇଛନ୍ତି । ସେହି ବଡ଼ ଠାକୁରଙ୍କ ମଧ୍ୟରେ ଯେମିତି ଧର୍ମର ନାନା ଶାଖା ଏବଂ ନାନା ସାଧନା ବଳି ପଡ଼ିଛନ୍ତି, ଧର୍ମଜଗତର ନାନା ଆଲୋଡ଼ନ ଯେପରି ତାଙ୍କରି ଭିତରେ କୁଆଡ଼େ ବଳି ପଡ଼ି ରହିଛନ୍ତି, ବୁଦ୍ଧଦେବ ଓ ବୌଦ୍ଧ ଧର୍ମର କ୍ଷେତ୍ରରେ ମଧ୍ୟ ଠିକ୍ ସେହିକଥା ଘଟିଛି । ଅନେକେ ଜଗନ୍ନାଥଙ୍କୁ ଏକ ସମନ୍ୱୟର ପ୍ରତୀକ ବୋଲି କହିଛନ୍ତି, କାରଣ ସେଠି ସକଳ ଧର୍ମଧାରାକୁ କୁଆଡ଼େ ଏକାଠି ବଳି ଗୋଟିଏ ପ୍ରେରଣାରେ ପରିଣତ କରି ରଖିବାର ଏକ ଅବିରାମ ପ୍ରୟାସ ହିଁ ଯୁଗେ ଯୁଗେ ହୋଇ ଆସିଛି ଆସିଛି । ହୁଏତ କେତେକ ସନ୍ଥ ବା କେତେକ ଧ୍ୟାନୀଙ୍କ ଦୃଷ୍ଟି ଭିତରେ ତାହା ବେଳେବେଳେ ସମ୍ଭବ

ହୋଇଛି ଓ ଆମକୁ ବେଳେବେଳେ କିଞ୍ଚିତ୍ ପରିମାଣରେ ଉଦ୍‌ବୋଧିତ ବି କରି ପାରିଛି । ମାତ୍ର ଜଗନ୍ନାଥଙ୍କୁ ଗଣ୍ଠିକରି ଯେଉଁ ପାରମ୍ପରିକ ଧର୍ମାନୁଷ୍ଠାନଟି ସେଠାରେ କାଳାନୁକ୍ରମେ ମୋଟା ହୋଇ ଆସିଛି, ତା' ଭିତରେ କେତେ ନା କେତେ ଧର୍ମ-ପଇତାକୁ ଧଣ୍ଡା ସହିତ ଏକାଠି କରି ଗୁଡ଼ାଇ ଦିଆଯାଇଛି ସତ, ମାତ୍ର ତାହା କାର୍ଯ୍ୟତଃ ସ୍ଥିତାବସ୍ଥାର ହିଁ ପ୍ରତୀକ ହୋଇ ରହିଛି, ସ୍ଥିତାବସ୍ଥାର ଆଉ ଗୋଟିଏ ପ୍ରତୀକ ଆମ ପୁରୀ ରାଜାଙ୍କ ପରି ସେଇଟି ମଧ୍ୟ କେବଳ ଏକ ସମ୍ପତ୍ତିପ୍ରାୟ ହୋଇ ରହିଛି, ସମନ୍ୱୟ ନାମରେ ଏକ ଭୁରୁଡୁ ପରି ହୋଇ ରହିଛି । ଧର୍ମଭାବନାର ପ୍ରସଙ୍ଗ କ୍ଷେତ୍ରରେ ଏବଂ ସେହି ଧର୍ମଭାବନାର ସମ୍ପର୍କ-ଭୂମି ଭିତରେ ବଢ଼ି ଆସିଥିବା ଆମ ଅନେକଙ୍କ ଲାଗି ତାହା ପ୍ରକୃତରେ ଗୋଟିଏ ପ୍ରଶମକ ପରି କାର୍ଯ୍ୟ କରିଛି, ଆମକୁ ଶୁଆଇ ପକାଇବା ସକାଶେ ଏକ ମହୌଷଧି ପରି ବ୍ୟବହୃତ ହୋଇ ଆସିଛି ।

ଭାରତୀୟ ସକଳ ଧର୍ମଧାରା ଜଗନ୍ନାଥଙ୍କ ମଧ୍ୟରେ ଆସି ସମନ୍ୱିତ ହୋଇ ରହିଛି, ଏପରିକି ବୌଦ୍ଧ ଧର୍ମ ଓ ଜୈନ ଧର୍ମର ବିଶେଷ ଉଦ୍‌ବୋଧନଗୁଡ଼ିକୁ ମଧ୍ୟ ଜଗନ୍ନାଥ ଅନୁଷ୍ଠାନ ଆପଣା ଭିତରକୁ ଗ୍ରହଣ କରି ନେଇଛି ଏବଂ ସେହି ସମନ୍ୱୟର ପ୍ରକ୍ରିୟାଟି ମଧ୍ୟରେ ତାହା ସେଗୁଡ଼ିକୁ ମଧ୍ୟ ଭାରି ମହନୀୟ ଭାବରେ ଅଙ୍ଗୀକୃତ କରି ନେଇଛି – ପ୍ରାୟ ଭାବପ୍ରବଣ ହୋଇ ଏସବୁ କହିଲା ବେଳେ କିମ୍ବା ଯୁକ୍ତିପ୍ରମାଣ ଦେଖାଇ ଦାବୀ କରୁଥିବା ବେଳେ ପଣ୍ଡିତ ଓ ଗବେଷକମାନଙ୍କର ସମ୍ଭବତଃ ଆଉ ଟିକିଏ ଅଧିକ ପ୍ରଶସ୍ତ ଓ ଅଧିକ ସମଗ୍ର ଭାବରେ ଚିନ୍ତା କରିବା ଲାଗି ଆଗ୍ରହୀ ହୋଇ ପାରିବା ଉଚିତ । ଜଗନ୍ନାଥଙ୍କର ପୂଜାବିଧି ଭିତରେ ଏହି ବିଧିଟା ତନ୍ତ୍ରରୁ ଆସିଛି, ଏଇଟା ଶୈବମାନଙ୍କଠାରୁ ଆସିଛି, ଏଇଟାକୁ ବୈଷ୍ଣବମାନେ ଦେଇଛନ୍ତି, ସେଇଟା ପ୍ରାକ୍-ଆର୍ଯ୍ୟ ଆଦିବାସୀଙ୍କଠାରୁ ଆସି ଏଠି ମିଶି ଯାଇଛି ଏବଂ ଏଠି ବୌଦ୍ଧ ଧର୍ମ ପଶିଛି, ଏଠି ଶଙ୍କରାଚାର୍ଯ୍ୟ ଅଥବା ରାମାନୁଜଙ୍କର ଅବଦାନ ରହିଛି ଏବଂ ତେଣୁ ଉଲ୍ଲିଖିତ ଏମାନେ ସମସ୍ତେ ଜଗନ୍ନାଥରୂପୀ ସେହି ଗୋଟିଏ ଅନୁଷ୍ଠାନ ମଧ୍ୟରେ ସମନ୍ୱିତ ହୋଇ ରହିଛନ୍ତି, କୋଉଟି ବି ବାଦ ପଡ଼ିନାହିଁ, ସବୁ ଧର୍ମପ୍ରେରଣା ଓ ଧର୍ମପ୍ରବାହର ସୁଖ-ସମାବେଶରେ ଓଡ଼ିଶାର ବଡ଼ଠାକୁର ଏକ ପଟାନ୍ତରହୀନ ସର୍ବସ୍ୱୀକାରୀ ଆଗ୍ରହର ହିଁ ଦ୍ୟୋତକ ହୋଇ ରହିଛନ୍ତି, ସ୍ୱାଗ୍ରହ-ସର୍ବସ୍ୱ ଏକ ବୁଦ୍ଧିର ସାହାଯ୍ୟ ନେଇ ପ୍ରାୟ ଏକ ଦାମ୍ଭିକତା ସହିତ ସ୍ୱସମ୍ପତ୍ତିଟି ପ୍ରତି ରହିଥିବା ଆମର ଅତିରିକ୍ତ ଶ୍ରଦ୍ଧାଳୁତାଗୁଡ଼ାକୁ ପ୍ରକଟ କରି ସେଇଥିରେ ହିଁ ମୁଗ୍ଧ ହୋଇ ରହିଯିବାକୁ ଚେଷ୍ଟା କଲାବେଳେ ଆମେ ଏକାବେଳେକେ ଗୋଟାଏ ଅନ୍ୟ ଆଗ୍ରହ ଭିତରେ ଗୋଟାସୁଦ୍ଧା ଚେତନାହତ ହୋଇ ରହିଯିବାକୁ ଏବଂ ତଦ୍ୱାରା ପ୍ରତିଷ୍ଠିତ ଅଧିବ୍ୟବସ୍ଥାଟାର ଆଁ ଭିତରେ ଗୋଟାସୁଦ୍ଧା ପଶି ରହିବାକୁ ଏକ ପ୍ରୟାସ କରୁଥାଉ କି ? ଆମ ଜଗନ୍ନାଥଙ୍କ ଭିତରେ

ତାନ୍ତ୍ରିକ ପଶିଲା, ଶୈବ ପଶିଲା, ବୈଷ୍ଣବ ପଶିଲା, ଦ୍ୱୈତ ପଶିଲା, ଅଦ୍ୱୈତ ପଶିଲା – ଏବଂ ଶେଷରେ ବୌଦ୍ଧ ଓ ଜୈନ ବି ଆସି କୁଆଡ଼େ ପଶିଲା – ମାତ୍ର ତଥାପି ଜଗନ୍ନାଥ କାଳକାଳର ବରାଦଟି ଅନୁସାରେ ଯେଉଁ ଠାକୁର ହୋଇ ରହିଥିଲେ, ଠିକ୍ ସେହି ଠାକୁରଟି ହୋଇ ରହିଲେ, ଅନ୍ୟ ମୂଲ୍ୟ ଓ ଅନ୍ୟ ଯାବତୀୟ ସମ୍ଭାବନାର ତରଙ୍ଗଗୁଡ଼ାକୁ ସିଏ କୁଆଡ଼େ ନିଜର ଉଦର ଭିତରକୁ ଲେହନ କରି ନେଇଗଲେ, ଶ୍ରୀକ୍ଷେତ୍ରକୁ ସତେଅବା ଗୋଟାଏ ଗାଦିକ୍ଷେତ୍ରରେ ପରିଣତ କରି ରଖିଲେ, ପୁରୀର ଅନେକ ମଠ ଭିତରେ ନିଜେ ବି ଗୋଟାଏ ବଡ଼ ମଠରେ ପରିଣତ ହୋଇ ରହିଗଲେ–ଏକଥା କିପରି ହେଲା, କାହିଁକି ବା ହେଲା ? ଯାତଗୁଡ଼ାକ ଯେମିତି ଥିଲା, ସେମିତି ରହିଗଲା; ଜାଗିରିଗୁଡ଼ାକ ବି ଯେମିତି ଥିଲା ସେମିତି ରହିଲା, ଷାଠିଏ ପଉଟି ଭୋଗ ରହିଲା, ମୁକ୍ତି ମଣ୍ଡପ ରହିଲା, ପଣ୍ଡାମାନଙ୍କର ରାଜତ୍ୱ ରହିଲା, ଦଇତାପତି ଓ ସୁଆରଙ୍କଠାରୁ ଆରମ୍ଭ କରି ରାଜାଙ୍କ ପର୍ଯ୍ୟନ୍ତ ଯିଏ ଯେଉଁଠି ଥିଲେ ସେଇଠି ଜବର ହୋଇ ରହିଲେ, ଠିକ୍ ସେହିପରି ରହିଲେ । ସମନ୍ୱୟ କ'ଣ ଏହିପରି ହୁଏ ? ସମନ୍ୱୟରେ କ'ଣ ପୁରୁଣାଟା ଆଗରୁ ଯେମିତି ଥାଏ କାଳକାଳକୁ ଠିକ୍ ସେମିତି ହୋଇ ରହିଥାଏ ? ସମନ୍ୱୟ କ'ଣ ଗୋଟାଏ ବାଘ ବା ସିଂହର ମୁହଁ, ଯାହାର ପାଟି ଭିତରେ ବହିରାଗତ ଯାବତୀୟ ପ୍ରବର୍ତ୍ତନ ଓ ପ୍ରକରଣ କେବଳ କୁଆଡ଼େ ଗିଳି ହୋଇ ରହି ଯାଆନ୍ତି, କୁଆଡ଼େ କେତେ ଦୂରରେ ସେହି ଉଦର ଭିତରେ ଗୋଟାଏ ଦାନ୍ତ ହୋଇ ରହିଯାଆନ୍ତି ? ଆମ ଜାତୀୟତାଯୁଗର ଜଗନ୍ନାଥଙ୍କ ମୁଣ୍ଡରେ ସମନ୍ୱୟ ନାମକ ଏହିପରି ଗୋଟାଏ ଜଟାମୁକୁଟ ପିନ୍ଧାଇ ଦେଇ ଏବଂ ତାଙ୍କ ଉପରେ ତଦନୁରୂପ ଏହିପରି ଗୋଟିଏ ନେତ ଉଡ଼ାଇ ଦେଇ ହୁଏତ ଆମର ବିହ୍ୱଳ-ଦୃଷ୍ଟି ଅନେକଙ୍କୁ କୃତକୃତ୍ୟ ଓ ପୂର୍ଣ୍ଣକାମ ହୋଇ ରହିବାର ଏକ ପଳାୟନପଥ ବେଶ୍ ମିଳି ଯାଇପାରେ, ଶାନ୍ତ ଓ ଶୀତଳ ହୋଇ ରହି ତଥାପି ନିଜକୁ ଭାବଗଦ୍‌ଗଦ ହୋଇ ରହିଥିବା ପରି ଗୋଟାଏ ଭ୍ରମାବେଶର ଆଳ ଓ ଦାୟିତ୍ୱ-ମୁକ୍ତି ବି ମିଳି ଯାଇପାରେ ସତ, ମାତ୍ର ସାମ୍ପ୍ରତିକ ପୃଥିବୀ ଜାତୀୟତାବାଦର ଯାବତୀୟ ଅତିରିକ୍ତତା ଏବଂ ଅନାବଶ୍ୟକତା ମଧ୍ୟରୁ ମୁକ୍ତ ହୋଇ ମଣିଷର ହୃଦୟ ପାଖକୁ ଫେରି ଆସୁଥିବା ସମୟରେ ଓ ଜୀବନର ଭାବମୟ ଯାବତୀୟ ଆକୃତିକୁ ଏକ ନୂତନ ପରିଧି, ନୂତନ ବ୍ୟଞ୍ଜନା ଏବଂ ନୂତନ ଆବେଦନ ଯୋଗାଇ ଦେବାକୁ ଯାଉଥିବା ସମୟରେ ଆମେ କ'ଣ ଆମର ଜ୍ଞାନ, ଅନ୍ୱେଷଣ, ଉପାସନା ଓ ଉପନୟନର ସେହି ପୁରାତନ ରତି ଏବଂ ପୁରାତନ ରୀତିଚିତି ମଧ୍ୟରେ ସେହି ଆଗ ପରି ଲଟରପଟର ହେବାରେ ଲାଗିଥିବା ?

ଧର୍ମ ହେଉଛି ଏକ ଉପଲବ୍ଧିର ବସ୍ତୁ, ଉତ୍ତରୋତ୍ତର ଯାତ୍ରାର ଏକ ପ୍ରତୀକ । ଗୌତମ ବୁଦ୍ଧ ଏକ ସତ୍ୟର ଉପଲବ୍ଧି କରିଥିଲେ । ଅର୍ଥାତ୍, ଯେଉଁ ଅବିନଶ୍ୱର ସତ୍ୟ

ମନୁଷ୍ୟର ଜୀବନକୁ କାଳାଧୀନ ଓ କାଳାତୀତ କେତେ ପ୍ରସ୍ଥ ଯୋଗାଇ ଦେଇ ସତତ ପ୍ରେରିତ କରିନେବାରେ ଲାଗିଛି, ଯାହା ଜୀବନକୁ କେତେ କେତେ ସମ୍ଭାବନା ଓ ସାମର୍ଥ୍ୟର ଉଦ୍‌ବୋଧନ ଦେଇ ଯାଇଛି, ସେହି ତତ୍‌କାଳୀନ ଯୁଗଟିର ପୃଷ୍ଠଭୂମି ତଥା ଆବଶ୍ୟକତା ଉପରେ ଗୌତମ ବୁଦ୍ଧ ସେହିପରି ଏକ ଅନାବିଷ୍କୃତ ଦିଗକୁ ଉଦ୍‌ଘାଟିତ କରି ଆଣିଥିଲେ । ସିଏ ବୋଧି ଲାଭ କରିଥିଲେ । ତାଙ୍କର ଜୀବନ ହିଁ ତାଙ୍କର ସନ୍ଦେଶରେ ପରିଣତ ହୋଇଥିଲା । ତାଙ୍କ ମୁଖରୁ ନିଃସୃତ ପ୍ରତ୍ୟେକଟି କଥା କେବଳ ତାଙ୍କର ଜୀବନୋପଲବ୍ଧ ଦୃଷ୍ଟିସମ୍ପଦ ଗୁଡ଼ିକୁ ହିଁ ପ୍ରକଟ କରି ଦେଉଥିଲା । ତାଙ୍କର ଉକ୍ତି ତଥା ଉପଦେଶଗୁଡ଼ିକ ଯୁଗର କାନକୁ ଅଭିନବ ଶୁଭିଲା । ଏକ ଅଭୂତପୂର୍ବ ଉଦ୍ଦୀପନା ଆଣି ଦେଲା । କାରଣ ସେତେବେଳେ ହୁଏତ ଖାସ୍ ସେହି ଉଦ୍‌ଘାଟନଟିର ହିଁ ଆବଶ୍ୟକତା ରହିଥିଲା, ଠିକ୍ ତାହାରି ମୁହୂର୍ତ୍ତଟି ଆସି ଉପସ୍ଥିତ ହୋଇଥିଲା । ବୁଦ୍ଧଦେବ ଯୁଗପୁରୁଷ ହେଲେ । ତାଙ୍କରି ଭାଷା ଦେଇ ଯୁଗ କଥା କହିଲା, ତାଙ୍କରି ପାଦରେ ଯୁଗ ଆଗକୁ ପାଦ ପକାଉଥିବା ପରି ଅନୁଭବ କଲା । ଆପଣାର ଯୁଗରେ ବୁଦ୍ଧଦେବ ଜଣେ ଯୁଗନ୍ଧର ରୂପେ ସିଦ୍ଧ ହେଲେ । ସିଏ କୌଣସି ଧର୍ମର ପ୍ରଚାର କରି ନଥିଲେ, ସଂଘ ନାମରେ ସେ କୌଣସି ବିଚ୍ଛିନ୍ନ ସମ୍ପ୍ରଦାୟ-ବୋଧ ଲାଗି କୌଣସି ଅଶୁଭ ଉତ୍ସାହର ଅବତାରଣା କରି ନଥିଲେ । ସିଏ ଦୀପଟିଏ ହୋଇ ଜଳି ଉଠିଥିଲେ, ଆପଣାର ଦୀପଟିକୁ ଆପେ ସଜ କରିଥିଲେ ଏବଂ ତାଙ୍କର ଶିଷ୍ୟବର୍ଗଙ୍କ ସମେତ ଆମ ସମସ୍ତଙ୍କୁ ଆତ୍ମଦୀପ ହେବାର ସାଧନା କରିବା ଲାଗି ପ୍ରେରଣା ଦେଇଥିଲେ ।

ବୁଦ୍ଧଦେବଙ୍କ ପରେ ବୌଦ୍ଧ ସଙ୍ଘାରାମମାନ ବଢ଼ିଲା । ଅନେକ ସମୟରେ ଚକ୍ରବର୍ତ୍ତୀ ରାଜାମାନେ ସେସବୁ ସଙ୍ଘାରାମର ପୃଷ୍ଟପୋଷକ ବନିଲେ । ଗୌତମ ବୁଦ୍ଧ ତ ତାଙ୍କ ନିଜ ବାଟରେ ଯିବେ ବୋଲି ହିଁ ନିଜ ରାଜ୍ୟ ଛାଡ଼ିଥିଲେ, ଯାହା ଏଣିକି ନୂତନ [illegible] ପୃଷ୍ଟପୋଷକମାନେ ଆପଣା ଆପଣା ରାଜ୍ୟରେ ହିଁ ରହିଲେ, ତଥାପି [illegible] ରହିଲେ, ଶାସକ ଓ ସ୍ୱାମୀ ହୋଇ ରହିଲେ । ବୁଦ୍ଧଙ୍କ ନାମରେ ସେମାନେ ଅନୁଶାସନ ଖୋଳାଇଲେ, ସ୍ତମ୍ଭମାନ ଗଢ଼ାଇଲେ, ପଣ୍ଡିତ ଲଗାଇ ଓ ଭିକ୍ଷୁମାନଙ୍କ ସଙ୍ଘ ଦେଇ ସୂତ୍ରଗୁଡ଼ିକୁ ଗଣ୍ଠି ସରି କରି ବାନ୍ଧିଲେ । ସେମାନେ ବୌଦ୍ଧ ଧର୍ମକୁ ଗଢ଼ିଲେ । ବୌଦ୍ଧ ଧର୍ମର ପ୍ରଚାର ହେଲା, ପ୍ରସାର ହେଲା । ଯିଏ ଶୀଳବ୍ରତଗୁଡ଼ିକୁ ମାନିବ, ସେଇ ବୌଦ୍ଧ ବୋଲାଇବ; ପାତିମୋକ୍ଖର ପଥରେ ଯିଏ ଦୃଢ଼ ରହିବ, ସେଇ ବୌଦ୍ଧ ବୋଲାଇ ପାରିବ; ତାହାହିଁ ରୀତି ହେଲା । ଚାହୁଁ ଚାହୁଁ ବାନାଗୁଡ଼ାକ ଗଗନ-ମଣ୍ଡଳକୁ ଛୁଇଁ ଦେଲା । ନିୟମ-ପାଳନଟା ଉପରେ ଅତିରିକ୍ତ ଗୁରୁତ୍ୱ ଦେଇ ଧର୍ମରେ ଅସଲ ଉପଲବ୍ଧି-ଭାଗଟିର ମହତ୍ତ୍ୱକୁ କ୍ରମେ ଗୌଣ, ହ୍ରାସ ଓ ତା'ପରେ ନାକଚ କରି ଦିଆଗଲା ଏବଂ ହୁଏତ ତାହାରି ଫଳରେ ଏହାର ଯାବତୀୟ ଭାଗରେ ମଧ୍ୟ ଏକ ଶକ୍ତିହୀନତା ଆସି ଘୋଟିଗଲା । ସକଳ ଆଡ଼ମ୍ବର ସତ୍ତ୍ୱେ ଏହି ଶକ୍ତିହୀନତା ଘୋଟିଗଲା ।

ବୁଦ୍ଧଦେବ ପୂଜା ପାଇଲେ, ପ୍ରସ୍ତର ମୂର୍ତ୍ତିର ନିଦା ପ୍ରତିକୃତି ହୋଇ ବସିଲେ, ପାଞ୍ଚ ପାଞ୍ଚ ଜନ୍ମରେ ତାଙ୍କ ଦ୍ୱାରା ଗୃହୀତ ଦେବ-ରୂପ ଏବଂ ସେମାନଙ୍କର ଦେବ-ପତ୍ନୀମାନଙ୍କର କଳ୍ପନା କରାଗଲା । ବୁଦ୍ଧ-ପ୍ରେରଣା ଅବନତ ଓ ଅବମାନିତ ହୋଇ ରହିଲା । ବୌଦ୍ଧ ଧର୍ମ ଦେଶ ଡେଇଁ ବିଦେଶକୁ ଗଲା, ହିମାଳୟ ପର୍ବତକୁ ପାର ହୋଇଗଲା । ଯେ ଦେଶ ଗଲା, ସେ ଫଳ ଖାଇଲା । କେତେ ରୂପରେ ସଖୀ ହୋଇ ନାଚିଲା ଏବଂ ସେହି ଅନୁସାରେ ଯଥୋପଯୋଗୀ ଶାସ୍ତ୍ରଗୁଡ଼ିକ ପ୍ରଣୟନ କରିବା ଲାଗି ଦିଗ୍‌ଗଜ ପଣ୍ଡିତମାନେ ମଧ୍ୟ ସତେଅବା ମହଜୁଦ୍ ହୋଇ ରହିଥିଲେ ।

ଲୋକ-ସ୍ତରକୁ ଆସି ବୌଦ୍ଧଧର୍ମ ଏବଂ ବୁଦ୍ଧଜୀବନର ପ୍ରେରଣା ପ୍ରଧାନତଃ ଏକ ନିୟମ ଓ ନିର୍ଘଣ୍ଟକୁ ମାନିବାରେ ହିଁ ସୀମାବଦ୍ଧ ହୋଇ ରହିଲା । ଯେଉଁମାନେ ଭଗବାନଙ୍କୁ ଏହି ରୂପରେ ପୂଜା କରନ୍ତି, ଜପରେ ଅମୁକ ନାମଟିକୁ ବ୍ୟବହାର କରନ୍ତି, ଅମୁକ ନିୟମଗୁଡ଼ାକୁ ମାନନ୍ତି, ସେମାନେ ହେଉଛନ୍ତି ବୌଦ୍ଧ । ସେମାନେ ହିନ୍ଦୁ ନୁହନ୍ତି, କାରଣ ହିନ୍ଦୁମାନେ ଅନ୍ୟ ରୂପରେ ଉପାସନା କରନ୍ତି, ଅନ୍ୟ ନାମର ଜପ କରନ୍ତି, ଅନ୍ୟ ନିୟମ ମାନନ୍ତି, ଇତ୍ୟାଦି ଇତ୍ୟାଦି । ଠିକ୍ ସେହିପରି ବୁଦ୍ଧିବାଦୀମାନଙ୍କର ସ୍ତରକୁ ଆସି ବୌଦ୍ଧ ଧର୍ମ ଏକ ଗବେଷଣା ଅର୍ଥାତ୍ ଘଣ୍ଟାଘଣ୍ଟିରେ ପରିଣତ ହେଲା । ବୁଦ୍ଧ-ଜୀବନର ଆହ୍ୱାନଟି ସମ୍ପୃକ୍ତ ଗବେଷକକୁ ଆଦୌ କୌଣସି ପ୍ରକାରେ ପ୍ରେରିତ କିମ୍ବା ଉଦ୍ୟତ ନ କରୁ ପଛକେ, ମାତ୍ର ଗବେଷଣା ଅତ୍ୟନ୍ତ ଚମତ୍କାର ଭାବରେ ହୋଇପାରିବ ବୋଲି ନିଷ୍ପାପର ଭାବରେ ବିଶ୍ୱାସ କରାଗଲା । ଗଦା ଗଦା ବହି ଆସିଲା, କୁଢ଼ କୁଢ଼ କାଗଜ ଖରଚ ହେଲା, ଜ୍ଞାନର ପାଳଗଦାଗୁଡ଼ାକ ଜ୍ଞାନ-ଘରର ଶୋଭା ବଢ଼ାଇଲେ, ଗବେଷକର ପୁଚ୍ଛ ଓ ସନ୍ତକଗୁଡ଼ାକୁ ଯାହାକୁ ଯେତେ ବଢ଼ାଇଲେ । ସମ୍ପୂର୍ଣ୍ଣ ନିର୍ଲିପ୍ତ ଭାବରେ ଗବେଷଣା ଚାଲିଲା – ତାହା ଏକାନ୍ତ ବିଜ୍ଞାନସମ୍ମତ ହୋଇ ଚାଲୁଥିବାରୁ ସବୁ ପ୍ରକାର ମାଟିରେ ଚାଲିପାରିଲା । ଅଧିକାରୀର ସକଳ ସଂଜ୍ଞାକୁ ଗୁଳି ମାରି ଦିଆଗଲା । ପୂର୍ବେ ପ୍ରଥମେ ଅଧିକାରିତ୍ୱକୁ ଅର୍ଜନ କରି ତା'ପରେ ଯାଇ ଶାସ୍ତ୍ର-ପ୍ରବେଶ ହେଉଥିଲା, ଏଣିକି ଆଗ ଶାସ୍ତ୍ରଟାଏ ଲେଖିଦେଇ ଅଧିକାରିତ୍ୱର ଦାବୀ କରାଯାଇ ପାରିଲା ।

ଗୌତମ ବୁଦ୍ଧଙ୍କର ଜୀବନ କ୍ରମେ ଅନ୍ତରାଳକୁ ଚାଲିଯିବା ସଙ୍ଗେ ସଙ୍ଗେ ବୌଦ୍ଧ ଧର୍ମରେ ତାର୍କିକମାନେ ପଶିଲେ, ସେମାନେ ଆପଣାକୁ ଦାର୍ଶନିକ ବୋଲି ସାବ୍ୟସ୍ତ କଲେ । ଖୋଲି ତାଡ଼ି ଗୋଟାଏ ଦୃଷ୍ଟି ଓ ଗୋଟାଏ ଉପଲବ୍ଧିକୁ କେତେ ନା କେତେ ପ୍ରକାରର ତଥାକଥିତ ଦର୍ଶନରେ ସେମାନେ କେତେ ଭାଗ କରିଦେଲେ । ସେମାନେ ପରସ୍ପରଠାରୁ ଅଲଗା ହୋଇଗଲେ । ପରସ୍ପର ସହିତ ବାକ୍‌ଯୁଦ୍ଧ ଲଢ଼ିଲେ । ଅନ୍ୱେଷଣ କରିବା ଅପେକ୍ଷା ସାବ୍ୟସ୍ତ କରି ଅନ୍ୟକୁ ପରାସ୍ତ କରିବାଟା ହିଁ ଅଧିକ ସ୍ୱୀକୃତି ଲାଭକଲା । ଆମ ଭାରତବର୍ଷର ଶାସ୍ତ୍ର

ଅନୁସାରେ ଭଗବାନ୍ କୁଆଡ଼େ ପ୍ରଥମେ ଏକ ଥିଲେ, ସିଏ ପରେ ଅନେକ ହେଲେ । ଆମ ଇତିହାସର କଥା ଅନୁସାରେ ଏଠାରେ ପ୍ରଥମେ କୁଆଡ଼େ କେବଳ ଚାରୋଟି ଜାତି ଥିଲେ, ଚାରିରୁ କାଳକ୍ରମେ ଚାରିଶହ ହେଲେ । ହୁଏତ ସେହିପରି ଆମର ଏଠି ଧର୍ମ ମଧ୍ୟ ଏକରୁ ଅନେକ ହୋଇଥିବ । ଏକରୁ ଅନେକ ହେବାପାଇଁ ଆମ ଭଗବାନଙ୍କୁ ଭଲ ଲାଗିଥିବା ପରି ଆମକୁ ମଧ୍ୟ ଧର୍ମର ଗୋଟିଏ ଡାଳକୁ ଅନେକ ଡାଳରେ ବାଣ୍ଟିକୁଣ୍ଟି କଳହ କରିବାକୁ ଭାରି ସୁହାଇଲା । ତଦ୍ୱାରା ଆମର ପାଣ୍ଡିତ୍ୟଗୁଡ଼ାକ ପ୍ରଖରତା ଲାଭ କଲା, ଆମ ଘରର ଝରକାଗୁଡ଼ାକ ଦେଇ ପ୍ରବେଶ କରିବା ଲାଗି ବାହାର ସଂକ୍ରମଣର ଆଉ କୌଣସି ଜୁ' ରହିଲା ନାହିଁ; ଆମେ ସମସ୍ତେ ନିଜ ନିଜର ମାର୍ଗରେ ଅଜେୟ ହୋଇ ରହିଲୁ, ଆମ ଦେବଦେବୀମାନଙ୍କ ପରି ଗୋଟିଏ ଗୋଟିଏ ନିଦା ପଥର ହୋଇ ରହିଲୁ ।

ପ୍ରତ୍ୟେକ ଧର୍ମ ହେଉଛି ମୂଳତଃ ଜୀବନ-ଧର୍ମ । ପ୍ରତ୍ୟେକ ଦର୍ଶନ ହେଉଛି ମୂଳତଃ ଜୀବନ-ଦର୍ଶନ । ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ଦର୍ଶନର ଜୀବନ ମଧ୍ୟରୁ ନୂତନ ପ୍ରେରଣା ନେଇ ନୂତନ ଭାବରେ କିଛି ଉପଲବ୍ଧି କରିବାର ଯେଉଁ ଆକୂତିଟି ରହିଛି, ତାହାକୁ ହିଁ ଆମେ ଯାବତୀୟ ଧର୍ମ ଓ ଦର୍ଶନର ଅସଲ ଯଥାର୍ଥତା ବୋଲି କହି ପାରିବା । ମାତ୍ର ଯେତେବେଳେ କୌଣସି ଦର୍ଶନ ଜୀବନଠାରୁ ବିଚ୍ଛିନ୍ନ ହୋଇଯାଏ, ସମ୍ଭବତଃ ସେତିକିବେଳେ ହିଁ ସେହି ଧର୍ମ ଓ ସେହି ଦର୍ଶନ ମଧ୍ୟରେ ବୁଦ୍ଧିବାଦର ପ୍ରକୋପଟା ଅତିରିକ୍ତ ଭାବରେ ବଢ଼ିବାକୁ ଆରମ୍ଭ କରେ ଓ ତା'ପରେ ମନୁଷ୍ୟ ଅପରଠାରୁ ଆପଣାର ପାର୍ଥକ୍ୟଗୁଡ଼ାକୁ ହିଁ ଆଗ ଓ ଅଧିକତର ପରିମାଣରେ ପ୍ରତ୍ୟେକ୍ଷ କରିବାକୁ ଆରମ୍ଭ କରେ । ଧର୍ମ ଯୋଡ଼ି ଆଣେ, ଦର୍ଶନ ଖିଅ ଯୋଗାଇ ଦିଏ, ସଂଯୁକ୍ତ କରେ, ଏକକ ଦୃଷ୍ଟିରେ ପରିଣତ କରେ, ଗୋଟାଏ ଭଣିତା ଭିତରେ ସତେଅବା ଯୁଗଯୁଗର କଥା କହିବା ପାଇଁ ସାହସ କରେ ।

ସେତେବେଳେ ଧର୍ମ ପ୍ରଥମତଃ ଅନ୍ୱେଷଣର ହିଁ ଏକ ମାର୍ଗ ହୋଇ ରହିଥାଏ । ସେତେବେଳେ ଦର୍ଶନ ବି ଆଖି ଖୋଜି ବୁଲୁଥାଏ, ଅବଲୋକନର ବିଦ୍ୟାର୍ଥୀ ହୋଇ ବୁଲୁଥାଏ । ଆବାହନ କରେ, ସଂସ୍ଥାପନ କରାଏ, ସନ୍ନିଧାନକୁ ଆସେ । ଯାହାକୁ ଲୋଡ଼ୁଥାଏ, ତାହାରି ପରି ହୁଏ, ତାହାରି ରଙ୍ଗରେ ଉକୁଟେ । ଏହି ଧର୍ମ ବା ଏହି ଦର୍ଶନର ଆଖିରେ ଆଗ ସାମଞ୍ଜସ୍ୟଗୁଡ଼ାକ ହିଁ ଦେଖାଯାଏ, ମାଳିଗୁଡ଼ାକୁ ଗୋଟାଏ ହାରରେ ଏକାଠି କରି ଧରିଥିବା ସୂତାଟିକୁ ଖୋଜୁ ଖୋଜୁ ତାହା ସ୍ୱୟଂ ଗୋଟାଏ ସୂତାରେ ପରିଣତ ହୋଇ ପାରିବାର ଅନ୍ତଃଦୃଷ୍ଟିଟିକୁ ପାଇଯାଏ । ପାର୍ଥକ୍ୟ ରହିଥାଏ, ଅନନ୍ୟତା ରହିଥାଏ—ତଥାପି ବ୍ୟବଧାନ ନ ଥାଏ, ଦୂରତା ନ ଥାଏ, କୌଣସି ସ୍ପର୍ଶକାତରତା ମଧ୍ୟ ନ ଥାଏ । ମାତ୍ର ଯେତେବେଳେ ଧର୍ମ ଓ ଦର୍ଶନ ବୁଦ୍ଧିର ଏକ ବିଳାସ ଅଥବା ଭେକ ବା ନିୟମଗୁଡ଼ାକର ଏକ ଅତିଚର୍ଯ୍ୟାରେ

ପରିଣତ ହୋଇଯାଏ, ସେତେବେଳେ ଭିନ୍ନତାଗୁଡ଼ାକ ସତେଅଥବା ଗୋଟାଏ ଗୋଟାଏ କାନ୍ଥ ପରି ମଝିରେ ଠିଆହୋଇ ରହନ୍ତି, କ୍ଷେତ୍ରଗୁଡ଼ାକ ଗୋଟାଏ ଗୋଟାଏ ଗଡ଼ପରି ଦିଶନ୍ତି । ପଣ୍ଡିତମାନେ ପରସ୍ପରର ସପତ୍ନୀ ପରି ଦିଶନ୍ତି, କାଳିଦାସଙ୍କ ବର୍ଣ୍ଣିତ ମାନିନୀ ପରି ଅନ୍ୟସଂସର୍ଗକୁ ମୋଟେ ସହିପାରନ୍ତି ନାହିଁ । ସେମାନେ କଳହ କରନ୍ତି, କଣ୍ଢେଇ କଚାଡ଼ନ୍ତି ଏବଂ ଆପଣାର କଣ୍ଢେଇଗୁଡ଼ାକୁ ଆଗରେ ଥୋଇ ଥେଇ ଥେଇ ହୋଇ ନାଚନ୍ତି । ପୁରସ୍କାର ପାଆନ୍ତି ।

ଯବନ ଅନେକାନ୍ତବାଦୀ । ତା'ର ଆକାଶରେ ଅନେକ ରଙ୍ଗ, ତା' ଅନ୍ତରାକାଶର ବଗିଚାରେ ଅନେକ ଫୁଲ, ତା'ର ଅନୁରକ୍ତି ଭିତରେ ଅନେକ ସମ୍ଭାବନା । ଯବନ କେବଳ ଗୋଟିଏ ମୂର୍ତ୍ତି ଭିତରେ କେବେହେଲେ ଶାନ୍ତହୋଇ ରହି ଯାଇପାରେ ନାହିଁ । ଯବନ ଭିତରେ ଅନେକ ଜନ୍ମର ବାସନା, ଅନେକ ଜନନୀର ବାସନା । ଯବନ ମୂର୍ତ୍ତିକୁ ମୂର୍ତ୍ତି ରୂପେ ହିଁ ଗ୍ରହଣ କରେ, ସିଏ ତାକୁ ଅନେକ ମୂର୍ତ୍ତି ଭିତରେ ଗୋଟିଏ ମୂର୍ତ୍ତି ବୋଲି ଗ୍ରହଣ କରେ । ତା' ଲାଗି ମୂର୍ତ୍ତି ମଧ୍ୟ ପ୍ରେରଣା ଦେଇପାରେ; ତାରା ଯେପରି ଆକାଶର ପ୍ରେରଣା ଦିଏ, ଠିକ୍ ସେହିପରି । ମୂର୍ତ୍ତି ତାକୁ ସତେଅବା ଗୋଟାଏ ଗୁମ୍ଫାପରି କଦାପି ଗିଳିପକାଏ ନାହିଁ । ଯବନର ଯାନ ହୀନଯାନ ନୁହେଁ କି ମହାଯାନ ନୁହେଁ, କର୍କଶ ଯାନ ନୁହେଁ କି କୋମଳ ଯାନ ନୁହେଁ । ତାହା ସମ୍ଭୂତିଯାନ । ଏହି ଯାନରେ ଥାପନା ଆଉ ବିରଚନାଗୁଡ଼ାକ କେବଳ ଗୋଟିଏ ଗୋଟିଏ ସୋପାନର କାର୍ଯ୍ୟ ଦିଏ, ସୋପାନ ସୋପାନ କରି ଉଠାଇ ନେଇ ଯାଉଥାଏ, ଫାନ୍ଦ ବସାଇ ବାନ୍ଧିପକାଏ ନାହିଁ । ଯବନ ବୁଦ୍ଧିକୁ ସାଙ୍ଗ କରିଥାଏ ସତ, ମାତ୍ର ବୁଦ୍ଧିବାଦୀ ସହିତ ଏକତ୍ର ବାସ କରିପାରେ ନାହିଁ । ବୁଦ୍ଧିବାଦୀମାନେ ତାକୁ ସତେଅବା ଏକଆଖିଆ ଅଥବା ଅଣଆଖିଆ ପରି ଦିଶନ୍ତି । ତେଣୁ ଦେଉଳ ଭିତରକୁ ଯାଇ ଯବନ କେବେହେଲେ ଦେବତାର ଜାତି ବାରି ବସେନାହିଁ । ସିଏ ଚିହ୍ନିବାକୁ ଚେଷ୍ଟାକରେ, ଚିହ୍ନା ଦିଏ, ଆମନ୍ତ୍ରଣ କରି ନେବାକୁ ଚାହେ, ସନ୍ନିଧାନ କାମନା କରେ । ଯବନ ବୌଦ୍ଧ ଜୈନ ବାରିପାରେ ନାହିଁ, ବୌଦ୍ଧ କିମ୍ବା ଜୈନଧର୍ମର ଡାଳ ପତରଗୁଡ଼ାକୁ ନେଇ ସେ ପଣ୍ଡିତାଇ କରିବାକୁ ହିଁ ଜୀବନର ସର୍ବସାର ବ୍ୟାକରଣ ବୋଲି ଗ୍ରହଣ କରେନାହିଁ । ଯେଉଁମାନେ ଖାଲି ନିୟମରେ ବନ୍ଧାହୋଇ ରହିଥାନ୍ତି, ଖାଲି ଭେକ ବାନ୍ଧିଥାନ୍ତି, ଯେଉଁମାନେ ବୁଦ୍ଧିର ଜଟାଗୁଡ଼ାକୁ ଲମ୍ବାଇ ନିଜ ଅସଲ ପରିଚୟଟିର ସାକ୍ଷ ଦେବାକୁ ଚାହାନ୍ତି, ସେମାନଙ୍କୁ ସେ ସଭାରେ ଦେଖୁଥାଏ ଓ ସେମାନଙ୍କ ଦ୍ୱାରା ନିଜର ମନୋରଞ୍ଜନ କରାଉଥାଏ ସତ, ମାତ୍ର ସେମାନଙ୍କୁ ଆପଣାର ସାଙ୍ଗ ବୋଲି ବାଛି ନେଇପାରେ ନାହିଁ, ସେମାନଙ୍କୁ ସମଧର୍ମୀ ବୋଲି କହିପାରେ ନାହିଁ ।

ତା୧୫ ।୦୩ ।୧୯୭୬ରିଖ



# ବାଆର

ହିଞ୍ଜିଳିକାଟୁର ହେମନ୍ତ ବାବୁ ଅଭିଯୋଗ କରି ଚିଠି ଲେଖିଛନ୍ତି ଯେ 'ଜାତିରେ ମୁଁ ଯବନ' ଲେଖା ଗୁଡ଼ିକରେ ମୁଁ ଅତିରିକ୍ତ ଭାବରେ ଖାଲି ସାହିତ୍ୟର କଥା ହିଁ ଲେଖୁଛି । ପ୍ରସଙ୍ଗଗୁଡ଼ାକୁ ମୁଁ ଯେଉଁଠାରୁ ଆରମ୍ଭ କଲେ ମଧ୍ୟ ଶେଷକୁ ବୁଲାଇ ବୁଲାଇ ସାହିତ୍ୟ ପାଖରେ ଆଣି ଛିଣ୍ଡାଇ ଦେଉଛି । ହେମନ୍ତ ବାବୁଙ୍କର ଅଭିଯୋଗ ଯେ, ସାହିତ୍ୟର କ୍ଷେତ୍ରଟି ଠାରୁ ଜୀବନର କ୍ଷେତ୍ର ହେଉଛି ଅନେକ ଅଧିକ ବଡ଼ । କେବଳ ସାହିତ୍ୟର କ୍ଷେତ୍ରରେ ଯାହା ସବୁ ଘଟୁଛି, ଜୀବନର ବୃହତ୍ତର କ୍ଷେତ୍ରଟିରେ ତା'ଠାରୁ ଅନେକ ଅଧିକ ଘଟୁଛି । ଯବନର ବିଚରଣ ଗୁଡ଼ିକରେ ମୁଁ ସେଗୁଡ଼ିକୁ ମଧ୍ୟ କିଆଁ ଆଲୋଚନାରେ ଅନ୍ତର୍ଭୁକ୍ତ ନ କରୁଛି, ସେଥିଲାଗି ହେମନ୍ତ ବାବୁ ବିସ୍ମୟ ପ୍ରକାଶ କରିଛନ୍ତି । ହୁଏତ ଖେଦ ବି ପ୍ରକାଶ କରିଛନ୍ତି ।

ଜୀବନର କ୍ଷେତ୍ର ସହିତ ଅଲଗା କରି ତୁଳନା କରି ପାରିବା ଭଳି କେଉଁଠି ଏକ ସାହିତ୍ୟର କ୍ଷେତ୍ର ରହିଛି ବୋଲି ମୁଁ ଏପର୍ଯ୍ୟନ୍ତ ଅନୁଭବ କରି ନାହିଁ; ଜୀବନକୁ ବଞ୍ଚୁଥିବା ମଣିଷ ଓ ସାହିତ୍ୟକୁ ବଞ୍ଚୁଥିବା ମଣିଷ ଭିତରେ କେଉଁଠି କୌଣସି ବିହରଣ-ପାର୍ଥକ୍ୟ ରହିଛି ବୋଲି ମୁଁ କେବେହେଲେ ଭାବି ନାହିଁ । ଗୋଟାଏ ସମୟ ଥିଲା, ଯେତେବେଳେ ସାହିତ୍ୟ କରିବ ବୋଲି ମଣିଷ ଜୀବନର ବେଢ଼ଟି ମଧ୍ୟରୁ ଦଣ୍ଡକ ଲାଗି ଛୁଟିନେଇ ବାହାରି ଆସୁଥିଲା, ଅଥବା ଜୀବନର ସମ୍ମୁଖ-ସତ୍ୟଗୁଡ଼ିକୁ ଅନ୍ତତଃ ଘଡ଼ିକଲାଗି ଭୁଲି ରହିଯାଇ ପାରିବ ବୋଲି ସାହିତ୍ୟର କାକୁଡ଼ିବାଡ଼ ଭିତରେ ଯାଇ ଆଶ୍ରୟ ଗ୍ରହଣ କରୁଥିଲା । ସାହିତ୍ୟ ଥାନରେ ସାହିତ୍ୟକୁ ମାନୁଥିଲା ଓ ଜୀବନ ଥାନରେ ଜୀବନ ଲାଗି ମଣ ହେଉଥିଲା, ଜୀବନ ଭିତରେ ଘୋଷରା ହେବାରେ ଲାଗିଥିଲା । ଏବେ ପିଲାଙ୍କ ଇସ୍କୁଲରେ ମଧ୍ୟ ଅଳ୍ପ ବହୁତ ସେହିପରି ହେଉଛି । ପିଲାଏ ଏ ପିରିୟଡ଼୍‌ରେ ସାହିତ୍ୟ ପଢୁଛନ୍ତି ତ ଆର ପିରିୟଡ଼୍‌ରେ ଭୁଗୋଳ ପଢୁଛନ୍ତି ଓ ତା' ଆର ପିରିୟଡ଼୍‌କୁ ଅଙ୍କ କଷୁଛନ୍ତି କିମ୍ବା ଡ୍ରିଲ୍ କରିବାକୁ ଯାଉଛନ୍ତି । ଅଧିକାରର ହିସାବକ୍ଷେତ୍ରରେ ସାହିତ୍ୟର ଯେତିକି ଥାନ ରହିଛି, ଅନ୍ୟ ଯେକୌଣସି ବିଷୟର ମଧ୍ୟ ଠିକ୍ ସେତିକି ଥାନ ରହିଛି;

ଠିକ୍ ସେତିକି ଓଜନ ମଧ୍ୟ ରହିଛି । କିଏ ହୁଏତ ସାହିତ୍ୟରେ ଭଲ ପାଉଛି, ଇତିହାସରେ ମୋଟେ ପାରୁନାହିଁ; କାହାର ଡ୍ରଇଂ ହାତ ଭଲଅଛି, ମାତ୍ର ସାହିତ୍ୟ ଭିତରେ ପଶିଲା ମାତ୍ରକେ ତା'ର ସବୁଯାକ ଅକଲ ଗୋଟାସୁଦ୍ଧା ଭଣ୍ଡୁର ହୋଇ ଯାଉଛି ।

ଜୀବନରେ କ'ଣ ଠିକ୍ ଇସ୍କୁଲ ପରି ହୁଏ ? ଏହି ଇସ୍କୁଲଗୁଡ଼ାକରେ ଯେମିତି ହେଉଛି, ପ୍ରକୃତରେ କ'ଣ ସେହିଭଳି ହେବାର କଥା ? ଏସବୁ ପ୍ରଶ୍ନର ଆଦୌ ସଳଖ ଓ ସହଜ କୌଣସି ଉତ୍ତର ନାହିଁ । ପ୍ରଶ୍ନକାରୀର ମୂଲ୍ୟ-କଳନା ଉପରେ ହୁଏତ ତା'ର ଉତ୍ତରଟି ଅନେକ ମାତ୍ରାରେ ନିର୍ଭର କରୁଛି । ଜୀବନ କହିଲେ ସିଏ କ'ଣ ବୁଝୁଛି ? ସାହିତ୍ୟ କହିଲେ ବା ସିଏ କ'ଣ ବୁଝୁଛି ? ଆପଣା ଦେହର ବସନଟାକୁ ସିଏ ଏକ ଆବଶ୍ୟକତା ବୋଲି ବୁଝୁଛି ନା ତୁଚ୍ଛା ଗୋଟାଏ ଆଭରଣ ବୋଲି ବୁଝୁଛି ? ସଂସାର କହିଲେ ସ୍ୱଭାବକୁ ବୁଝୁଛି ନା ଏକ ସ୍ୱୀକୃତ ପରୀପାଟୀସମ୍ବଳିତ ଅଭିନୟକୁ ହିଁ ବୁଝୁଛି ? ଏହି ସବୁଯାକ ପ୍ରଶ୍ନ ହେଉଛି ଗୋଟିଏ ଗୋଟିଏ ଆପେକ୍ଷିକ ପ୍ରଶ୍ନ ଓ ଏଗୁଡ଼ିକର ଉତ୍ତର ମଧ୍ୟ ମୂଳତଃ ଗୋଟିଏ ଗୋଟିଏ ଆପେକ୍ଷିକ ଉତ୍ତର । ମାତ୍ର ଗୋଟିଏ କଥା ହୁଏତ ଅନେକ ପରିମାଣରେ ବେଶ୍ ନିଃସନ୍ଦେହ ଭାବରେ କୁହାଯାଇ ପାରିବ ଯେ, ଯିଏ ଜୀବନକୁ ଏକ ଅଭିନୟ ବୋଲି ବୁଝୁଛି, ସିଏ ସାହିତ୍ୟକୁ ମଧ୍ୟ ପ୍ରାୟ ସେହିପରି ଏକ ଅଭିନୟ ବୋଲି ବୁଝୁଛି । ଯିଏ ଏଠାରେ ମୁଖା ପିନ୍ଧି ବସିଛି, ମୁଖା ପିନ୍ଧି ରଣପା ଚଢ଼ିଛି ବୋଲି ଅନୁଭବ କରୁଛି, ସିଏ ସେଠାରେ ମଧ୍ୟ ମୁଖା ପିନ୍ଧିବାକୁ ହିଁ ଏକ ଅତ୍ୟନ୍ତ ସ୍ୱାଭାବିକ କଥା ବୋଲି ବୁଝୁଛି, ସିଏ ସେଠାରେ ମଧ୍ୟ ମୁଖା ପିନ୍ଧି ଓ ରଣପା ଚଢ଼ି ଏକାବେଳେକେ ହୁରି ପକାଇବାରେ ଲାଗିଛି । ଯିଏ ଆପଣାର ଜୀବନ ଦେଇ ମହତ୍ତର କୌଣସି କିଛି ଖୋଜୁଛି, ସିଏ ସାହିତ୍ୟ ଭିତରେ ମଧ୍ୟ ସେହିପରି କିଛି ଖୋଜିବାରେ ଲାଗିଛି । ଜୀବନର ଚାଲିବା ପଥରେ ଯେଉଁ ସଖାଟିର ଭେଟ ପାଇଛି, ସାହିତ୍ୟ ଭିତରେ ମଧ୍ୟ ସେ ସେହି ସଖାଟିକୁ ବେଶ୍ ଚିହ୍ନିନେଇ ପାରୁଛି ।

ଆଗେ ସାହିତ୍ୟକୁ ଏକ ଦର୍ପଣ ପରି ବ୍ୟବହାର କରାଯାଉ ନ ଥିଲା । ଏକ ଚିତ୍ର ପରି ବ୍ୟବହାର କରାଯାଉ ଥିଲା, ବେଳେବେଳେ ଏକ ପଲଙ୍କ ପରି ବ୍ୟବହାର କରା ଯାଉଥିଲା । ଚିତ୍ର ଦେଖିଲେ ମନ ଭୁଲିହୋଇଯାଏ—ମନ ଭୁଲିବାକୁ ଯେପରି ତାମ୍ବୁଲ ଧରାଇ ଦିଆଯାଏ, ସେହିପରି ଏକ ଚିତ୍ରପଟ କରି ସାହିତ୍ୟକୁ ମଧ୍ୟ ଧରାଇ ଦିଆ ଯାଇପାରେ । ଯେତେବେଳେ ସାହିତ୍ୟ ଏକ ଦର୍ପଣର କାର୍ଯ୍ୟ କରେ, ସେତେବେଳେ ତାହା ଜୀବନର ହିଁ ଏକ ଦର୍ପଣ ପରି କାର୍ଯ୍ୟକରେ । ଅତୀତର ଦର୍ପଣ ପରି କାର୍ଯ୍ୟ କରେ, ବର୍ତ୍ତମାନର ଚେତନା ଆଣିଦିଏ, ଭବିଷ୍ୟତର ବି ସ୍ମରଣ କରାଇ ଦେଇଯାଏ ।

ସରୋବରର ଦର୍ଶନ କରାଏ । ପଦ୍ମର ବି ଦର୍ଶନ କରାଏ । ଯାହା ଅଛି, ତାହାର ଦର୍ଶନ କରାଏ; ଯାହା ତଥାପି ଅନ୍ତରାଳରେ ରହିଛି ଅଥଚ ଉଚ୍ଚାଟ କରିବାରେ ଲାଗିଛି, ସେଇଟିର ମଧ୍ୟ ଆଭାସ ଦେଇଯାଏ । ଦେହର ଦର୍ଶନ କରାଏ, ଦେହ ଭିତରର ହୃଦୟଟିର ବି ଦର୍ଶନ କରାଏ ଏବଂ ଦେହ ଓ ହୃଦୟକୁ ଏକାଠି ଗୋଟିଏ ଆସ୍ପୃହାରେ ବାନ୍ଧି ଯେଉଁ ଆତ୍ମା ଅଧୀଶ୍ୱର ହୋଇ ବସିଛି, ସେଇଟିର ଇଙ୍ଗିତ ଦେଇଯାଏ । ସେଇଟି ଆଡ଼କୁ ତୃଷା ଜାଗ୍ରତ କରି ଦେଇଯାଏ, ନୂଆ ଆଖି ଓ ନୂଆ ନୂଆ କ୍ଷିତିଜକୁ ଜନ୍ମ ଦେଇଯାଏ । ତାହା ସକଳ ଚିତ୍ରର ଜୀବନ୍ୟାସ କରାଇ ଦେଇଯାଏ । ଦର୍ପଣ ଭିତରେ ଆପଣାର ମୁଖଟିକୁ ଦେଖୁଥିବା ବେଳେ ସତେଅବା ସବୁଯାକ ମୁଖ ଦିଶି ଯାଉଥାଏ, ପୁଣି କେତେବେଳେ ସବୁଟିକୁ ଦେଖୁଥିବା ବେଳେ ଆପଣାର ମୁଖଟି ମଧ୍ୟ ଉକୁଟି ଉଠିବାରେ ଲାଗେ । ଏହିପରି ଭାବରେ ଯେଉଁ ଆତ୍ମୀୟତାଟି ଉପଲବ୍ଧ ହୁଏ, ତାହାହିଁ ସାହିତ୍ୟକୁ ଆମ ପାଖରେ ଏତେ ବେଶୀ ଆପଣାର କରି ରଖିଥାଏ, ସାହିତ୍ୟକୁ ଆମର ଭୋକଶୋଷରେ ପରିଣତ କରି ରଖିଥାଏ । ଏହି ଆତ୍ମୀୟତା ଦ୍ୱାରା ଜୀବନ ଭଲ ଲାଗେ, ସଂସାର ଭଲ ଲାଗେ, ରାନ୍ତୁ ଅପାଙ୍କଠାରୁ ପୁଷି ବିଲେଇ ପର୍ଯ୍ୟନ୍ତ ସମସ୍ତେ ଭଲ ଲାଗନ୍ତି ଏବଂ ଏହି ସବୁଯାକକୁ ଏଡ଼େ ମୋହକ ଭାବରେ ଭଲ ଲଗାଇ ପାରୁଥିବା ସାହିତ୍ୟ ମଧ୍ୟ ଭଲଲାଗେ । ସାହିତ୍ୟ କହିଲେ କେବଳ କେତେଟା ବହିକୁ ବୁଝାଏ ନାହିଁ, ଜାତୀୟତାବାଦୀମାନଙ୍କର କୌଣସି ସମ୍ପତ୍ତିକୁ ବି ବୁଝାଏ ନାହିଁ; ସାହିତ୍ୟ ଏକ ଦୃଷ୍ଟିକୁ ହିଁ ବୁଝାଏ, ଜୀବନକୁ ଦେଖିବା ଲାଗି ଆମ ଆଖିରେ ଲାଗିଥିବା ଏକ ଅଞ୍ଜନକୁ ହିଁ ବୁଝାଏ ।

ଏହି ଦୃଷ୍ଟିଟିକୁ ବହନ କରି ଆମେ ସବୁଠାକୁ ଯାଇ ପାରିବା, ସବୁ କ୍ଷେତ୍ରରେ ପ୍ରବେଶ କରି ପାରିବା; ଏହି ଅଞ୍ଜନଟି ଲଗାଇ ଆମେ ସବୁଠାରେ ଜୀବନର ସ୍ପର୍ଶ ଲାଭ କରି ପାରିବା । ଯେତେବେଳେ ଜୀବନକୁ ଏକ ଦୁର୍ଗ ପରି ଅନୁଭବ କରାଯାଏ, ସେତେବେଳେ ତାହାରି ଭିତରେ ନିଜକୁ ସତେଅବା ଲୁଚାଇ ରଖି ପାରିବା ଲାଗି ଆମେ କଣଟିଏ ଅଥବା ଗାତଟିଏ ଖୋଜି ବୁଲିବାରେ ଲାଗିଥାଉ, ତାହାରି ଭିତରେ କେତେବେଳେ କୃଷ୍ଣ ସାଜୁଥାଉ ତ ଆଉ କେତେବେଳେ ରାଧା ସାଜୁଥାଉ, କେତେବେଳେ ଗୋପୀ ହୋଇ ବାହାରୁ ତ ଆଉ କେତେବେଳେ ବଟୁ ହୋଇ ବାହାରୁ । ସେତେବେଳେ ପାଚେରୀ ଗୁଡ଼ାକ ହିଁ ଏକମାତ୍ର ସତ୍ୟ ହୋଇ ବିରାଜି ରହିଥାନ୍ତି, ଦୂରତା ଗୁଡ଼ାକ ହିଁ ଏକମାତ୍ର ପ୍ରତିଷ୍ଠା ରୂପେ ଶୋଭା ପାଉଥାନ୍ତି ଏବଂ ଆମ ଭିତରର ଉଦ୍ଦେଶ୍ୟହୀନ ଏବଂ ଦର୍ପଣହୀନ ଚୋରଟି ତାହାରି ଭିତରେ ନସର ପସର ହୋଇ କେବଳ ମୁଖା ବଦଳାଇବାରେ ଲାଗିଥାଏ, କେବଳ ମହଲ ପାଲଟିବାରେ ଲାଗିଥାଏ, କେବଳ ଧୂପ ବଦଳାଇବାରେ ଲାଗିଥାଏ । ହୁଏତ ସେତିକିବେଳେ ସାହିତ୍ୟକୁ ମଧ୍ୟ ପ୍ରୟୋଜନରେ ପଡ଼ି ଏକ ମୁଖା ରୂପେ ବ୍ୟବହୃତ

ହେବା ପାଇଁ ଆସିବାକୁ ହୋଇଥାଏ । ସେତେବେଳେ ସାହିତ୍ୟ ଏକ ବିଳାସରେ ବି ପରିଣତ ହୋଇ ରହିପାରେ, ଏକ ବିଶେଷ କ୍ଷେତ୍ର ରୂପେ ବିଶେଷ ପହରା ଭିତରେ ସଙ୍କୁଳା ହୋଇ ରହିପାରେ, ଆମଠାରୁ ତଥା ଜଗତଠାରୁ ଆମ ନିଜକୁ ବିସ୍ମୃତ କରି ରଖିବା ଲାଗି ସତେଅବା ଏକ ଚକ ଚକ କନ୍ଦୁକ ରୂପେ ବି ବ୍ୟବହୃତ ହୋଇପାରେ । ମାତ୍ର, ଜୀବନ କହିଲେ ଯେତେବେଳେ ଆମ ଆଗରେ ଗୋଟାଏ ପଥ ଦିଶି ଦିଶି ଯାଉଥାଏ, ଯେତେବେଳେ ଜୀବନ କହିଲେ ସମ୍ମିଳନକୁ ବୁଝାଏ, ସଖ୍ୟ-ଲାଭ ଓ ସଙ୍ଗ-କୁ ହିଁ ବୁଝାଏ, ସେତେବେଳେ ଆମେ ଆଉ ଗାତ ବା କଣ ଲୋଡ଼ିବାକୁ ଯାଉ ନାହିଁ; ସେତେବେଳେ ପ୍ରକୃତରେ ଦର୍ପଣକୁ ହିଁ ମନ ହୁଏ, ସମସ୍ତଙ୍କ ସହିତ ଆମର ଡୋର ବନ୍ଧା ହୋଇଯାଏ; ଏବଂ ସେତେବେଳେ ସାହିତ୍ୟ ବୋଲି ଆମ ଜୀବନର ଯାହା କିଛି ଘଟେ, ତାହା ଏକ ସମଗ୍ର ଅଙ୍ଗୀକାର ରୂପେ ଘଟେ, ଏକ ସମଗ୍ର ଆମନ୍ତ୍ରଣ ରୂପେ ଘଟେ, ଏକ ସମଗ୍ର ଗୃହପ୍ରବେଶ ରୂପେ ହିଁ ଘଟେ । ସେତେବେଳେ ସାହିତ୍ୟ ଏକ ସଦନରେ ପରିଣତ ହୋଇଯାଏ, ତାହା ଆମର ଯାବତୀୟ ଅନୁଲୋଡ଼ନ ଓ ଆଲୋଡ଼ନକୁ ଏକ ସଦନର ସ୍ଥାୟିତ୍ୱ ଆଣି ଦେଇଯାଏ—ଜୀବନର ସମ୍ପୂର୍ଣ୍ଣ ଆସ୍ଥାନଟି ଉପରେ ତାହା ସତେଅବା ଏକ ସମ୍ପୂର୍ଣ୍ଣ ଆଖି ପରି ସ୍ଥିତି, ସତ୍ତା ଓ ଭବିଷ୍ୟ ସବୁ କିଛିକୁ ଆବୋରି ଧରିଥାଏ । ସେହି ସାହିତ୍ୟ ପାଚେରୀ ଭାଙ୍ଗେ, ଭୂଗୋଳର ଯାବତୀୟ ଅର୍ଦ୍ଧ ଓ ଗୋଲାର୍ଦ୍ଧ ଗୁଡ଼ାକୁ ଡେଙ୍ଗି ଚାଲିଯାଏ, ମୁଖା ଗୁଡ଼ାକୁ ଖସାଇ ପକାଏ । ସେହି ସାହିତ୍ୟ ଭୟ ଭାଙ୍ଗେ, ଅଳ୍ପଦର୍ଶୀ ଓ ଦମ୍ଭଦର୍ଶୀର ସକଳ ମାନକୁ ଅପହରଣ କରିନିଏ ଓ ଜୀବନକୁ ଏକାଧାରରେ ଏକ ନୀଡ଼ ଓ ଆକାଶରେ ପରିଣତ କରି ଦେଇଯାଏ । ସେତେବେଳେ ସାହିତ୍ୟ କହିଲେ କେବଳ କବିତା, କ୍ଷୁଦ୍ର ଗଳ୍ପ, ବୃହତ୍ ଗଳ୍ପ ଓ ନାଟକ ଆଦିକୁ ବୁଝାଏ ନାହିଁ; ଏଗୁଡ଼ାକୁ ବୁଝାଏ ସତ, ମାତ୍ର ତହିଁ ସଙ୍ଗେ ଜୀବନ ସହିତ ଏକ ବିଶେଷ ଆତ୍ମୀୟତାକୁ ବୁଝାଏ, ପରିଣୟକୁ ବୁଝାଏ । କେବଳ ଏକ ସମ୍ପତ୍ତିକୁ ବୁଝାଏ ନାହିଁ, ତାହା ଏକ ଆସ୍ଥାନକୁ ବୁଝାଏ, ଅବଗାହନକୁ ବୁଝାଏ ଏବଂ ଏଗୁଡ଼ିକ ସବୁଯାକ ମିଶି ଏକ ଶାପମୋଚନକୁ ବୁଝାନ୍ତି, ଏକ ନୂତନ ଜନ୍ମକୁ ବୁଝାନ୍ତି ।

ସାହିତ୍ୟ କହିଲେ ଯେଉଁମାନେ କେବଳ ଶନିବାସରୀୟ ଅଥବା ରବି ବାସରୀୟ ଏକ ସଭାକୁ ବୁଝନ୍ତି, ସ୍ୱତନ୍ତ୍ର ଉପଲକ୍ଷମାନଙ୍କରେ ପ୍ରଦର୍ଶିତ ଓ ପ୍ରକର୍ଷିତ ହେଉଥିବା ଏକ ସମ୍ପତ୍ତିକୁ ବୁଝନ୍ତି, ଜୀବନର ଅନେକ କଣ ଓ ଅନେକ ଗାତ ଭିତରୁ ଖାସ୍ ଗୋଟାଏ କଣ ବା ଗୋଟାଏ ଗାତ ବୋଲି ବୁଝନ୍ତି, ସେମାନେ ସାହିତ୍ୟର ଉକ୍ତ ଦୃଷ୍ଟିଟିକୁ ସାଧାରଣତଃ ସାହିତ୍ୟ-ଦୃଷ୍ଟି ବୋଲି ନ କହି ଏକ ଯବନ-ଦୃଷ୍ଟି ବୋଲି କହନ୍ତି ଏବଂ ସେହି ଦୃଷ୍ଟିଟି ଲାଗି ଅଡ଼ି ବାହାରିଥିବା ମଣିଷକୁ ସେମାନେ ଯବନ ବୋଲି କହନ୍ତି । ସେହିମାନେ

ସାହିତ୍ୟକୁ ନେଇ ରତ୍ନ ବାଣ୍ଟନ୍ତି, ଅନୁଗ୍ରହ ବିଞ୍ଚନ୍ତି, କରୁଣା ଅଜାଡ଼ନ୍ତି ଅଥବା କଟାକ୍ଷ ହାଣନ୍ତି ସତ, ମାତ୍ର ଆତ୍ମୀୟତା ଲାଭ କରି ପାରନ୍ତି ନାହିଁ । ଏମାନେ ଆତ୍ମୀୟତାର ବହୁ ଦୂରରେ ରହିଥାନ୍ତି, ଆତ୍ମୀୟତା ଲୋଡ଼ିବାକୁ ସେମାନେ ତୁଚ୍ଛା ଏକ ନିଷ୍ଫଳ ଅର୍ବାଚୀନତା ଅଥବା ଅଜ୍ଞତା ବୋଲି ବିଚାରୁଥାନ୍ତି । ସେମାନେ ବଡ଼ ହୁଅନ୍ତି, ବଡ଼ ହୋଇ ସଫଳତା ଅର୍ଜନ କରନ୍ତି, ଦର୍ପୀ ହୁଅନ୍ତି ବା ପ୍ରତାପୀ ହୁଅନ୍ତି ସତ, ମାତ୍ର ତଥାପି ଗାଡଟାକୁ ହିଁ ଗତି ବୋଲି ମଣୁଥାନ୍ତି । ସେମାନେ ଗୋଟାସୁଦ୍ଧା ଗତିରହିତ ହୋଇ ରହି ଯାଆନ୍ତି । ମଥାନରେ ଯାଇ ବସିଥାନ୍ତି, ମଣ୍ଡଣି ଭିତରେ ଲାଳିତ ପାଳିତ ହେଉଥାନ୍ତି, ହାତୀ ଘୋଡ଼ା ସବୁ ଚରାଉଥାନ୍ତି–ତଥାପି ଗତିହୀନ ଅର୍ଥାତ୍ ନିଷ୍ପ୍ରାଣ ହୋଇ ବସିଥାନ୍ତି । ଗତିହୀନତାକୁ ପରମ୍ପରା ବୋଲି କହନ୍ତି, ବୈଚିତ୍ର୍ୟହୀନତାକୁ ସୌନ୍ଦର୍ଯ୍ୟ ବୋଲି କହନ୍ତି, ଯାବତୀୟ ସଂସ୍ପର୍ଶକୁ ବ୍ୟାଧି ପରି ଭୟ କରନ୍ତି । ଯାବତୀୟ ବାଟ ଚାଲିବାକୁ ବିଜାତୀୟତା ବୋଲି କହନ୍ତି ଓ ନିଜର ଅସଲ ଜାତିଟିକୁ ନାନା ଗ୍ରନ୍ଥିଳତା ମଧ୍ୟରେ ପ୍ରାୟ ଅଚଳ କରି ରଖି ଦେଇଥାନ୍ତି । ଯବନ ବାଟ ଚାଲେ, ବାଟକୁ କୁଣ୍ଢାଇ ଧରି କେବେ ବସିଯାଏ ନାହିଁ; ଯବନ ପାଣି ଉପରେ ପହଁରେ, ପାଣିରେ ବୁଡ଼ି ମରିବାକୁ ଯାଏ ନାହିଁ । ଯବନ ଜାତି ହରାଏ, ଜାତି ହୁଏ ଜାତି ହରାଇ ଜାତି ହୁଏ,–ସେ ଦର୍ପଣ ଭିତରେ ସବୁଟିକୁ ଦେଖେ, ଆପଣାକୁ ମଧ୍ୟ ଦେଖେ । ଅତୀତ ତଥା ଅନାଗତ ଉଭୟକୁ ଦେଖେ, ତେଣୁ ପ୍ରତିଷ୍ଠିତର କୌଣସି ଗର୍ଭ ଭିତରେ ସେ କଦାପି ଲାଖି ରହିଯାଏ ନାହିଁ । ସିଏ ଅନାୟାସରେ କେତେ ଖୋଳ ଭିତରେ ପ୍ରବେଶ କରିପାରେ, ଖୋଳଗୁଡ଼ାକ ଭିତରୁ ସେହିପରି ଅନାୟାସରେ ବାହାରି ବି ଆସିପାରେ । ଏହି ପ୍ରବେଶ କରିବା ଓ ବାହାରି ଆସିବାର କ୍ରମଟି ମଧ୍ୟରେ ତା' ଦିହରେ ଏତେ ଟିକିଏହେଲେ ମଳି ଧୂଳି ଲାଗେ ନାହିଁ । ଓଲଟି ସିଏ ଯେଉଁସବୁ ଖୋଳ ଭିତରେ ପ୍ରବେଶ କରେ ଓ ଯେଉଁସବୁ ଭିତରୁ ବାହାରି ଆସେ, ସେ ସେଗୁଡ଼ିକରେ ନିଜ ରଙ୍ଗର ଆବେଶଟିକୁ ହିଁ ଲଗାଇ ଦେଇ ଆସେ । ସେଗୁଡ଼ିକରେ ଆତ୍ମୀୟତାର କେତେ ଅଞ୍ଜନ ବୋଳି ଦେଇ ଆସେ ।

ଜୀବନର କ୍ଷେତ୍ରଟି ଯେତିକି ଯାଏ ପରିବ୍ୟାପ୍ତ ହୋଇ ରହିଛି, ଆମ ଆଧୁନିକ ବିବେଚନାଟି ଅନୁସାରେ ସାହିତ୍ୟର କ୍ଷେତ୍ରଟି ମଧ୍ୟ ଠିକ୍ ସେତିକିଯାଏ ପରିବ୍ୟାପ୍ତ ହୋଇ ରହିଛି । ଜୀବନର ସଞ୍ଚରଣ କହିଲେ ଚେତନାର ହିଁ ସଞ୍ଚରଣକୁ ବୁଝାଏ ଏବଂ ମନୁଷ୍ୟର ଏହି ଚେତନାଟି ଆପଣାକୁ ଯେତେ ଉପଲବ୍ଧି ଦେଇ ଅଭିବ୍ୟକ୍ତ କରିଥାଏ, ସାହିତ୍ୟର ଉପଲବ୍ଧି ହେଉଛି ସେଇଥି ଭିତରୁ ଗୋଟିଏ । ତେଣୁ ସାହିତ୍ୟର ଭୂମି କହିଲେ କେବଳ ବାସ୍ତବକୁ ବୁଝାଏ ନାହିଁ ବା କେବଳ କଳ୍ପନାକୁ ବୁଝାଏ ନାହିଁ, ଅର୍ଥାତ୍ ଅଧିକ ନିର୍ଭୁଲ କରି କହିଲେ, ତାହା ବାସ୍ତବକୁ ଛାଡ଼ି କରି ରହିଥିବା କୌଣସି ତୁଚ୍ଛା କଳ୍ପନାକୁ ବୁଝାଏ

ନାହିଁ ଅଥବା କଳ୍ପନାର ରଙ୍ଗ ଲାଗି ନ ଥିବା କୌଣସି ତୁଚ୍ଛା ବାସ୍ତବକୁ ମଧ୍ୟ ବୁଝାଏ ନାହିଁ । ସାହିତ୍ୟର ଭୂମି ବାସ୍ତବରୁ କଳ୍ପନା ପର୍ଯ୍ୟନ୍ତ ପ୍ରସାରିତ ହୋଇ ରହିଥାଏ, କଳ୍ପନାକୁ ଭୂଇଁ ଛୁଆଁଏ ଓ ବାସ୍ତବ ଦେହରେ ଡେଣା ଲଗାଇ ତାକୁ କେତେ କେତେ ବ୍ୟଞ୍ଜନା ମଧ୍ୟରେ ପରିପ୍ଳୁତ କରାଇ ଆଣେ । ଜୀବନର ଯେଉଁଭଳି ଏକ ସମଗ୍ର ସ୍ୱାଦ ରହିଛି, ଜୀବନର ଯାବତୀୟ ଉପଲବ୍ଧିର ଯେଉଁଭଳି ଏକ ସମଗ୍ର ସ୍ୱାଦ ରହିଛି, ଜୀବନ ସହିତ ଛନ୍ଦା ହୋଇ ରହିଥିବା ସାହିତ୍ୟର ମଧ୍ୟ ସେହିପରି ଏକ ସମଗ୍ର ଆବେଦନ ଓ ସମଗ୍ର ଅନୁବ୍ୟଞ୍ଜନା ରହିଛି । ଜୀବନ କହିଲେ ଯେପରି କେବଳ ଚିତ୍ରକଳ୍ପକୁ ବୁଝାଏ ନାହିଁ, କେବଳ ବହିରଙ୍ଗ ଗଢ଼ଣ ଓ ଗାରିମାଗୁଡ଼ିକୁ ବୁଝାଏ ନାହିଁ, ସାହିତ୍ୟ କହିଲେ ମଧ୍ୟ ସେହିପରି ଗୋଟାସୁଦ୍ଧା କୌଣସି ଚିତ୍ରସେନ ଗନ୍ଧର୍ବର କେବଳ ଶୂନ୍ୟରେ ହିଁ ରଥ ବାହିବାକୁ ବୁଝାଏ ନାହିଁ, କେବଳ ବାହାରେ ଲଗା ହୋଇଥିବା କୌଣସି ପୁଟକୁ ବୁଝାଏ ନାହିଁ । ଜୀବନର ଯେପରି ନାନା ପ୍ରସ୍ଥ ରହିଛି, ନାନା ଉଚ୍ଚତା ଓ ନାନା ଗଭୀରତା ରହିଛି, ସାହିତ୍ୟର ମଧ୍ୟ ଠିକ୍ ସେହିପରି ନାନା ପ୍ରସ୍ଥ ରହିଛି—ନାନା ସୀମା ରହିଛି । ତେଣୁ ଆମେ ଜୀବନରେ ଯେତିକି ଚାହୁଁଥିବା, ଯେତିକି ଲୋଡୁଥିବା, ଆମର ସାହିତ୍ୟ ମଧ୍ୟ ଠିକ୍ ସେହି ଅନୁସାରେ ହିଁ ଆପଣାକୁ ଅଭିବ୍ୟକ୍ତ କରିବାକୁ ବାଧ୍ୟ ହେଉଥିବ । ଆମ ଜୀବନର ଯାବତୀୟ ଖୋଜିବା ଆମର ସାହିତ୍ୟରେ ମଧ୍ୟ ନାନା ପ୍ରତ୍ୟୟ ଓ ପ୍ରତୀତିର ମହିମାରେ ଉଜ୍ଜ୍ୱଳି ଉଠିବାରେ ଲାଗିଥିବ । ଆମର ସାହିତ୍ୟ ଆମର ଅନ୍ନମୟଠାରୁ ଆନନ୍ଦମୟ ପର୍ଯ୍ୟନ୍ତ ସମଗ୍ର ଜୀବନଟିକୁ ସତେଅବା ଗୋଟିଏ ଅବଲୋକନର ବେଢ଼ ଭିତରେ ଉତ୍ତୋଳି ଧରିବାର ପ୍ରୟାସ କରିବାରେ ଲାଗିଥିବ । ଆମ ସାହିତ୍ୟ ଆମ ଜୀବନର ପ୍ରେରଣାଗୁଡ଼ିକୁ ଆଖି କରି ଓ ତାହାର ସମ୍ଭାବନାଗୁଡ଼ିକୁ ଅଭୀଷ୍ଟ କରି ପାହାଚକୁ ପାହାଚ ଉଠିଯିବାରେ ଲାଗିଥିବ । ପୁରୁଣା ପରିଧିଗୁଡ଼ାକ ଭାଙ୍ଗି ଭାଙ୍ଗି ଯାଉଥିବ, ନୂଆ ପରିଧିର କେତେ ବାର୍ତ୍ତା ଆସି ପହଞ୍ଚି ଯାଉଥିବ, ଆମରି ଭିତରେ କେତେ କେତେ ବୁଢ଼ା ମରି ଆମରି ଭିତରର କୌଣସି ଏକ ତରୁଣକୁ ଜନ୍ମ ଦେଇ ଯାଉଥିବେ, ତାହାକୁ ନୂତନ ବସ୍ତ୍ରରେ ପରିହିତ କରାଇ ଦେଇ ଯାଉଥିବେ ।

ଆଗେ ବିଜ୍ଞାନ କହିଲେ କେତେଟା ତୁଚ୍ଛା ବିଜ୍ଞାନକୁ ହିଁ ବୁଝାଉଥିଲା । ଯାହାକୁ ଭାଗ ଭାଗ କରି ହେଉଥିଲା, ଜରୀବ ପକାଇ ମାପି ହେଉଥିଲା, ଇନ୍ଦ୍ରିୟ ଗୁଡ଼ାକ ଦ୍ୱାରା ସ୍ପଷ୍ଟ ଭାବରେ ଧରି ହେଉଥିଲା, ଏକଦା ତାହାକୁ ହିଁ ବିଜ୍ଞାନ ବୋଲି କୁହାଯାଉଥିଲା; ଏବେ ବିଜ୍ଞାନ କହିଲେ ସମଗ୍ର ଆଳୟ-ବିଜ୍ଞାନଟିକୁ ବୁଝାଇବାକୁ ଆରମ୍ଭ କଲାଣି । ବିଜ୍ଞାନ କହିଲେ ଅମୁକ ବିଜ୍ଞାନ ବା ସମୁକ ବିଜ୍ଞାନକୁ ନୁହେଁ, ମାତ୍ର ମୂଳତଃ ଏକ ବିଜ୍ଞାନୀ ଆଗ୍ରହ ଓ ଆଖି ନେଇ ଜୀବନର ନିକଟବର୍ତ୍ତୀ ହେବାର ଦୃଷ୍ଟିକୋଣଟିକୁ

ବୁଝାଇଲାଣି । ଜୀବ-ବିଜ୍ଞାନ ଜୀବନ-ବିଜ୍ଞାନକୁ ଉତ୍ତୋଳିତ ହୋଇଗଲାଣି ଏବଂ ଆମ ସାହିତ୍ୟରେ ମଧ୍ୟ ପ୍ରାୟ ସେହିଭଳି ଏକ ଉତ୍‌କ୍ରାନ୍ତି ସଂଘଟିତ ହୋଇଛି । ସାହିତ୍ୟ କହିଲେ ଦିନେ ପଦକୁ ପଦ ଯୋଡ଼ିବାକୁ ବୁଝାଉଥିଲା, ଚନ୍ଦ୍ରକୁ ଆଣି ମୁଖ ସହିତ ଯୋଡ଼ିବାର ଏକ ବିଶେଷ କାରିଗରିକୁ ବୁଝାଉଥିଲା । ଏହି କାରିଗରିରେ ଆମକୁ ଅଧିକ ପାକଳ ଓ ସିଦ୍ଧହସ୍ତ କରାଇବା ଲାଗି ଆମ ହାତରେ ସାହିତ୍ୟର ରୀତିଗୁଡ଼ାକୁ ଆଣି ଧରାଇ ଦିଆଯାଉଥିଲା । ସାହିତ୍ୟର ନାଟକୀୟତାକୁ ହିଁ ସାହିତ୍ୟର ପ୍ରାୟ ସର୍ବମହତ୍ତ୍ୱଶାଳୀ ଉପାଦାନ ବୋଲି ବିଚାର କରାଯାଉଥିଲା । ଯାହା ବିହ୍ୱଳ କରି ରଖିବ, ଯାହା ବିଗଳିତ କରି ଆଣିବ, ଭୁଲାଇ ନେବ, ତାହାକୁ ହିଁ ଅସଲ ସାହିତ୍ୟିକତା ବୋଲି କୁହାଯାଉଥିଲା । ଏବେ ସାହିତ୍ୟ କହିଲେ କ୍ରମେ ଏକ ନିର୍ଦ୍ଦିଷ୍ଟ ସମ୍ବଳ କରି ଧରି ଜୀବନକୁ ଲୋଡ଼ିଯିବାକୁ ବୁଝାଇଲାଣି । ଜୀବନର ସକଳ ଶାସ୍ତ୍ର ଏବେ ସାହିତ୍ୟର ଅନ୍ତର୍ଗତ ହୋଇ ଆସିଲାଣି । ବିଜ୍ଞାନ ବି ସାହିତ୍ୟ ହେଲାଣି, ଇତିହାସ ସାହିତ୍ୟ ହେଲାଣି, ରାଜନୀତି ଓ ଅର୍ଥନୀତି ସାହିତ୍ୟ ହେଲେଣି—ଯୁଗର ଦୃଷ୍ଟିକୁ ବଦଳାଇବାରେ ମଧ୍ୟ ସାହିତ୍ୟ ପୁରୋଗାମୀ ହୋଇ ବାହାରିଲାଣି । ଖାଲି ଭାଷ୍ୟରେ ବା ଖାଲି ବ୍ୟାଖ୍ୟାରେ ସାହିତ୍ୟିକର ବ୍ୟାକୁଳତାଗୁଡ଼ାକ ଆଉ ଆଦୌ ମେଣ୍ଟିପାରୁ ନାହିଁ; ସିଏ ଆହୁରି ଅନେକ ଅଧିକର ସ୍ୱପ୍ନ ଦେଖିଲାଣି, ଆହୁରି ଅନେକ ଅଧିକ ଆବାଦ ଲାଗି ମଞ୍ଜି ବୁଣି ବାହାରିଲାଣି, ଆମ ଜୀବନର ଡୋରିଗୁଡ଼ାକୁ ସିଏ ଏକ ଅନ୍ୟ ଆତ୍ମୀୟତାରେ ବାନ୍ଧି ରଖିବାକୁ ବାହାରିଲାଣି । ଆମେ ଯେଉଁମାନେ ସାହିତ୍ୟକୁ ବାସଘରେ ବନ୍ଦ କରି ରଖିବାର ଆଣ୍ଟ ଦେଖାଉଛୁ, ଦୁର୍ଭାଗ୍ୟବଶତଃ ସେହିମାନେ ହିଁ ଜୀବନ ନାମରେ ଏକ କଳ୍ପିତ ବାସରଘର ଭିତରେ ବନ୍ଦ ହୋଇ ରହିଯାଉଛୁ । ଆଗେ କୁଆଡ଼େ କଳା ଲାଗି କଳାର ସେବନ କରାଯାଉଥିଲା । ଏବେ ସାହିତ୍ୟ ଲାଗି ହିଁ ସାହିତ୍ୟର ସେବନ କରିବାର ଏକ ପୁରୁଣା ନିଶା ଆମକୁ ହୁଏତ ତଥାପି କାମୁଡ଼ି କରି ଧରିଛି । ଯେଉଁ ସମାଜରେ ନାନା କାରଣରୁ ଏପର୍ଯ୍ୟନ୍ତ ସେହି ସମାଜସ୍ଥ ସମସ୍ତଙ୍କ ବିଷୟରେ ଚିନ୍ତା କରିବା ଆରମ୍ଭ ହୋଇ ନାହିଁ, ସାଧାରଣତଃ ସେହି ସମାଜର ପ୍ରତିଷ୍ଠିତ ବର୍ଗ ଏବଂ ପ୍ରତିଷ୍ଠିତ ସାହିତ୍ୟ ଆମକୁ ସାହିତ୍ୟ ଓ କଳା ଲାଗି ସାହିତ୍ୟ ଓ କଳାର ଧୂଆଁବାଣ ଭିତରେ ମଜାଇ ରଖିବାର ଚେଷ୍ଟା କରିଥାଏ । ଯେଉଁ ମୁହୂର୍ତ୍ତରେ ସମାଜ କହିଲେ ସମସ୍ତଙ୍କୁ ବୁଝାଏ, କଳା କହିଲେ ସମସ୍ତଙ୍କର କଳାତ୍ମକ ଜୀବନକୁ ବୁଝାଏ ଏବଂ ସାହିତ୍ୟ କହିଲେ ସମସ୍ତଙ୍କ ଜୀବନର ସମ୍ପଦ ଓ ସମ୍ଭାବନା ଗୁଡ଼ିକୁ ଏକ ଉନ୍ମୋଚନ-ଦ୍ୱାର ଯୋଗାଇ ଦେବାକୁ ବୁଝାଇବାକୁ ଆରମ୍ଭ କରେ, ସେହି ମୁହୂର୍ତ୍ତରୁ ହିଁ ସାହିତ୍ୟର ସେହି ଅନ୍ତଃପୁରସ୍ଥ ବିଶେଷ ବେଶଟି ଆପେ ଆପେ ଖସି ପଡ଼େ, ସାହିତ୍ୟ ଜୀବନର ଯାବତୀୟ ଆକୃତିକୁ ସ୍ପର୍ଶ କରିବାକୁ ଆରମ୍ଭ କରେ, ସାହିତ୍ୟ ମଣିଷର ସହଚର

ହୋଇ ବାହାରେ । ସେତେବେଳେ ସାହିତ୍ୟ କହିଲେ ଜୀବନର କୌଣସି ଏକ ବିଶେଷ ଚିତାପଇତାକୁ ବୁଝାଏ ନାହିଁ । ସାହିତ୍ୟ କହିଲେ ଜୀବନକୁ ହିଁ ବୁଝାଏ, ଜୀବନର ମହିମାମୟ ବିପୁଳତାକୁ ବୁଝାଏ ।

ଯବନ ସାରା ଆକାଶକୁ ଦେଖି ବାହାରିଥାଏ; ସାରା ଜୀବନକୁ ଠୂଳ କରି ଦେଖିବାର, ଠୂଳ କରି ଆଘ୍ରାଣ କରିବାର ସରାଗ ନେଇ ବାହାରିଥାଏ । ଯିଏ କ୍ଷମତାର ବାଡ଼ି ଧରି ସବୁକିଛିକୁ ଗୋଟାସୁଦ୍ଧା ସାବାଡ଼ କରି ଗୋଟାଏ ପ୍ରକାର କରି ଗଢ଼ିବାକୁ ଜିଦ୍ କରିବାରେ ଲାଗିଥାଏ, ସିଏ କେବଳ ତାହାରିଟିକୁ ହିଁ ସହିବାର ଦୁଃବୃତ୍ତି ଧରି ହନ୍ତସନ୍ତ ହେବାରେ ଲାଗିଥାଏ । ସିଏ ଆମ ସମସ୍ତଙ୍କୁ ଖାଲି ହନ୍ତସନ୍ତ କରିବାରେ ଲାଗିଥାଏ । ତାହାଦ୍ୱାରା ଆଉ ସବୁକିଛି ହୁଏ ପଛକେ, ସାହିତ୍ୟ ହୁଏ ନାହିଁ । ସିଏ ବିଶେଷଜ୍ଞ ହୁଏ, ଏକାଧିପତ୍ୟ ବିସ୍ତାର କରି ତାହାରି ଭିତରେ କୁଆଡ଼େ ଆତ୍ମଗୋପନ କରି ରହିଯାଏ । ହାତରେ ପରଶୁ ଧରି ସିଏ ସଂସାରଟାକୁ ନିକ୍ଷତ୍ର କରିବାକୁ ବାହାରେ, କେବଳ ଆପେ ଜଣେ ମାତ୍ର କ୍ଷତ୍ରିୟ ହୋଇ ରହିବାକୁ ଇଛା କରୁଥାଏ । ସିଏ ସାହିତ୍ୟର ବନରେ ମତ୍ତହସ୍ତୀ ପରି ପ୍ରକାଶ କରେ । ଯାହା ପାଏ, ସବୁ ଦଳିଦିଏ । ସବୁଯାକ ପୁରସ୍କାରକୁ ଆପେ ନେଇ ଛୁ' କରିବାକୁ ମନ ବଳାଇଥାଏ । ସିଏ ସାହିତ୍ୟ ଲାଗି ଭୂମି ହୋଇପାରେ ନାହିଁ, ସିଏ ଜନନୀ ହୋଇପାରେ ନାହିଁ । ଆଗାମୀ ପବନଟିକୁ ମୁକୁଳାଇ ଦେଇ ପାରିବା ଲାଗି ସିଏ ଆଉ ବିହନ ହୋଇ ରହିପାରେ ନାହିଁ । ସିଏ ରାଜନୀତି ଭିତରେ ରାଜନୀତି ହିଁ ଦେଖେ, ସାହିତ୍ୟ ଭିତରେ କେବଳ ସାହିତ୍ୟର ମାଟି ଗଦାଟାକୁ ଦେଖିବାରେ ଲାଗିଥାଏ । ମୁହୂର୍ତ୍ତଗୁଡ଼ାକୁ କେବଳ ମୁହୂର୍ତ୍ତ ପରି ଦେଖୁଥାଏ—ସିଏ ପହର ପହରକେ ବେଶ ବଦଳାଉଥାଏ, ପହର ପହରକେ ନୂଆ ଧୂର୍ତ୍ତତାରେ ସମସ୍ତଙ୍କୁ ବାଉଳା କରିଦେବ ବୋଲି ଆଣ୍ଠ କରିଥାଏ । ଯବନ ତା'ର ସବୁଯାକ ଆଣ୍ଠ ଭାଙ୍ଗିଦିଏ । ଭଗବାନ ଆସି ଦାମ୍ଭିକ ଦୈତ୍ୟମନର ଆଣ୍ଠ ଭାଙ୍ଗି ଦେଲାପରି ଯବନ ତା'ର ଆଣ୍ଠ ଭାଙ୍ଗିଦିଏ, ତା'ର ବିଭାଜନଗୁଡ଼ାକୁ ଗୋଳାଇଘାଣ୍ଟି ପକାଏ, ତା'ର ବାରଣ ଓ ଏକାଧିପତ୍ୟଗୁଡ଼ାକୁ ସିଧା ଅସ୍ୱୀକାର କରେ । ସାହିତ୍ୟ ଜୀବନ ସହିତ ମିଶିଯାଏ, ଏହି ପ୍ରତିମାଟି ସହିତ କେଉଁ ସୂତରରେ ଯୋଡ଼ି ହୋଇଯାଏ । ଜାତି ସହିତ ଗୋଳାଇ ଘାଣ୍ଟି ହୋଇଯାଏ, ସବୁଯାକ ସ୍ପର୍ଶକାତରତା ଏବଂ ତଜ୍ଜନିତ ଦୌରାତ୍ମ୍ୟଗୁଡ଼ାକ ଗୋଟାଏ ଫୁତ୍କାରରେ କୁଆଡ଼େ ଛତ୍ରଭଙ୍ଗ ଦେଇ ପଳାଏ । ଇତିହାସରେ ଏମିତି ଅନେକଥର ହୋଇଛି । ଅନେକ ସଜଡ଼ା ଘର ଉଜୁଡ଼ି ଯାଇଛି । ଆମର ଆଧୁନିକ ଯୁଗରେ ସେଇଟି ହିଁ ଏକ ବିଶେଷ ତାତ୍ପର୍ଯ୍ୟର ସହିତ ଅଭିନୀତ ହେବାରେ ଲାଗିଛି ।

ତେଣୁ ସାହିତ୍ୟ ଆଉ ଖାସ୍‌ମା ହାଲ ହୋଇ ରହିବ ନାହିଁ, ମୋ ଭିତରେ ରହିଥିବା ଅନବଛାତ କେଉଁ ଭ୍ରମର ଅଥବା ବିରୁଡ଼ି ଲାଗି ତାହା କଦାପି ଏକ ଗୁମ୍ଫା ହୋଇ ରହିବ ନାହିଁ । ଖସି ପଳାଇ ଯାଇ ଅଭୟ ଲାଭ କରିବାର ଏକ ପ୍ରକ୍ଷେପିତ ମଠ୍ୟକଠର ହୋଇ ରହିବ ନାହିଁ । ସାହିତ୍ୟ ଦାଣ୍ଡକୁ ଆସିବ, ତାହା ସୂର୍ଯ୍ୟ କିରଣ ଓ ମୁକ୍ତ ପବନ ପରି ଆମ ଦାଣ୍ଡକୁ ଆସିବ, ଆମ ଜୀବନ ସହିତ ସମବ୍ୟାପୀ ହୋଇ ରହିବ । ଆମକୁ ଗୋଟାସୁଦ୍ଧା ଆଲୋଡ଼ିତ କରି ପାରିବ, ଆମର ସଙ୍ଗୀ ହୋଇ ରହିବ । ସଙ୍ଗୀ ପରି ଉତ୍‌ପ୍ରେରଣା ଦେଉଥିବ, ସଙ୍ଗୀ ପରି ଆମର ଖୋଳଗୁଡ଼ାକ ମଧ୍ୟରୁ ଆମକୁ ବାହାର କରି ନେଇ ପାରୁଥିବ । ଆମର ମୁଖାଗୁଡ଼ାକୁ ଖସାଇ ଦେଇ ଯାଉଥିବ । ଏହି ଦୃଷ୍ଟିରୁ ସାହିତ୍ୟ ମଧ୍ୟ ମୂଳତଃ ଏକ ଯବନର କାର୍ଯ୍ୟ କରୁଥିବ, ଯବନର ବାସନା ରଖିଥିବ, ଯବନର ଅନୁରାଗ ନେଇ ଜୀବନର ନିକଟବର୍ତ୍ତୀ ହେବାରେ ଲାଗିଥିବ ।

ଯେଉଁମାନେ ଆପଣା ଭିତରର ଯବନଟାକୁ ଭୟ କରୁଥାନ୍ତି, ତାହା ସହିତ ଏକାଠି ଘର କରି ରହି ତାହାକୁ ତଥାପି କୁମ୍ଭୀର ପ୍ରାୟ ମଣୁଥାନ୍ତି, ସଚରାଚର ସେହିମାନେ ହିଁ ସାହିତ୍ୟକୁ ସତେଅବା ଖଣ୍ଡେ ମଲ୍ଲୀମାଳ ପରି ବିଚାରୁଥାନ୍ତି ଏବଂ ତାହାକୁ ନିଜ ବିଛଣାଟି ଉପରେ ଆଣି ଛିଞ୍ଚାଡ଼ି ଦେବାର ବେଉସାରେ ଲାଗି ରହିଥାନ୍ତି । ସେମାନେ ସାହିତ୍ୟର ମୋହିନୀ କିମ୍ବା ଭୁବନମୋହିନୀ ବେଶଟିକୁ ସବାଆଗ ଚିହ୍ନନ୍ତି, ସର୍ବଶେଷରେ ମଧ୍ୟ ସେତିକି ଚିହ୍ନାରେ ରହିଯାନ୍ତି, ବୁଢ଼ା ହୋଇ ଯାଆନ୍ତି । ଏହି ବେଶଟି ଉପରେ ସେମାନେ କେତେ ଭାବପ୍ରବଣତାର ସରଳବଣୀ ବୋଳି ସେଇଟିକୁ ମୋଟା କରି ରଖିବାର ଫିକରରେ ଲାଗିଥାନ୍ତି—ସାହିତ୍ୟକୁ ଜାତୀୟ ସାହିତ୍ୟ ବୋଲି କହନ୍ତି, ସାହିତ୍ୟର କଥା କହିଲାବେଳେ ପେଟରେ ପେଟେ ଗର୍ବ ଭରି ଦାମ୍ଭିକତାରେ ଫୁଲି କରି ରହିଥାନ୍ତି । ଆପଣାର ଅସଲ ବେଶ ଅର୍ଥାତ୍ ଅସଲ ସତ୍ୟଟି ପାଖରେ ପହଞ୍ଚି ନ ପାରି ସେମାନେ ଏହି ସବୁ ସଖୀନାଚରେ ନିଜକୁ ବାଉଳା କରି ରଖିଥାନ୍ତି । ନିଜର ଅସଲ ପରିଚୟଟି ଲାଗି ସାହସ ନକରି ଓ ଜୀବନ ସହିତ ଅସଲ ସଙ୍ଗମଟିର ସ୍ପର୍ଦ୍ଧା କରି ନପାରି ସେମାନେ ଏହିସବୁ ଥେଇ ଥେଇ କାରବାର କରିବାରେ ଲାଗିଥାନ୍ତି । ତିଳ ଚିହ୍ନର ବହୁଳତାରେ ନିଜର ଅସଲ ଦେହଟିକୁ ସତେଅବା କୁଆଡ଼େ ବୁଡ଼ାଇ ଦେଇ ରଖିଥାନ୍ତି । ନିଜର ସାହିତ୍ୟ ଜରିଆରେ ସେମାନେ ଜୀବନକୁ କେବେହେଲେ ସ୍ପର୍ଶ କରି ପାରନ୍ତି ନାହିଁ । ଆଲୁଅଗୁଡ଼ାକୁ ଏକା ଭୋଗ କରିବେ ବୋଲି ଆପଣାର ଚତୁର୍ଦ୍ଦିଗରେ ରାତ୍ରି ଘୋଟାଇ ରଖିଥାନ୍ତି । ରାତ୍ରି ନ ହେଲେ ଏମାନେ ଭେଣ୍ଡା ହୋଇ ପାରନ୍ତି ନାହିଁ ।

ଏହିମାନଙ୍କୁ ଅବାକ୍ କରି ଦେବାପାଇଁ ଯବନମାନେ ଆସି ଉଭା ହୁଅନ୍ତି । ଏହିମାନଙ୍କୁ ଅବାକ୍ କରି ଜୀବନର ତରୁଣ ହରିଣଟି ଶୃଙ୍ଗରୁ ଶୃଙ୍ଗ ଉଠିଯିବାରେ ଲାଗିଥାଏ ।

 ତା୧୪।୦୪।୧୯୭୬ ରିଖ

# ତେର

ଭାରତୀୟ ସଭ୍ୟତା ଓ ଭାରତୀୟ ସଂସ୍କୃତି ବିଷୟରେ ଯେକୌଣସି କଥା ପଢ଼ିବା ମାତ୍ରକେ ସବାଆଗ ଶ୍ରୀଯୁକ୍ତ ଆନନ୍ଦ କୁମାରସ୍ୱାମୀଙ୍କ କଥା ମନେପଡ଼ିଯାଏ । ଶ୍ରୀଯୁକ୍ତ କୁମାରସ୍ୱାମୀ ପଣ୍ଡିତ ଥିଲେ, ଜ୍ଞାନୀ ଥିଲେ, ଶାସ୍ତ୍ର ଭିତରକୁ ତାଙ୍କର ଗଭୀର ପ୍ରବେଶ ଥିଲା; ଖାଲି ଭାରତର ପ୍ରାଚୀନ ଭାଷାଗୁଡ଼ିକୁ ନୁହେଁ, ଏସିଆ ତଥା ଇଉରୋପର ପ୍ରାଚୀନ ଭାଷାଗୁଡ଼ିକୁ ଆୟତ୍ତ କରି ସିଏ ବିଭିନ୍ନ ଧର୍ମ ଓ ସଂସ୍କୃତିର ସର୍ବମୂଳ ଭାଷାଭିବ୍ୟକ୍ତିଗୁଡ଼ିକୁ ଚିହ୍ନିବା ଲାଗି କେତେ କେତେ ପ୍ରୟାସ କରିଥିଲେ । ମାତ୍ର ତାଙ୍କ ବିଷୟରେ ସବୁଠାରୁ ବଡ଼ କଥା ହେଉଛି ଯେ ଏହି ସଂସ୍କୃତି ଓ ଏହି ସଭ୍ୟତାକୁ ସିଏ ଭଲପାଇ ଜାଣିଥିଲେ । ସିଏ ଏଠି ଆମ ଐତିହ୍ୟ ଓ ପରମ୍ପରାର ଅସଲ ପ୍ରାଣଟିକୁ ଆବିଷ୍କାର କରି ପାରିଥିଲେ । ଆମ ଅତୀତ ଭିତରେ ରହିଥିବା ଚିରନ୍ତନ ସଙ୍କେତଟିକୁ ଠାବ କରି ପାରିଥିଲେ । ସେ ଆପଣାର ଚେରଟିକୁ ଭଲ ପାଉଥିଲେ; ଆପେ ଯେଉଁ ମାଟି ଉପରେ ଠିଆ ହୋଇଛନ୍ତି, ସେହି ମାଟିଟି ପ୍ରତି ସେ କୃତଜ୍ଞ ଅନୁଭବ କରି ପାରୁଥିଲେ । ସିଏ ମୂର୍ତ୍ତିଟିକୁ ଯଥାର୍ଥ ଭାବରେ ଚିହ୍ନିଥିଲେ, କାରଣ ମୂର୍ତ୍ତିଟି ମଧ୍ୟରେ ରହିଥିବା ମର୍ମଟିକୁ ହିଁ ସେ ଚିହ୍ନିଥିଲେ, ତାହାକୁ ଏକ ପ୍ରତ୍ୟକ୍ଷ ଉପସ୍ଥିତି ବୋଲି ଅନୁଭବ କରୁଥିଲେ । ତେଣୁ, ଆମର ଇତିହାସ, ପ୍ରତ୍ନତତ୍ତ୍ୱ, ଶାସ୍ତ୍ରଶିଳା ଏବଂ ସ୍ଥପତିଗୁଡ଼ାକ ତାଙ୍କର ଅଧ୍ୟୟନ ଅର୍ଥାତ୍ ଧର୍ମପ୍ରବେଶ-ଦୃଷ୍ଟିର ସ୍ପର୍ଶଲାଭ କରି ସତେଅବା ଜୀବନ୍ୟାସ ପାଇ ଉଠିଲାପରି ମନେ ହେଉଥିଲା । ଜାତୀୟତା ଅର୍ଥାତ୍ ଜାତୀୟ ଆତ୍ମାକୁ ଚିହ୍ନିବା ଲାଗି ସେ ଆମକୁ ସତେଅବା ଏକ ନୂତନ ଆଖି ଯୋଗାଇ ଦେଇଥିଲେ । ଆମକୁ ଯଥାର୍ଥ ଆଖିଟିକୁ ହିଁ ଯୋଗାଇ ଦେଇଥିଲେ ।

କୁମାରସ୍ୱାମୀଙ୍କ ସମସାମୟିକ ଭାବରେ ଏବଂ ତାଙ୍କ ପୂର୍ବରୁ ଭାରତୀୟ ସଂସ୍କୃତିର ଅଧ୍ୟୟନ କରିବା ଲାଗି ମହାପଣ୍ଡିତମାନେ ବିଦେଶରୁ ଭାରତକୁ ଆସୁଥିଲେ । ସେମାନେ ଭାରତବର୍ଷକୁ ସତେଅବା ଗୋଟାଏ ବିରାଟ ମିଉଜିଅମ୍ ପରି ପ୍ରତ୍ୟକ୍ଷ କରି ତାହାରି ଦ୍ୱାରା ଆକୃଷ୍ଟ ହୋଇ ଏଣେ ଆସୁଥିଲେ । କେଡ଼େ ସରାଗରେ ସେମାନେ ଆପଣାକୁ ଜଣେ ଜଣେ ଓରିଏଣ୍ଟାଲିଷ୍ଟ୍ ବୋଲି କହୁଥିଲେ । ସେହିମାନଙ୍କର ତତ୍ପରତାରେ

ଇଉରୋପର କେତେ କେତେ ବିଶ୍ୱବିଦ୍ୟାଳୟ ଓ ବିଶେଷ ବିଦ୍ୟାଳୟମାନଙ୍କରେ ଓରିଏଣ୍ଟାଲ୍ ଷ୍ଟଡ଼ିଜ୍‌ର ନୂତନ ବିଭାଗମାନ ଖୋଲିଲା, ପ୍ୟାରିସ୍ ବା ଲଣ୍ଡନ୍ ପ୍ରଭୃତି ନଗରୀରେ ଖାସ୍ ଓରିଏଣ୍ଟାଲ୍ ସଭ୍ୟତା ଓ ସଂସ୍କୃତି ସହିତ ପରିଚିତ ହେବାଲାଗି ବିଶେଷ ମିଉଜିଅମ୍‌ମାନ ମଧ୍ୟ ଖୋଲିଲା । ଭାରତୀୟ ମୂର୍ତ୍ତିଗୁଡ଼ାକ ବିଲାତଯାଏ ବୁହା ହୋଇଗଲା, ଭାରତୀୟ ପୋଥିଗୁଡ଼ାକୁ ଆନ୍ତର୍ଜାତିକ ଖ୍ୟାତି ଓ ସ୍ୱୀକୃତି ଦେବାଲାଗି ଭାରତରେ କେତେ ଗାଦୀର ଥାକ ଭଙ୍ଗାହେଲା । ସଂଗ୍ରହାଳୟ ବଢ଼ିବା ସଙ୍ଗେ ସଙ୍ଗେ ସଂଗ୍ରହକାରୀମାନେ ମଧ୍ୟ ବଢ଼ିଲେ । ପିମ୍ପୁଡ଼ି ଯେତିକି ସରାଗରେ ଦୁନିଆଯାକର ଦରବକୁ ନିଜର ଗାତ ଭିତରକୁ ବୋହି ଆଣିବାକୁ ବାହାରିଥାଏ, ପ୍ରାୟ ସେତିକି ସରାଗ ଓ ସେତିକି ତତ୍ପରତା ସହିତ ପଣ୍ଡିତମାନେ ଭାରତବର୍ଷକୁ ଆସି ଏଠି ପ୍ରାୟ ବିସ୍ମୃତ ହୋଇ ପଡ଼ିଥିବା କାଠିକୁଟାଗୁଡ଼ାକୁ ବୋହି ନେଇ ମିଉଜିଅମ୍‌ର ଖାଲି କକ୍ଷଗୁଡ଼ାକୁ ଭରି ଦେବାରେ ଲାଗିଲେ । ଜିଆ ଯେତିକି ସରାଗରେ ମାଟି ଗାଳେ, ପ୍ରାୟ ଯେତିକି ଅଥବା ତାହାଠାରୁ ଅଧିକ ସରାଗରେ ସେମାନେ ଭାରତୀୟ ଧର୍ମ ଓ ସଂସ୍କୃତି ବିଷୟରେ ଶାସ୍ତ୍ର ଲେଖିଲେ, ଶାସ୍ତ୍ର ଗାଳିଲେ । ସେମାନେ ପ୍ରାୟ ବାହାରେ ବାହାରେ ରହିଗଲେ, ବାହାରେ ବାହାରେ ଖଣ୍ଡା ବୁଲାଇ ବାହାରେ ବାହାରେ ବୀରତ୍ୱ ଦେଖାଇଲେ ଏବଂ ଯଶସ୍ୱୀ ହେଲେ । ପୁରୋଗାମୀ ହୋଇଥିବାର ଖ୍ୟାତି ପାଇଲେ । ଏକ ଭିନ୍ନ ଆଗ୍ରହ ନେଇ କୁମାରସ୍ୱାମୀ ଭାରତୀୟ ବିଦ୍ୟାର ନିକଟବର୍ତ୍ତୀ ହୋଇଥିଲେ । ମିଉଜିଅମ୍‌ର କୌଣସି ଆଗ୍ରହ ନେଇ ସେ କୌଣସି ବିଦ୍ୟାର ନିକଟବର୍ତ୍ତୀ ହେବାକୁ କେବେ ମନ ବି କରୁ ନଥିଲେ । ସେ ଜ୍ଞାନକୁ ନିଜ ଜ୍ଞାନୋପଲବ୍ଧିର ଏକ ଅଙ୍ଗ ବୋଲି ମନ ବି କରୁ ନଥିଲେ । ଆପଣାର ଗବେଷଣା ତାଙ୍କୁ ଆଖି ଦେଇ ଯାଉଥିଲା, ତାଙ୍କୁ ହୃଦୟ ଦେଇ ଦେଖିବାର ଅସଲ କଳାଟିକୁ ଶିଖାଇ ଦେଇ ଯାଉଥିଲା । ସଂସ୍କୃତି କହିଲେ ଯେ ଏକ ସଂସ୍କୃତିମୟ ଜୀବନକୁ ବୁଝାଏ, ଏକ ସଂସ୍କୃତିମୟ ରୁଚି ଏବଂ ସଂସ୍କୃତିମୟ ଦୃଷ୍ଟିକୁ ବୁଝାଏ, ନାନା ସଂସ୍କୃତି ଓ ନାନା ଧାରାରୁ ବିଚାର, ଦୃଷ୍ଟାନ୍ତ ତଥା ଅନ୍ତଃଦୃଷ୍ଟିମାନ ଆଣି ଶ୍ରୀଯୁକ୍ତ କୁମାରସ୍ୱାମୀ ଆମକୁ ସେହି କଥାଟିକୁ ବୁଝାଇ ଦେବାଲାଗି ଚେଷ୍ଟା କରୁଥିଲେ ।

ଆଗେ ମଣିଷ ସଭ୍ୟ ନ ଥିଲା, ଏବେ ସଭ୍ୟ ହେଲା; କାରଣ ମଣିଷ ପାଖରେ ସେତେବେଳେ ଅଧିକ ପରିମାଣରେ ଦ୍ରବ୍ୟସାମଗ୍ରୀ ନ ଥିଲା ଏବଂ ଏବେ ଆମ ପାଖରେ ସେଗୁଡ଼ାକ ଯାହାକୁ ଯେତେ ଭରପୂର ହୋଇ ରହିଛି;–ଆମ ଭିତରୁ ଅନେକ ଲୋକ ଏହିପରି ଏକ କୁଯୁକ୍ତିର କାନ ଧରି ସଭ୍ୟତା ଏବଂ ସଂସ୍କୃତିର ବିଚାର କରିବାକୁ ମନ ବଳାଇଥାନ୍ତି । ଆଗେ ମଣିଷର ବାସନାଗୁଡ଼ାକୁ ହୁଏତ ଟିପ ଆଗରେ ଗଣିହୋଇ

ଯାଉଥିଲା, ଏତେ ଆଡ଼କୁ ବାସନା କରି ହେବ ବୋଲି ସିଏ ହୁଏତ କଳ୍ପନା ହିଁ କରିପାରୁ ନ ଥିଲା । ଏବେ ଆମ ବାସନାର ଦାଣ୍ଡିଗୁଡ଼ାକ ତିନିପୁରକୁ ଲମ୍ବିଯାଇ ପାରିଲାଣି, ତେଇଶିଟା ରନ୍ଧ୍ର ଆଉ ତେତିଶିଟା କଳାକବାଟ ଦେଇ ତାହା କେତେକେତେ ଅନାହତ ଆୟତନ ଭିତରେ ଯାଇ ପ୍ରବେଶ ବି କରି ପାରିଲାଣି । ପୂର୍ବର ମଣିଷ ତୁଳନାରେ ଆମର ସମ୍ପତ୍ତିଗୁଡ଼ାକ କେତେ ନା କେତେ ଗୁଣରେ ବୃଦ୍ଧିପ୍ରାପ୍ତ ହେଲାଣି । ଏହି ସମ୍ପତ୍ତିଗୁଡ଼ାକୁ ସାଇତି ରଖିବା ଲାଗି କେତେ ପ୍ରକାରର ତୋଳି ତିଆରି ହେଲାଣି, ଏଗୁଡ଼ାକ ବିଷୟରେ ଉଲ୍ଲସିତ ହୋଇ ଗାଇ ପାରିବା ଲାଗି କେତେ ଶାସ୍ତ୍ର ଓ ସାହିତ୍ୟର ଭିଆଣ ହେଲାଣି; ଏହି ଦ୍ରବ୍ୟଗୁଡ଼ାକ ଯେ ଆମର ସମ୍ପତ୍ତି ଓ ଏହି ବାସନାଗୁଡ଼ାକ ଯେ ଆମ ପାଖରେ ସଂସ୍କୃତି ରହିଛି ବୋଲି ପ୍ରମାଣ କରି ଦେଖାଇ ଦେବାଲାଗି ଗୋଟିଏ ଗୋଟିଏ ସର୍ବଶ୍ରେଷ୍ଠ ପରିଚାୟକ, ଆମର ପ୍ରତ୍ୟୁତ୍ପନ୍ନମତିତାଗୁଡ଼ାକ ଏଯୁଗରେ ତାହାରି ଘୋଷଣା କରି କେତେ ଝଣ୍ଡା ଧରି କେତେ କେତେ ଚାଳକୁ ଲଟାଇଯାଇ ସାରିଲାଣି । ଆମକୁ ବାହାବାହା ଦେଇ ଆମ ସମୀକ୍ଷକମାନେ କେତେ ଠାଣିରେ ଓ ଆଡ଼ମ୍ବରମୟ କେତେକେତେ ତୁଳନାଶୈଳୀରେ କେତେ କ'ଣ କହି ଶିଖିଲେଣି । ବାସନା ବଢ଼ୁଛି, ତେଣୁ ସଭ୍ୟତା ବଢ଼ୁଛି; ଏବଂ ଏହିଗୁଡ଼ାକର ଜରିଆରେ ଆମ ସଂସ୍କୃତି ମଧ୍ୟ ବଢ଼ୁଛି, ନିଃସନ୍ଦେହ ଭାବରେ ବଢ଼ୁଛି—ଆପଣା ପାଖରେ ଏହିପରି କେତେ କ'ଣ ଯୁକ୍ତି ବାଢ଼ି ଆମେ ଆପଣା ଭିତରେ ରହିଥିବା ସମୀକ୍ଷକ ଆତ୍ମକଳନାକାରୀଟିର ମୁହଁଟିକୁ ମଧ୍ୟ ପ୍ରାୟ ବନ୍ଦ କରିଦେଇ ସାରିଲୁଣି । ଏହିପରି ଭାବରେ ଚାଲିଥିବା ବିପଣିଟି ହିଁ ଆମକୁ ସବୁଠାରୁ ବଢ଼ିଆ ବିପଣି ପରି ମନେ ହେଉଛି  କୁମାରସ୍ୱାମୀ ଏଇଠି ଆମ ପାଖରେ ରହିଥିଲେ ଠିକ୍ ଓଲଟା କଥା କହନ୍ତେ ।

ସିଏ କହନ୍ତେ, ବାସନାଗୁଡ଼ାକ ବଢ଼ିଲେ ସଂସ୍କୃତି କଦାପି ଆପେ ଆପେ ବଢ଼ିଯାଏ ନାହିଁ । ଦ୍ରବ୍ୟସାମଗ୍ରୀ ବହୁଗୁଣିତ ଓ ବହୁସ୍ତୂପିତ ହେଲେ ମଧ୍ୟ ସଂସ୍କୃତି ବଢ଼େ ନାହିଁ । ମାତ୍ର ଆମ ବାସନାଗୁଡ଼ାକର ଗୁଣାତ୍ମକତାରେ ସତତ ପରିମାର୍ଜନ ହେବାରେ ଲାଗିଥିଲେ କେବଳ ତାହାରିଦ୍ୱାରାହିଁ ସଂସ୍କୃତି ଅସଲ ଘରଟିକୁ ଧରି ରହିପାରେ । ତେଣୁ ସଂସ୍କୃତି ଏକ ସମ୍ପତ୍ତି ନୁହେଁ, ସଂସ୍କୃତି ହେଉଛି ଏକ ଯୋଗ୍ୟତା । ସଂସ୍କୃତି ଏକ ମଣ୍ଡନ ନୁହେଁ, ସଂସ୍କୃତି ହେଉଛି ଜୀବନ, ବା ଜୀବନକୁ ଏକ ବିଶେଷ ସ୍ୱଭାଗ ଅର୍ଥାତ୍ ସ୍ୱକୀୟତା ଆଣିଦେଇ ପାରୁଥିବା ଓ  ଜୀବନକୁ ଏକ ବିଶେଷ ସ୍ୱଭାବ-ପରିପ୍ରେରିତ ରଙ୍ଗରେ ଉକୁଟାଇ ପାରୁଥିବା ଏକ ଜଳବାୟୁ । ଏଠି ଆମ ଚାରିପାଖରେ ଯାହାକିଛି ରହିଛି, ଏଗୁଡ଼ାକୁ ଆମରି ବୋଲି କହିବା ଆଦୌ ସଂସ୍କୃତି ନୁହେଁ,—ଏଗୁଡ଼ାକୁ ସୁମାରି କରି ସୁନାଖିଲ ମାରି ରଖିଥିବା ଖାତାଗୁଡ଼ାକ ହିଁ ଆମ ସଂସ୍କୃତିର ଇତିବୃତ୍ତ ନୁହେଁ । ଆମ ଜୀବନ ଭିତରେ

ଏଗୁଡ଼ିକ ଯେତିକି ପରିମାଣରେ ଭେଦି ପାରିଛି, ଅର୍ଥାତ୍ ଆମ ଜୀବନରେ ଏକ ଗୁଣାତ୍ମକ ଉତ୍କ୍ରାନ୍ତି ଏବଂ ଉତ୍ତୋଳନ ଆଣି ଦେବାରେ ଏସବୁ ଆମଲାଗି ଯେତିକି ସହାୟକ ହୋଇ ପାରିଛି, ଆମେ ସେତିକି ପରିମାଣରେ ହିଁ ଏଗୁଡ଼ାକୁ ସଂସ୍କୃତିର ଆୟତନ ଭିତରେ ସୁମାରି କରି ପାରିବା । ଏକଦା ଅନେକ ବ୍ୟକ୍ତି ହୁଏତ ଭାବୁଥିଲେ ଯେ ଯେଉଁଠାରେ ଯେଡ଼େବଡ଼ ସଂଗ୍ରହାଳୟ ରହିଛି, ସେଠାରେ ହୁଏତ ମଣିଷର ବି ତା ସଂସ୍କୃତି ଲାଗି ସେତେ ବେଶୀ ଆଗ୍ରହ ରହିଛି । ସେହିପରି ବିଚାର କରୁଥିବା ବ୍ୟକ୍ତି ହୁଏତ ଏବେ ମଧ୍ୟ ଆମ ଭିତରେ ଥୋକେ ଥୋକେ ରହିଛନ୍ତି । ଯେଉଁ ମନ୍ଦିରରେ ଯେଡ଼େ ବଡ଼ ଘଣ୍ଟା ବାଜୁଛି, ସେହି ମନ୍ଦିରର ଦିଅଁଙ୍କୁ ସେତିକି ବଡ଼ ବୋଲି କହିବାରେ ଆମକୁ ଅନେକ ସମୟରେ କିଞ୍ଚିତ୍ ଆତ୍ମପ୍ରସାଦ ମିଳିଥାଏ ସତ, ମାତ୍ର ସେଥିରେ ସେହି ଦିଅଁଙ୍କର କୌଣସି ଲାଭ ହୁଏ ନାହିଁ ଅଥବା ତାଙ୍କୁ ଏଡ଼େବଡ଼ ବୋଲି କହୁଥିବା ଆମର ମଧ୍ୟ କୌଣସି ଲାଭ ହୁଏ ନାହିଁ । ତଥାପି କାଳେ କାଳେ ଅନେକ ବ୍ୟକ୍ତି ଯେ ଏପରି ଭାବି ଆସିଛନ୍ତି, କରି ଆସିଛନ୍ତି ଓ ଆନନ୍ଦରେ ହରିବୋଲ ଦେଇ ଆସିଛନ୍ତି, ଆମର ପକ୍ଷ ସମର୍ଥନ କରି ହୁଏତ କେବଳ ଏତିକି ମାତ୍ର ଦର୍ଶାଯାଇ ପାରିବ ।

କଳାର ଆଦୌ କୌଣସି ପ୍ରଦର୍ଶନୀ ହେବା ଉଚିତ କି ? ଏହିପରି ଏକ ମୂଳ ପ୍ରଶ୍ନର ଉତ୍ଥାପନ କରି ଶ୍ରୀ କୁମାରସ୍ୱାମୀ ଏକଦା ଗୋଟିଏ ପ୍ରବନ୍ଧ ଲେଖିଥିଲେ । ଆମ ଦେଶରେ ଏପରି ଅନେକ କଳାନୁରାଗୀ ସ୍ୱତନ୍ତ୍ର ମତିମାନେ ଅଛନ୍ତି, ଯେଉଁମାନେ କଳାତ୍ମକ ଜୀବନର ସନ୍ତକ ବା ନମୁନାଗୁଡ଼ାକୁ ସଂଗ୍ରହ କରିବା ଲାଗି କେତେ କୁଆଡ଼େ ବୁଲନ୍ତି । କୋଉଠୁ ମୁଖା ସଂଗ୍ରହ କରନ୍ତି, କୋଉଠୁ ସେଇ କାଳର ପାନଡ଼ବା, ପିକଦାନୀ ଅଥବା ପିଲିସଙ୍ଗଗୁଡ଼ାକୁ ସଂଗ୍ରହ କରନ୍ତି । ମାଣବସା ସମୟରେ ତୁମ ଆମ ଗାଆଁରେ ପହଞ୍ଚି କାନ୍ଥରେ ଓ ଦୁଆର ବନ୍ଧରେ ପଡ଼ିଥିବା ଚିତାଗୁଡ଼ାକର କମନୀୟ ଛାୟାଚିତ୍ରମାନ ଉଠାଇ ଆଣନ୍ତି । ଏଠୁ ସୋଲକାମର ନମୁନା ଆଣନ୍ତି, ସେଠୁ ଚାନ୍ଦୁଆ ଆଣି ଯାଆନ୍ତି, ପୁଣି ଆଉ କୋଉଠି ସିଙ୍ଗା, ବାଡ଼ି, ବଇଁଶୀଗୁଡ଼ାକୁ ମଧ୍ୟ ସଂଗ୍ରହ କରି ଆଣନ୍ତି । ସଂଗୃହୀତ ସବୁଯାକ କଳା-ପଣ୍ୟଗୁଡ଼ିକୁ ଆଣି ଏମାନେ ଭୁବନେଶ୍ୱରରେ ପୂରାନ୍ତି ଅଥବା ଦିଲ୍ଲୀ ଯାଏ ବୋହି ନେଇ ଯାଆନ୍ତି । ମୂର୍ତ୍ତିଗୁଡ଼ାକର ଭାଗ୍ୟ ଥିଲେ ଏହିମାନଙ୍କର କରୁଣାରେ ସେମାନେ ସାଗର ଓ ଆକାଶ ଅତିକ୍ରମି ଆଉ କେଉଁଠି ଯାଇ ପହଞ୍ଚି ଯାଆନ୍ତି । ମଣିଷର ଏହି ସୌନ୍ଦର୍ଯ୍ୟ–ସଂଗ୍ରହର ଲିପ୍ସା ପାଖରେ ପ୍ରକୃତରେ ମୁଣ୍ଡ ନୁଆଁଇବାକୁ ହିଁ ହୋଇଥାଏ । ଏହି ଲିପ୍ସାର ପ୍ରେରଣାରେ କୁଆଡୁ କେତେ କେତେ ଜିନିଷ ସଂଗୃହୀତ ହୋଇ ଆସେ, ଅନ୍ଧାର ଭିତରୁ ଆଲୋକକୁ ଆସେ, ଅଜ୍ଞାତ ମଧ୍ୟରୁ ଲୋକଗୋଚରକୁ ଆସେ, ଜୀବନ

ଭିତରୁ ପ୍ରଦର୍ଶନୀକୁ ଆସେ । ସହରରେ ପ୍ରଦର୍ଶନୀମାନ ବସେ, ଅଥବା ଯୋଜନା କରି ବସାଯାଏ । ଉଚ୍ଚ ପାଚେରୀର ବେଢ଼ ଦେଇ ବସାଯାଏ, ନାନା ରଙ୍ଗ ଓ ନାନା ନବରଙ୍ଗର ଲାସ୍ୟମଣ୍ଡନ ଦ୍ୱାରା ବସାଯାଏ, ଗୁଣକୁ ଛଅଗୁଣ ଶୋଭାରେ ଚଉକଷ କରି ବାନ୍ଧି ରଖାଯାଏ ଏବଂ ଆମେ ସମସ୍ତେ ସେହି ପ୍ରଦର୍ଶନୀକୁ ଦେଖିବାକୁ ଯାଉ । ଆମେ ଯେଉଁମାନେ ସେହି ଯୁଗ ଗୁଡ଼ାକୁ ଓ ସେହି ଜୀବନଗୁଡ଼ାକୁ କୋଉ ପଛରେ ଛାଡ଼ି ଆସିଲୁଣି, ଅନ୍ୟ କେତେପ୍ରକାର କୃତ୍ରିମତା ଦ୍ୱାରା ଆମେ ଯେଉଁମାନେ କେଡ଼େ ବହଳରେ ପ୍ରାୟ ଗୋଟାସୁଦ୍ଧା କଳାପଡ଼ି ସାରିଲୁଣି, ଏଇଠି ଏହି ସହର ଭିତରେ ଅନ୍ୟ କଙ୍କଣ ଓ ଅନ୍ୟ କିଂକିଣି ଗୁଡ଼ାକରେ ଆମେ ଯେଉଁମାନେ ଆତଯାତ ହେବାରେ ଲାଗିଛୁ, ଅନ୍ୟ ଆକାଶକୁ ଆଶ୍ରା କରି ରହିଛୁ ଓ ଅନ୍ୟ ରାତ୍ରିଗୁଡ଼ାକୁ ଭଜିବାରେ ଲାଗିଛୁ, ଆମେ ସବୁ ସେହି ପ୍ରଦର୍ଶନୀକୁ ଦେଖିବାକୁ ଯାଉ । ଆମେ ଏଗୁଡ଼ାକୁ ଆମର ସମ୍ପତ୍ତି ବୋଲି ଅନୁଭବ କରିବାଲାଗି ପ୍ରଦର୍ଶନୀ ଭିତରକୁ ଯାଉ । ଯେଉଁ ଗାଆଁରେ ବରଷକୁ ବରଷ ଅଷ୍ଟପ୍ରହରୀ ହୁଏ, ସେଠାରେ କଦାପି ଗିନି, ଝାଂଜ ଓ ମୃଦଙ୍ଗର ପ୍ରଦର୍ଶନୀ ହୁଏ ନାହିଁ । ଯେଉଁଠାରେ ଦୋଳବେଳକୁ ଲଉଡ଼ିଖେଳ ହୁଏ, ଚଇତରେ ଝାମୁ ହୁଏ, ଦଣ୍ଡନାଟ ବାହାରେ, ମକରକୁ ମକର ପର୍ବ ହୁଏ, ସେଠାରେ ଓଡ଼ିଶାର ଲୋକପର୍ବଗୁଡ଼ାକୁ ନେଇ କଦାପି କୌଣସି ପ୍ରଦର୍ଶନୀ ବସେ ନାହିଁ । ସେଠି ଜୀବନକୁ ନେଇ ବଞ୍ଚି ହୁଏ, ମାତ୍ର ପ୍ରଦର୍ଶନ କରିହୁଏ ନାହିଁ । ଗୋଠରୁ ଗାଈ ଧରି ଘରକୁ ଫେରିଲାବେଳେ, ଶଗଡ଼ ଅଡ଼ାଇ ନେଲାବେଳେ ବା ଯାତ୍ରା ଦେଖି ଗଲାବେଳେ ଯିଏ ଆପେ ଆପେ ଗୀତ ଗାଏ, ସିଏ କେବେହେଲେ ଲୋକଗୀତର ସଂଗ୍ରହ କରି ବାହାରେ ନାହିଁ । ଯିଏ ଗୋଡ଼କୁ ଲମ୍ବାଇ ଦେଇ ସାହୀଯାକର ଛୁଆଙ୍କ ଆଗରେ ଏବେ ବି ଚିରୋର୍ବର ଭାବରେ ପେଡ଼ୀ ଖୋଲି ଦେଇ ରାଜକନ୍ୟାଠାରୁ ଆରମ୍ଭ କରି ବାବନାଭୂତ ପର୍ଯ୍ୟନ୍ତ ସମସ୍ତଙ୍କର କାହାଣୀ କହିପାରେ, ସିଏ କଦାପି ଲୋକକାହାଣୀ ସଂଗ୍ରହ କରିବାକୁ ଯାଏ ନାହିଁ । ଶ୍ରୀଯୁକ୍ତ କୁମାରସ୍ୱାମୀ ତାଙ୍କର କୌଣସି ଏକ ନିବନ୍ଧରେ କହିଛନ୍ତି ଯେ, ଯେତେବେଳେ ଲୋକ-ଜୀବନରୁ ସଂଗୀତ ମରି ମରି ଯାଏ, ହୁଏତ ସେତିକିବେଳେ ଯାଇ ପଣ୍ଡିତ ଓ ଗବେଷକମାନେ ଲୋକଗୀତର ସଂଗ୍ରହ କରି ବାହାରନ୍ତି; ଲୋକ ଜୀବନରୁ କାହାଣୀ ବିଦା ହୋଇଗଲେ, ସେତେବେଳେ ଯାଇ ସେଗୁଡ଼ାକ ସଂଗୃହୀତ ହୋଇ ବିଡ଼ା ବିଡ଼ା ହୋଇ ଅଧ୍ୟୟନ-ଶାଳାକୁ ବୁହାଯାଏ । ଲୋକ ଜୀବନ, ଲୋକସମ୍ବନ୍ଧ ଏବଂ ଲୋକାନୁଷ୍ଠାନଗୁଡ଼ିକରୁ କଳାତ୍ମକତା ମରି ମରି ଆସିଲେ କଳାକୁ ଏକ ଦ୍ରବ୍ୟରୂପେ ସଂଗ୍ରହ କରି ସଂଗ୍ରହାଳୟ ଭର୍ତ୍ତି କରିବାର ପାରଙ୍ଗମତା ଦେଖିବାକୁ ମିଳିଥାଏ ଏବଂ କଳାର ପ୍ରଦର୍ଶନୀ ହୁଏ । ଯେଉଁମାନେ ଏହି ପ୍ରଦର୍ଶନୀଗୁଡ଼ାକୁ କରନ୍ତି ବା କରାନ୍ତି,

ସେମାନେ ସ୍ୱୟଂ ସେହି କଳାଗୁଡ଼ିକ ମଧ୍ୟରେ ନଥାନ୍ତି, ଅର୍ଥାତ୍ ସେମାନଙ୍କ ଜୀବନରେ ସେହି କଳାଗୁଡ଼ିକର କୌଣସି ସ୍ଥାନ ନଥାଏ, ହୁଏତ ଆଦୌ କୌଣସି କଳାତ୍ମକତାର ସ୍ଥାନ ହିଁ ନଥାଏ ।

ଅର୍ଥାତ୍ ସଂସ୍କୃତିକୁ ବଞ୍ଚୁଥିବା ମଣିଷ ସଂସ୍କୃତିକୁ ଏକ ସମ୍ପତ୍ତି ବୋଲି ଅନୁଭବ କରେ ନାହିଁ ଏବଂ ସଂସ୍କୃତିକୁ କେବଳ ସମ୍ପତ୍ତି ବୋଲି ଅନୁଭବ କରି ପାରିଲେ ଯାଇ ସଂସ୍କୃତିର ପ୍ରଦର୍ଶନ କରିହୁଏ । ଯିଏ ସଂସ୍କୃତିକୁ ନେଇ ବଞ୍ଚିଥାଏ, ତାହାର ଜୀବନ ହିଁ ସେହି ସଂସ୍କୃତିର ସର୍ବଶ୍ରେଷ୍ଠ ବାହକ, ଦ୍ୟୋତକ ଓ ଦୃଷ୍ଟାନ୍ତ ହୋଇ ରହିଥାଏ । କୌଣସି ଘରେ ପ୍ରବେଶ କରି ସେହି ଘର ଭିତରେ କୋଉଠି କ'ଣ ସବୁ କେଉଁ ବାଗରେ ରଖାଯାଇଛି, ସେକଥା ଦେଖିବା ପୂର୍ବରୁ ସେହି ଘରେ ବାସ କରୁଥିବା ମଣିଷଙ୍କ ସହିତ କିଞ୍ଚିତ୍ ସମ୍ପର୍କରେ ଆସିବା ସଙ୍ଗେ ସଙ୍ଗେ ହିଁ ଯେପରି ଘରର ପରିମଳଟି ଭାରି ସହଜରେ ଧରା ପଡ଼ିଯାଏ, ଠିକ୍ ସେହିପରି ଭାବରେ, ମଣିଷର ଜୀବନକୁ ସ୍ପର୍ଶ କରିବା ମାତ୍ରକେ ହିଁ, ଅର୍ଥାତ୍ ଗୋଟାଏ ଜଳବାୟୁ ଭିତରେ ଯାଇ ପ୍ରବେଶ କରିବା ମାତ୍ରକେ ହିଁ ସେହି ଜଳବାୟୁ ବା ସେହି ସଂସ୍କୃତିଟି ଆପେ ଧରା ପଡ଼ିଯାଏ । ମାତ୍ର ଯେଉଁଠି ଜୀବନ ସହିତ ସଂସ୍କୃତିର କୌଣସି ଖିଅ ଲାଗି ନଥାଏ, ଯେଉଁଠାରେ ଜୀବନ-ଘରର ସଂସ୍କୃତି ବୋଲି ହୁଏତ ଆଦୌ କୌଣସି ଖୁଣ୍ଟ ନଥାଏ କିମ୍ବା ଚେର ବି ନଥାଏ, ଅଧିକାଂଶ କ୍ଷେତ୍ରରେ ସେହିଠାରେ ହିଁ ପ୍ରଦର୍ଶନୀର ପ୍ରୟୋଜନ ହୁଏ;–କହିବାର ପ୍ରୟୋଜନ ହୁଏ ଏବଂ କହି ଓ ଦେଖାଇ ଗୌରବାନ୍ୱିତ ଅନୁଭବ କରିବାର ମଧ୍ୟ ପ୍ରୟୋଜନ ହୁଏ । ସେସବୁ ଥାନରେ ନ କହିଲେ ବା ନ ଦେଖାଇଲେ ସମ୍ଭବତଃ ଆପଣାକୁ ଆଦୌ ଚିହ୍ନି ହୁଏ ନାହିଁ । ଆପଣାର ମହିମା ଓ ମର୍ଯ୍ୟାଦାଟିକୁ ରୁଚିମନ୍ତ ଭାବରେ କୁଆଡ଼େ ମୋଟେ କଳନା କରିହୁଏ ନାହିଁ । ରାଜମହିମା ଓ ରାଜମର୍ଯ୍ୟାଦା ବିଷୟରେ ସଭାରେ ବିରାଜିତ ହୋଇ ରହିଥିବା ରାଜାଙ୍କର ହୃଦ୍‌ଗୋଚର କରାଇ ପାରିବାଲାଗି ପୂର୍ବେ ପ୍ରଦର୍ଶନୀର ଏକାନ୍ତ ପ୍ରୟୋଜନ ରହିଥିଲା । ଅର୍ଥାତ୍ ଗାଇବା, କହିବା ଓ ଚାଟୁ କରିବା ଲାଗି ନିଯୁକ୍ତ ଜଣେ ବା କେତେଜଣଙ୍କ ମୁଖରୁ ପ୍ରଶସ୍ତି ଗୁଡ଼ାକୁ ନଶୁଣିବା ପର୍ଯ୍ୟନ୍ତ ରାଜାମାନେ କୁଆଡ଼େ ଆପଣାର ଗୁଣ ଏବଂ ନୈପୁଣ୍ୟ ଗୁଡ଼ାକ ବିଷୟରେ ସଚେତନ ହୋଇପାରୁ ନଥିଲେ । ସେଥିଲାଗି ସେମାନେ ସଭାକୁ ବିଜେ କରିବା ମାତ୍ରକେ ହିଁ ସଭାର ଚାରଣ ସବାଆଗ ଗୀତ ଗାଇ ତାଙ୍କୁ ତାଙ୍କର ଘଟଣ ପରିଚୟଟି ପାଖକୁ ବାଟ କଢ଼ାଇ ନେଉଥିଲା । ହୁଏତ ଏଯୁଗରେ ଆମେ ଏପରି ମଣିଷ ପ୍ରକୃତରେ ଅନେକ ସଂଖ୍ୟାରେ ରହିଛୁ, ଯୋଉମାନଙ୍କୁ କି ସମ୍ପତ୍ତିଗୁଡ଼ାକୁ ଟଙ୍ଗାଇ ମଣ୍ଡାଇ ବିଭୂଷଣ କରି ଦେଖାଇ ନଦେଲେ ସେଗୁଡ଼ାକ ପ୍ରକୃତରେ ଆମର ସମ୍ପତ୍ତି ବୋଲି ମୋଟେ

ସ୍ମରଣ ହୋଇପାରେ ନାହିଁ । ମୋର ନିଜର ଯେ ଗୋଟାଏ ସଂସ୍କୃତି ରହିଛି, ମୋ' ଜୀବନର ଦିଗନ୍ତଗୁଡ଼ାକର ଯେ ଏକ ଭୂମି ରହିଛି, ଏକ ଉତ୍ସ ବି ରହିଛି, କେତେଟା ସଂଗ୍ରହ ଆକାରରେ ମୋତେ ସେଇଟାକୁ କୁହାଇ ନଦେଲେ ସେ ବିଷୟରେ ମୋର ହୁଏତ ମୋଟେ ଅବଧାନ ହୋଇପାରେ ନାହିଁ । ମାତ୍ର କୁହାଇ ଦେଲେ ପ୍ରକୃତରେ ଅବଧାନ ହୋଇଯାଏ କି ? ସଂସ୍କୃତିକୁ ସମ୍ପତ୍ତି କରି ପ୍ରଦର୍ଶାଇ ଦେଲେ, ସଂଗ୍ରହ ରୂପେ ଗଛାଇ ଦେଖାଇ ଦେଲେ, ମୁଁ ମୋର ସାଂସ୍କୃତିକ ନାଡ଼ୀଗୁଡ଼ିକ ବିଷୟରେ ପ୍ରକୃତରେ ସଚେତନ ହୋଇପାରେ କି ? ନା ଅଧିକାଂଶ ସ୍ଥଳରେ ଏହିସବୁ ପ୍ରଦର୍ଶନ ହୁଏତ ଏକ ମାଦକ ପରି କାର୍ଯ୍ୟ କରେ, ଯାହାକି ମୋତେ ସର୍ବଦା ଅସଲ ଯୋଗ୍ୟତା ଓ ଅସଲ ଆକାଂକ୍ଷାଗୁଡ଼ିକରୁ ବଞ୍ଚିତ କରି ରଖିବାର ଉପକ୍ରମ କରିବାରେ ଲାଗିଥାଏ ? ସମ୍ପତ୍ତିଗୁଡ଼ାକ ମୋତେ ମୋ'ର ସଂସ୍କୃତିଲାଗି ଅନ୍ତର୍ଗତ ଭାବରେ ଅଧିକ ପ୍ରସ୍ତୁତ ଓ ଚେତନଶୀଳ କରିବା ପରିବର୍ତ୍ତରେ ମୋତେ ହୁଏତ ଏକ ଅନ୍ଧ ଓ ଉଗ୍ର ଆତ୍ମସନ୍ତୋଷ ଭିତରେ କଠିନ ଏବଂ ଉଦ୍ଦଣ୍ଡ ହୋଇ ରହିବାକୁ ହିଁ ପ୍ରରୋଚନା ଦେଇ ଯାଉଥାଆନ୍ତି କି ? ଆମେ ଏହି ପ୍ରଶ୍ନଟିକୁ ନିଜକୁ ପଚାରି ପାରିବା ଓ ତାହାର ଉତ୍ତର ପାଇ ପାରିବା ।

ଏବର୍ଷ ବର୍ଷ-ଆରମ୍ଭରେ ଓଡ଼ିଶାର ରାଜଧାନୀରେ ଯେଉଁ ବିରାଟ ସଂସ୍କୃତି-ପ୍ରଦର୍ଶନୀଟି କରା ହୋଇଥିଲା, ସେଥିରେ ପ୍ରାୟ ସପ୍ତାହବ୍ୟାପୀ ଏକ ପୂର୍ବାଞ୍ଚଳ ସାଂସ୍କୃତିକ ସମ୍ମିଳନୀର ଅନୁଷ୍ଠାନ ବି ହୋଇଥିଲା । ପୂର୍ବାଞ୍ଚଳ, ଅର୍ଥାତ୍ ଭାରତବର୍ଷର ପୂର୍ବ ଭାଗରେ ଅବସ୍ଥିତ କେତୋଟି ରାଜ୍ୟ-ସମାହାରର ଏହି ଅଞ୍ଚଳ । ଏଥିରେ ଖାଲି ଓଡ଼ିଆ ନାହାନ୍ତି କି ଖାଲି ବଙ୍ଗାଳୀ ନାହାନ୍ତି, ଖାଲି ବିହାରୀ ନାହାନ୍ତି କି ଖାଲି ଆସାମୀ ନାହାନ୍ତି; ଏଥିରେ ମଣିପୁରୀ ଅଛନ୍ତି, ପ୍ରାୟ ଶତାଧିକ ଆଦିବାସୀ-ସମାଜ ରହିଛି । ସଭ୍ୟତାର ସବୁ ଯୁଗ ଓ ସବୁ ପର୍ଯ୍ୟାୟ ରହିଛି, ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଉଭୟ ରହିଛି, ଆଧୁନିକତା ରହିଛି । ଏହି ସମସ୍ତଙ୍କୁ ନେଇ ଗୋଟିଏ ସାଂସ୍କୃତିକ ସମ୍ମିଳନୀରେ ଏକତ୍ର ମଣ୍ଡାଇ ପାରିବା ଆଦୌ ସହଜସାଧ୍ୟ ହେବା ଉଚିତ ନୁହେଁ, ଏବଂ ତେଣୁ, ଯେଉଁମାନେ ଏହାକୁ ସମ୍ଭବ କରି ପାରିଲେ, ସେମାନେ ନିଶ୍ଚୟ ଆପଣାର ଅନେକ ସିଦ୍ଧତା, ଅଭିଜ୍ଞତା ଏବଂ କଳ୍ପନାକୁ କାମରେ ଲଗାଇ ତାହାକୁ ସମ୍ଭବ କରି ପାରିଲେ ବୋଲି କହିବାକୁ ହେବ । ସମ୍ମିଳନୀରେ ସର୍ବପ୍ରଧାନ ଭରଣା ହିସାବରେ ସେମାନେ ସେହି ଅଞ୍ଚଳଟିର ବିଭିନ୍ନ ଗବେଷଣା-କ୍ଷେତ୍ରରେ ବଡ଼ ବଡ଼ ପଣ୍ଡିତଙ୍କୁ ଏଠାକୁ ନିମନ୍ତ୍ରଣ କରି ଆଣିଥିଲେ । ଏହି ଆମନ୍ତ୍ରିତମାନେ ନିଜ ନିଜର ଲିଖିତ ପ୍ରବନ୍ଧମାନ ପଢ଼ିଲେ । ସେମାନଙ୍କ ଲାଗି ନିର୍ବାଚିତ କରି ଦିଆ ଯାଇଥିବା ବିଷୟଗୁଡ଼ିକ ଉପରେ ସେମାନେ ପ୍ରବନ୍ଧଗୁଡ଼ିକୁ ପ୍ରସ୍ତୁତ କରି ଆଣିଥିଲେ । ଭାରତୀୟ

ସାହିତ୍ୟକୁ, ଭାରତୀୟ ଧର୍ମକୁ, ଭାରତୀୟ ସଂସ୍କୃତି ତଥା ଭାରତୀୟ ଅମୁକକୁ ବା ସମୁକକୁ ପୂର୍ବାଞ୍ଚଳର ସାହିତ୍ୟ, ଧର୍ମ, ସଂସ୍କୃତି ଅଥବା ଅମୁକର ବା ସମୁକର ଯାହାସବୁ ଅବଦାନ ରହିଛି, ତାହାରି ବିଷୟରେ ହିଁ ଅଧିକାଂଶ ବା ହୁଏତ ପ୍ରାୟ ସବୁଯାକ ପ୍ରବନ୍ଧର ଯୋଜନା କରା ଯାଇଥିଲା । ପ୍ରବନ୍ଧଗୁଡ଼ିକର ବିଷୟ ବିଦଗ୍ଧ ବିଶେଷଜ୍ଞମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା, ତେଣୁ ସେଗୁଡ଼ିକ ଯେ ସମ୍ପୃକ୍ତ ସମସ୍ତଙ୍କ ପ୍ରତ୍ୟାଶା ମୁତାବକ ତିଆରି ହୋଇଥିଲା ଓ ଅନେକ ତଥ୍ୟ ଦ୍ୱାରା ସମନ୍ୱିତ ହୋଇ ରହିଥିଲା, ସେ ବିଷୟରେ ଆଦୌ କୌଣସି ସନ୍ଦେହ ନାହିଁ । ତଥାପି, ଯାହାକୁ ପୂର୍ବାଞ୍ଚଳ ବୋଲି କୁହା ଯାଉଥିଲା, ସେଇଟି ଭିତରେ ଯେ ଅଞ୍ଚଳ ଅଞ୍ଚଳ ଭିତରେ କେତେ ଦୂରତା ରହିଛି, ଅର୍ଥାତ୍ ପଣ୍ଡିତମାନେ ଯେ ଆପଣାର ପଡ଼ିଶା ଗୁଡ଼ିକ ବିଷୟରେ କେତେ ଅଳ୍ପ ଜାଣିଛନ୍ତି, ସେହି କଥାଟି ମଧ୍ୟ ଭାରି ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇ ଯାଉଥିଲା ।

ଭାରତୀୟ ଧର୍ମ-ସଂସ୍କୃତିକୁ ପୂର୍ବାଞ୍ଚଳର ଅବଦାନ ବିଷୟରେ ଯେତେବେଳେ ଓଡ଼ିଶାର ପଣ୍ଡିତମାନେ ସ୍ୱଲିଖିତ ପ୍ରବନ୍ଧମାନ ପଢୁଥିଲେ, ସେମାନେ ସେତେବେଳେ ପ୍ରାୟ ଗୋଟାସୁଦ୍ଧା କେବଳ ଓଡ଼ିଶାର ଅବଦାନ ବିଷୟରେ ହିଁ କହୁଥିଲେ, ବଙ୍ଗାଳୀ ଲେଖକ ବଙ୍ଗଳାର ଅବଦାନ ବିଷୟରେ ଏବଂ ଆସାମୀ ଲେଖକ ଆସାମର ଅବଦାନ ବିଷୟରେ ହିଁ ପ୍ରାୟ ସବୁକଥା କହୁଥିଲେ । ପରସ୍ପରର ପ୍ରତିବେଶୀ ହୋଇଥିଲେ ମଧ୍ୟ ଏବଂ ନାନା ଯୁଗପର୍ଯ୍ୟାୟରେ ପ୍ରାୟ ସେହି ଗୋଟିଏ ଧର୍ମ, ସାହିତ୍ୟ ଓ ସଂସ୍କୃତିର ଧାରାରେ ଜୁଆ ହୋଇ ଆସିଥିଲେ ମଧ୍ୟ ଆମେ ତଥାପି ପରସ୍ପରଠାରୁ ନିଜକୁ କେତେ ଦୂରଛଡ଼ା କରି ରଖିଛୁ, ସମ୍ମିଳନୀରେ ପ୍ରବନ୍ଧ ପାଠ ହେଉଥିବା ସମୟରେ ସେହି ଦୁଃଖଟା ବିଲକୁଲ ଧରା ପଡ଼ିଯାଉଥିଲା । ଯେଉଁମାନେ ଚୈତନ୍ୟ ଦେବଙ୍କ ବିଷୟରେ ଜାଣିଥିଲେ, ହୁଏତ ନିଖ ଆଉ ମଲୁଖଠାରୁ ଆରମ୍ଭ କରି ବଳଦ ମଇଁଷି ପର୍ଯ୍ୟନ୍ତ ସମସ୍ତଙ୍କର ଖବର ରଖିଥିଲେ, ସେମାନେ ଶଙ୍କରଦେବଙ୍କ ବିଷୟରେ ହୁଏତ କିଛିହେଲେ ଜାଣି ନଥିଲେ; କେବଳ ପ୍ରବନ୍ଧଟିକୁ ଯଥାସାଧ୍ୟ ପୂରଣ କରି ଦେଖାଇବା ଲାଗି ଜ୍ଞାନକୋଷ ଅଥବା ସାହିତ୍ୟ ଅଭିଧାନରୁ ତାଙ୍କ ବିଷୟରେ କେତେଟା ପଦ ଟିପିକରି ନେଇ ଆସିଥିଲେ । ଯିଏ ତେଣେ ଶଙ୍କରଦେବଙ୍କୁ ଡାଲି, ସନ୍ତୁଳା, ତିଅଣ ଓ ଶାକର ଏହିପରି କେତେ ଠାଆ କରି ବାଢ଼ି ଆଣିଥିଲେ, ସିଏ ଓଡ଼ିଶାର ପଞ୍ଚସଖାଙ୍କ ବିଷୟରେ ପ୍ରାୟ କିଛିହେଲେ ଜାଣିନଥିଲେ । ପୂର୍ବାଞ୍ଚଳ ବୋଲି ଯେ କୌଣସି ଏକକ ସାଂସ୍କୃତିକ ଅଞ୍ଚଳ ପ୍ରକୃତରେ କେଉଁଠି ହେଲେ ନାହିଁ ଏବଂ ଖାଲି କୂପବତ୍ ଅଞ୍ଚଳଗୁଡ଼ାକ ହିଁ ଏଠି ପାଚେରୀ ବିସ୍ତାର କରି ଆମର ଯାବତୀୟ ଅଧ୍ୟୟନକୁ ପରସ୍ପର ଠାରୁ ଅଲଗା କରି ରଖିଛନ୍ତି, ପ୍ରବନ୍ଧଗୁଡ଼ାକୁ ଶୁଣିଲାବେଳେ

ସେହି କଥାଟା ଭାରି ପଦାରେ ପଡ଼ି ଯାଉଥିଲା । ଦରିଦ୍ରକୁ ଦାରିଦ୍ର୍ୟର ସଚେତନତା ଆଣି ଦେଉଥିଲା ।

ଏବଂ ସାଂସ୍କୃତିକ ସମ୍ମିଳନୀର ସବୁଯାକ ଖାଦ୍ୟ ଇଂରାଜୀରେ ପାକ ହୋଇ ଆସିଥିଲା, ଇଂରାଜୀରେ ପରଷା ହେଉଥିଲା, ଏବଂ ସମ୍ଭବତଃ ସେହି ଇଂରାଜୀ ଭାଷାଟିକୁ ହିଁ ପାକବେଳେ ଇନ୍ଧନ ରୂପେ ବ୍ୟବହାର କରାଯାଇଥିଲା । ଯେଉଁଠାରେ ପଣ୍ଡିତମାନେ ପରସ୍ପରର ଭାଷାକୁ ହିଁ ଜାଣନ୍ତି ନାହିଁ, ଯେଉଁଠି ସେମାନେ କେବଳ ସାହୀ ପେଟରାଗୁଡ଼ାକୁ ଖୋଲି ଗାଆଁ-ଖବର କହିବାର ଦୁଃସାହସ କରି ବାହାରି ଥାନ୍ତି, ସେଠାରେ ସେମାନେ ଯେଉଁ ସାଂସ୍କୃତିକ ଐତିହ୍ୟର କଥା କହୁଛନ୍ତି, ସେହି ଐତିହ୍ୟର ଅବଦାନ ବୃହତ୍ତର ଲୋକଜୀବନ ଭିତରେ ଯେତେଯାହା ପ୍ରବିଷ୍ଟ ହୋଇ ରହିଥାଉ ଓ ତାହାକୁ ଯେତେଯାହା ପ୍ରଭାବିତ କରିଥାଉ ପଛକେ, ସେମାନଙ୍କ ନିଜ ଭିତରେ ଯେ ସେଇଟି ଆଦୌ ପ୍ରବେଶ କରି ପାରିନାହିଁ ଓ ସେମାନଙ୍କର ଅସଲ ଅଜ୍ଞତା ଓ ସ୍ପର୍ଶକାତରତା ଗୁଡ଼ାକୁ ଆଦୌ କାଟି ଦେଇ ପାରିନାହିଁ, ସେହି କଥାଟି ମଧ ଭାରି ସ୍ପଷ୍ଟ ହୋଇ ଯାଉଥାଏ । ଯେଉଁଠି ଓଡ଼ିଶାର ପଣ୍ଡିତ ବଙ୍ଗଦେଶର ପଣ୍ଡିତ ବୁଝିବା ଭଳି ବଙ୍ଗଳା କହି ପାରନ୍ତି ନାହିଁ, ଯେଉଁଠାରେ ବଙ୍ଗ ଦେଶର ପ୍ରବୀଣ ସାଂସ୍କୃତିକ ବିଶେଷଜ୍ଞ ଆସାମୀ ଭାଷାରେ ଆସାମବାସୀ ଆଉଜଣେ ପଣ୍ଡିତଙ୍କ ପାଖରେ ନିଜକୁ ବୋଧଗମ୍ୟ କରାଇବାରେ ଏକାନ୍ତ ଅସମର୍ଥ ହୁଅନ୍ତି, ଏବଂ ସ୍ୱପରିଚିତ ବୁଦାଗୁଡ଼ିକ ଭିତରେ ଇଂରାଜୀ ଭାଷାରେ ବଡ଼ ବୋଲାଇ ସମସ୍ତ ସମସ୍ୟାଟିର ସମାଧାନ କରିଦେଲେ ବୋଲି ବିଚାର କରୁଥାନ୍ତି, ସେଠାରେ କେବଳ ଭାଷାଗତ ଅସମର୍ଥତା ବ୍ୟତୀତ ଆହୁରି ଅନେକ ଅସମର୍ଥତା ଯେ ଆମକୁ କାମୁଡ଼ି କରି ଧରିଛି, ସେହି କଥାଟି ସତେଅବା ଜଳଜଳ ହୋଇ ଦିଶି ଯାଉଥାଏ । ପରସ୍ପରକୁ ବୁଝିବା ଲାଗି ଆମର ତଥାପି ଯେ ଗୋଟାଏ ଭାଷା ଅଛି, ଏହି ତିରିଶ ବର୍ଷରେ ଅନ୍ତତଃ ଆମ ପଣ୍ଡିତ ମାନଙ୍କର ସବାଆଗ ସେକଥା ଦେଖାଇ ଦେଇ ପାରିବା ଉଚିତ ଥିଲା । ମାତ୍ର ଆମର ନିଜ ଚେରଟି ମଧ ଯଦି ଆପଣାର ଭୂଇଁଟି ସହିତ ଲାଗି ନରହିଥାଏ, ଯଦି ସେହି କ୍ଷେତ୍ରରେ ଏକ ଯଥାର୍ଥ ଆତ୍ମୀୟତା ତଥାପି ସମ୍ଭବ ହୋଇ ନଥାଏ, ତେବେ ଆମଠାରୁ ତା'ଠାରୁ ଆହୁରି ବଡ଼ କଥାମାନ କିପରି ପ୍ରତ୍ୟାଶା କରାଯାଇ ପାରିବ ? ଇଂରାଜୀ ଭାଷାର ଯନ୍ତ୍ରଲଙ୍ଗଳ ଦେଇ ସେହି ସମ୍ମିଳନୀରେ ଆମ ପଣ୍ଡିତମାନେ ସଭା ମଣ୍ଡାଇ ଯେତେଯାହା କର୍ଷଣ କରିବାକୁ ଚେଷ୍ଟା କଲେ, ସେଭଳି ନକରି ଯଦି ଓଡ଼ିଶାର ପଣ୍ଡିତମାନେ ଓଡ଼ିଆ ଭାଷାରେ ସ୍ୱାଭାବିକ ଭାବରେ ଆପଣାର ପ୍ରବନ୍ଧଟିକୁ ପଢ଼ି ପାରିଥାନ୍ତେ, ଅର୍ଥାତ୍ ଇଂରାଜୀ ଅପେକ୍ଷା ଓଡ଼ିଆରେ ପ୍ରବନ୍ଧଟିକୁ ପଢ଼ିବା ଓ ପ୍ରସ୍ତୁତ କରିବାହିଁ ଅଧିକ ଉଚିତ ବୋଲି ଭାବିବାର ସାହସଟିକୁ

ଯଦି ଦେଖାଇ ପାରିଥାନ୍ତେ, ଯଦି ବିଭିନ୍ନ ରାଜ୍ୟରୁ ସମାଗତ ପଣ୍ଡିତମାନେ ସେହିଭଳି ହିନ୍ଦୀ, ବଙ୍ଗଳା କିମ୍ବା ଆସାମୀ ଭାଷାରେ ପ୍ରବନ୍ଧଗୁଡ଼ିକର ଉପସ୍ଥାପନା କରିଥାନ୍ତେ, ସମଗ୍ର ସମ୍ମିଳନୀଟିରେ ହୁଏତ ଅନେକ ପରିମାଣରେ କମ୍ ରସଭଙ୍ଗ ହୋଇଥାନ୍ତା, ଦୂରତା ଗୁଡ଼ାକ ଭାରି ହ୍ରାସ ହୋଇ ଆସିଥାନ୍ତା । ଇଂରାଜୀ ଭାଷାରେ ଦେ'ଣ ନେ'ଣ ହେଉଥିବା ସମୟରେ ଆମର ଏଠି ସଭାଗୁଡ଼ାକ ଯେପରି ସତେଅବା ଦରବାର ପରି ଲାଗେ । ଏହି ସମ୍ମିଳନୀରେ ସମସ୍ତେ ନିଜ ନିଜ ଭାଷାରେ ପ୍ରବନ୍ଧଗୁଡ଼ିକୁ ପାଠ କରିଥିଲେ ହୁଏତ ସେଭଳି ଲାଗି ନଥାନ୍ତା ସତ, ମାତ୍ର ଯଥାର୍ଥ ସମ୍ମାନ ଏବଂ ସହଭୋଜନ ଲାଗି ଏହାଦ୍ୱାରା ନିଶ୍ଚୟ ଅଧିକ ଅବକାଶ ମିଳି ପାରିଥାନ୍ତା । ମାତ୍ର ସେକଥା ସମ୍ଭବ କରିବାକୁ ହେଲେ ପଣ୍ଡିତକୁ ମଧ୍ୟ ଯବନର ଅନୁରାଗ ନେଇ ଜୀବନ ବଞ୍ଚିବାକୁ ହୁଏ, ଫନ୍ଦଗୁଡ଼ାକୁ ଡ଼େଇଁଯାଇ ପାରିବାକୁ ହୁଏ, ମୁଖାଗୁଡ଼ାକୁ କାଢ଼ି ଫୋପାଡ଼ି ଦେବାକୁ ହୁଏ । ତୁଚ୍ଛା ଜ୍ଞାନର ଅପବୃତ୍ତିକୁ ଛାଡ଼ି ଆତ୍ମୀୟତା ପାଖକୁ ଆସିବାକୁ ହୁଏ;– ସଂସ୍କୃତି କହିଲେ ଯେ ସର୍ବପ୍ରଥମେ ଓ ସର୍ବଶେଷରେ ମଣିଷକୁ ବୁଝାଏ, ମଣିଷ ସହିତ ମଣିଷକୁ ବାନ୍ଧି ରଖି ପାରୁଥିବା ଏକ ଅନୁଭୂତ ଐକ୍ୟକୁ ବୁଝାଏ, ଆମକୁ ସେହି କଥାଟାକୁ ଅଙ୍ଗେ ନିଭାଇବାକୁ ହୁଏ, ସେଇଟିର ପ୍ରୟୋଜନ ଅନୁଭବ କରିବାକୁ ହୁଏ । ଏବଂ ଏହି ଆତ୍ମୀୟତାଟି ନଥିଲେ ମଣିଷ ତା'ର ତଥାକଥିତ ଜ୍ଞାନରେ ଗୁଡ଼ାଇ ହୋଇ ରହିଯାଏ, ତା' ଆପଣା ପାଣ୍ଡିତ୍ୟର ଉଦରମ୍ଭରି ଅଜ୍ଞତାଗୁଡ଼ାକ ଭିତରେ ସେ ବିସ୍ମୃତ ହୋଇ ରହିଯାଏ, ଦୁଆରଗୁଡ଼ାକ ବହିଗୁଡ଼ାକର ଥାକ ଭିତରେ ସତେଅବା ବନ୍ଦ ହୋଇ ରହିଯାଏ ।

ଆମର ସଂସ୍କୃତି କହିଲେ କ'ଣ କେବଳ ଆମର ଅତୀତଟାକୁ ହିଁ ବୁଝାଏ ? ପାଣ୍ଡିତ୍ୟ କହିଲେ କଣ ଖାଲି ଅତୀତଟାକୁ ହିଁ ବୁଝାଏ ? ଆମ ପଣ୍ଡିତମାନେ ଏଇଠି ଆମରି ଭିତରେ ଥାଇ ମଧ୍ୟ ତଥାପି କ'ଣ ବର୍ତ୍ତମାନଟାକୁ ଗୋଟାସୁଦ୍ଧା ଆଖି ବୁଜିଦେଇ ବସିଥାନ୍ତି ଓ ସେଇଥିଲାଗି ଅନ୍ଧ ଦେଶରେ ଦର୍ପଣ ମୂଲାଇ ବୁଲୁଥାନ୍ତି ? ମାତ୍ର ଏଇଟା ସମ୍ଭବତଃ ଏକ ସମ୍ପୂର୍ଣ୍ଣ ସତକଥା ଯେ ସଂସ୍କୃତି କହିଲେ ଯେତେବେଳେ ଆଗ ଆମର ଜୀବନକୁ ବୁଝାନ୍ତା, ଆମ ସଂସ୍କୃତି ଯେତେବେଳେ ଆମ ବର୍ତ୍ତମାନର ଜିଜ୍ଞାସାଟାକୁ ହିଁ ସବାଆଗ ଆପଣାର ଅସଲ ଜିଜ୍ଞାସା ବୋଲି ଗ୍ରହଣ କରି ନିଅନ୍ତା, ସେତେବେଳେ ଆମ ସଂସ୍କୃତି ଭିତରୁ ଅନେକ ଅନେକ ଅହମିକା ଏବଂ ସେହି ଅହମିକା ତଳେ ଆତ୍ମଗୋପନ କରି ରହିଥିବା ସ୍ୱଜ୍ଞତାଗୁଡ଼ାକ ଅନେକ ପରିମାଣରେ ନିରାକୃତ ହୋଇଯାଆନ୍ତା । ସେତେବେଳେ ଆମ ନିର୍ବାସିତମାନେ ଆମର ଅନେକ ପାଖକୁ ଆସିଯାଇ ପାରନ୍ତେ । ସଭାମଣ୍ଡପ ଉପରେ ବସି ଆମେ ଯେତେବେଳେ ପୁରୁଣା ପାହାଡ଼-ଗୁମ୍ଫା, ପୁରୁଣା ଦେଉଳ,

ପୁରୁଣା ପୋଥି ଓ ପୁରୁଣା ଇତିହାସର ଆଲୋଚନା କରୁଥାଉ, ଆମେ ସେତେବେଳେ ସତେଅବା କେଡ଼େ ନିରାପଦ ଭାବରେ ଆମ ଅଜ୍ଞାନର ଗରାଗୁଡ଼ାକୁ ବର୍ତ୍ତମାନର ଆହ୍ୱାନ ଓ ଆବାହନଗୁଡ଼ାକ ପାଖରୁ ଲୁଚାଇ କରି ରଖିଥାଉ, ସେଗୁଡ଼ାକ ଉପରେ କାଳେ ବର୍ତ୍ତମାନର ଧାସ ଆସି ବାଜିଯିବ, ସେଥିଲାଗି ଆମେ ସେଗୁଡ଼ାକୁ ଆମ ପାଟ-ବସ୍ତାନିର ବିଦ୍ୟାଗୁଡ଼ାକ ଭିତରେ କେଡ଼େ ସୂତ୍ରରେ ବାନ୍ଧି କରି ରଖିଥାଉ । ଆମର ଜ୍ଞାନସାଗରମାନେ ଆଉ କେତେଦିନ ଯାଏ ଆମକୁ କେବଳ ଅତୀତର ପାଣିତଳେ କଣ ସବୁ ଲୁଚିକରି ରହିଛି, ଖାଲି ସେଗୁଡ଼ାକର କଥାହିଁ କହିବାରେ ଲାଗିଥିବେ ଓ ଆପଣାକୁ ରତ୍ନଗର୍ଭ ବୋଲି କହିବାରେ ଲାଗିଥିବେ ? ସେମାନେ ଆମକୁ ଉପରର ଏହି ତରଙ୍ଗଗୁଡ଼ିକ କଥା କେବେ କହିବେ, ଆମକୁ ଘେରି ରହିଥିବା ଜୀବନର ଏହି ଆକାଶଟା ବିଷୟରେ କେବେ କହିବେ, ସେମାନେ ଆଉ କେବେ ଯାଇ ରତ୍ନସମ୍ଭବ ହୋଇ ପାରିବେ ? ଯେତେଦିନ ଯାଏ ଅଧ୍ୟୟନ ଜ୍ଞାନଭୀରୁ ହୋଇ ରହିଥିବ, ଆଲୋକଭୀରୁ ଏବଂ ଆହ୍ୱାନଭୀରୁ ହୋଇ ରହିଥିବ, ସେତେଦିନ ଯାଏ଼ ଅନେକ ପ୍ରୟୋଜନରେ ପଡ଼ି ତାହା ହୁଏତ କେବଳ ଅତୀତମୁହାଁ ହୋଇ ରହିଥିବ, ତତ୍ତ୍ୱବିତ୍‌ମାନଙ୍କୁ କେବଳ ପ୍ରତ୍ନତତ୍ତ୍ୱବିତ୍ କରି ରଖିଥିବ, ଇତିହାସଗୁଡ଼ାକୁ ଖାଲି ଘଟି ଯାଇଥିବା ପ୍ରାଚୀନ ଘଟଣା ଭିତରେ ଶୀତଳ କରି ରଖିଥିବ, ଆଜି ପାହିଆସୁଥିବା ରାତିଟି ବିଷୟରେ, ଅର୍ଥାତ୍ କାଲିପାଇଁ ଅଭିପ୍ରେତ ହୋଇ ରହିଥିବା ସକାଳଟି ବିଷୟରେ ତାହା ଆମକୁ କିଛିହେଲେ କହିପାରିବ ନାହିଁ । ଯିଏ ଖାଲି ସଂଗ୍ରହ କରିବାରେ ଲାଗିଥିବ, ସମ୍ବେଦନଶୀଳ ହୋଇ ପାରିବ ନାହିଁ; ଖାଲି ସଜାଇ ଓ ଗଛାଇ ରଖିବାରେ ଲାଗିଥିବ ମାତ୍ର ସୃଜନଶୀଳ ହୋଇ ପାରିବ ନାହିଁ; ସିଏ ଆମ ଦେହରେ ଅନ୍ତଃସମ୍ଭୂତିର କୌଣସି କାଠି ଆଣି ଛୁଆଇଁ ଦେଇ ପାରିବ ନାହିଁ । କାଳଟାକୁ ଜ୍ଞାନବନ୍ଧ୍ୟା କରି ରଖିଥିବ ।

ଯବନ ଅତୀତକୁ ନିନ୍ଦେ ନାହିଁ, ପୂର୍ବପୁରୁଷଙ୍କୁ ନିନ୍ଦେ ନାହିଁ । ସେ ପ୍ରାଚୀନ ଦେବାଳୟକୁ ମଧ୍ୟ ନିନ୍ଦେ ନାହିଁ । ମାତ୍ର ବହଳ କନା ପରି ଏଗୁଡ଼ାକୁ ହାତରେ ଗୋଡ଼ରେ ବାନ୍ଧି ସିଏ କଦାପି ଏଇଠି ରହିଯିବାକୁ ବି ଚାହେ ନାହିଁ । ସଂସ୍କୃତି କହିଲେ ସିଏ କୌଣସି ମିଉଜିଅମ୍‌କୁ ବୁଝେ ନାହିଁ । ସିଏ ମିଉଜିଅମ୍‌କୁ ଯାଏ ସତ, ମାତ୍ର ମିଉଜିଅମ୍‌କୁ ହିଁ ସବୁଯାକ ଜ୍ଞାନର ଘର ବୋଲି ମାନି ନିଏ ନାହିଁ । କାରଣ, ବଞ୍ଚିବାକୁ ହିଁ ଧର୍ମ ବୋଲି ଗ୍ରହଣ କରି ଯବନ ସଂସାର ଭିତରେ ବାହାରିଥାଏ । ପୁରୁଣା ସୂତ୍ରଗୁଡ଼ିକୁ ଚିହ୍ନି ସେ ନୂଆ ଆହୁରି ଅନେକ ପାଇବାର ବିଦ୍ୟାଟିକୁ ଶିଖିବାର ଆଗ୍ରହ ରଖିଥାଏ । ପୁରୁଣା ଭିତରୁ ଶ୍ରଦ୍ଧା ନେଇ ସେ ନୂଆକୁ ଦେଖେ, ଅତୀତ ଭିତରୁ ଶ୍ରଦ୍ଧା ନେଇ ବର୍ତ୍ତମାନକୁ ଦେଖେ, ଆପଣାକୁ ଅନାଗତ ଲାଗି ବାହାରକୁ ବାହାର କରି ଆଣେ, ଆଗାମୀ ଜନ୍ମଟିକୁ

ସ୍ୱୟଂ ଧାରଣ କରି ରଖିବା ସକାଶେ ସିଏ ଏହି ବନ୍ଦୀଶାଳାଟି ଭିତରେ ମଧ୍ୟ ଦେବକୀ ହୋଇ ପାରିବାର ତପସ୍ୟା କରୁଥାଏ । ଯବନ ସଂସ୍କୃତିକୁ ଏକ ତପସ୍ୟା ରୂପେ ଗ୍ରହଣ କରେ, ଏକ ସମ୍ଭାବନା ରୂପେ ଗ୍ରହଣ କରେ । ଆପଣା ସଂସ୍କୃତିଚେତନାର ସେତୁଟି ଉପରେ ଚଢ଼ି ସିଏ ଅତୀତକୁ ବର୍ତ୍ତମାନର ଏହି ମଝିଶଙ୍ଖ ବାଟେ ଭବିଷ୍ୟତ ସହିତ ସମ୍ମିଳିତ କରି ରଖିବାର ସାହସ କରେ । ଶ୍ରଦ୍ଧା ଓ ସାହସର ବ୍ୟଞ୍ଜନା ଦେଇ ସିଏ ବର୍ତ୍ତମାନ ମଧ୍ୟଦେଇ ଅତୀତକୁ ଭବିଷ୍ୟତ ଆଡ଼କୁ ଲମ୍ବାଇ ନେଇଥାଏ ଏବଂ ବର୍ତ୍ତମାନଟାକୁ ମଧ୍ୟ ତା'ର ଅତୀତର ବୃହଦ୍‌ଭୂମିଟି ଉପରେ ଅପ୍ରମତ୍ତ ଭାବରେ ଦେଖି ପାରିବାକୁ ଚେଷ୍ଟାକରେ । ଯବନ ଅଞ୍ଚଳକୁ ଅଞ୍ଚଳଠାରୁ ଅଲଗା କରି ଦେଖେ ନାହିଁ; ସେଭଳି ଦେଖିବାରୁ ଯଦି ସାମୟିକ ଭାବରେ କୌଣସି ଆତ୍ମପ୍ରସାଦ ଲାଭ କରିବାର ସମ୍ଭାବନା ରହିଥାଏ, ତେବେ ସେ ଆପଣାକୁ ଜାଣିଶୁଣି ସେହି ଲାଭରୁ ବଞ୍ଚିତ କରି ରଖେ । ଯେଉଁମାନେ ଆସନଟା ଉପରେ ନବସି ଆସନଟା ସହିତ ବାନ୍ଧିହୋଇ ରହିଥାନ୍ତି, ସେମାନେ ସଂସ୍କୃତିଟାକୁ ମଧ୍ୟ ଅତୀତ ସହିତ ନେଇ ଜଡ଼ାଇ ରଖିବାକୁ ହିଁ ଅଧିକ ଲାଭଦାୟକ ମନେ କରନ୍ତି; ଆପଣା ଅହମିକାର ବିବରଗୁଡ଼ାକ ଭିତରେ ସେମାନେ ସଂସ୍କୃତି ବୋଲି ଏକ ଦ୍ରବ୍ୟରେ ଭର୍ତ୍ତି ହୋଇ ରହିଥିବା ପିଁପାଗୁଡ଼ାକୁ ସତେଅବା ପୋତିକରି ରଖିଥାନ୍ତି । ଆମ ପିଁପାଗୁଡ଼ାକରେ ଓ ଆମ ବିବରଗୁଡ଼ାକରେ ସବୁକିଛି ରହିଛି ବୋଲି ସେମାନେ ପ୍ରଦର୍ଶନୀ କରାନ୍ତି; ମନ ଭୁଲାନ୍ତି, ପ୍ରେରଣାଗୁଡ଼ାକୁ ସତେଅବା ବିବରମୁହାଁ କରି ରଖିଥାନ୍ତି ଏବଂ ବର୍ତ୍ତମାନଟାକୁ ବୋକା କରି ରଖିଥାନ୍ତି ।

ସଂସ୍କୃତିର ଅଧିକରୁ ଅଧିକ ଚର୍ଚ୍ଚା ହେଉ ବୋଲି ଯବନ ମଧ୍ୟ କାମନା କରୁଥାଏ, ଯବନ ବି ରତ୍ନ ଲୋଡ଼ି ବାହାରିବା ଲାଗି କହୁଥାଏ, ମାତ୍ର ଆମ ପ୍ରପିତାମହୀ ଭିକ୍ଟୋରିଆଙ୍କ ଅମଳରେ ସେହି ଦେଶରୁ ରତ୍ନରକ୍ଷିତମାନେ ଆସି ଆପଣାର ମିଉଜିଅମ୍‌ଗୁଡ଼ାକ ଲାଗି ଯେପରି ସଂସ୍କୃତିକୁ ସାଉଁଟି ବୁଲୁଥିଲେ, ଯବନ ସିଆଡ଼କୁ ମୋଟେ ମନ କରି ପାରେ ନାହିଁ । କାରଣ, ସୁନାମୁଣ୍ଡାଗୁଡ଼ାକ ଠାରୁ ସିଏ ମଣିଷକୁ ଅଧିକ ବୋଲି ଅନୁଭବ କରୁଥାଏ ଏବଂ ତେଣୁ ସଂସ୍କୃତି କହିଲେ ମୁଣ୍ଡା ମୁଣ୍ଡା ସୁନା ସଂଗ୍ରହ କରି ସେଗୁଡ଼ାକର ପ୍ରଦର୍ଶନ କରିବାକୁ ଆଦୌ ବୁଝୁ ନଥାଏ । ମଣିଷକୁ ଛାଡ଼ି କେଉଁଠି ହେଲେ କୌଣସି ସଂସ୍କୃତି ନାହିଁ । ଭାରତବର୍ଷରେ ନାହିଁ, ପୃଥିବୀରେ ନାହିଁ, ଆମର ଏହି ପୂର୍ବାଞ୍ଚଳରେ ମଧ୍ୟ ନାହିଁ; ତଳମାଳରେ ନାହିଁ, ଉପରମାଳରେ ନାହିଁ । ଯୁଗ-ଦୁର୍ଯୋଗର ଦୁଃସମୟ ଗୁଡ଼ାକରେ ମଣିଷକୁ ବହିଷ୍କୃତ କରି ରଖି ଅନେକ ସମୟରେ ସଂସ୍କୃତି ବୋଲି କହି ସୁନାମୁଣ୍ଡାଗୁଡ଼ାକର କେତେ ସଂଗ୍ରହ କରାଯାଇଛି, ଆମର ଏଇଠି ସବୁ ଅଛି ବା ଆମେ ପୃଥିବୀକୁ ଏତେ ନା

ଏତେ ଦେରକୁ ବୋଲି କହି ମଣିଷର ଅସଲ ଜିଦ୍‌ଗୁଡ଼ାକୁ ବିଣ୍ଡା ମାଡ଼ି କେତେ ବନ୍ଦ କରି ରଖି ଦିଆଯାଇଛି– ଆମ ବଗିଚାରେ ଅନେକ ଫୁଲ ଫୁଟିଛି ଓ ସଂସାର ଯାକରେ ଏପରି ଫୁଲ କେଉଁଠି ହେଲେ ନାହିଁ ବୋଲି କହି ମଣିଷକୁ ଏଇଠି ଏହି ସୁଆଙ୍ଗଗୁଡ଼ାକ ପାଖରେ ରାତିବାଉଲା କରି ବାନ୍ଧି ଦିଆଯାଇଛି । ମଣିଷର ଜୀବନ ଯେ ଗୋଟିଏ ଫୁଲ ପରି ଫୁଟି ଉଠି ପାରିବ, ଅତୀତରୁ ମହକ ନେଇ ଓ ଭବିଷ୍ୟ ଭିତରକୁ ମହକ ଛୁଟାଇ ବର୍ତ୍ତମାନର ଏହି ଯାବତୀୟ ସମ୍ବନ୍ଧର ମାଟି ଉପରେ ସିଏ ଯେ ଫୁଲଟିଏ ହୋଇ ଫୁଟି ଉଠି ପାରିବ ଓ ତା'ର ସବୁଯାକ ମହକ ଯେ ତା'ର ଅସଲ ସଂସ୍କୃତି ହୋଇ ତାକୁ ଉତ୍ତୋଳିତ କରିନେଇ ପାରିବ, ଯାବତୀୟ ପହଡ଼ ଓ ଯାବତୀୟ ସଭାର ବାହାରେ ରହିଥିଲେ ମଧ୍ୟ ଯବନ ଠିକ୍ ସେହି ସଂଜ୍ଞାଟିର ତଲାସରେ ବାହାରିଥାଏ । ସେହି ସଂଜ୍ଞାଟି ଭିତରେ ସିଏ ସତେ ଅବା କେଉଁ ବନ୍ଧୁଟିକୁ ଖୋଜି ବାହାରିଥାଏ । ଯେଉଁଠି ଯେଉଁ ବଗିଚାରେ ହେଉ ପଛକେ, ଅତୀତ ବା ବର୍ତ୍ତମାନ ଯେଉଁ କାଳରେ ହେଉ ପଛକେ, କୋଉଠି ଫୁଲଟିଏ ଫୁଟିଥିବାର ଅଥବା ଫୁଟି ଉଠୁଥିବାର ଦେଖିଲେ ଯବନ ସତେଅବା ବନ୍ଧୁଦର୍ଶନ ହୋଇଗଲା ପରି ଅନୁଭବ କରୁଥାଏ; ଭିତରେ ସିଏ ଯାହାର ଠାବ କରି ବାହାରି ଥାଏ, ବାହାରେ ସତେଅବା ତାହାରି ଠାବ ହୋଇଗଲା ପରି ଅନୁଭବ କରୁଥାଏ ।

ତା ୧୫ ।୦୫ ।୧୯୭୬ରିଖ



## ଚଉଦ

ଶାସ୍ତ୍ରର କଥନ ଅନୁସାରେ ଭଗବାନ କୁଆଡ଼େ ବାରବାର ଏହି ମର୍ତ୍ତ୍ୟଭୂମିକୁ ଆସନ୍ତି । ସିଏ ବେଳ ପଡ଼ିଲେ ଅଲବତ ଆସନ୍ତି, ଡ଼ାକିଲେ ବି ଅଲବତ ଆସନ୍ତି । ଗଜ ଡାକିଲାବେଳେ ଯେମିତି ଆସନ୍ତି, ଭରତିଆ ପକ୍ଷୀ ଡାକିଲାବେଳେ ବି ଠିକ୍ ସେମିତି ଆସନ୍ତି । ଭକ୍ତର କଷ୍ଟକୁ ସିଏ କୁଆଡ଼େ ମୋଟେ ସହିପାରନ୍ତି ନାହିଁ । ତେଣୁ ସିଏ ଯେଉଁଠାରେ ଥାଆନ୍ତୁ ପଛକେ, ଯାହା କରୁଥାଆନ୍ତୁ ପଛକେ, ସମନ ପହଞ୍ଚିବା ମାତ୍ରକେ ସିଏ ତତ୍କ୍ଷଣାତ୍ ବାହାରି ଆସନ୍ତି । ନ ଆସିବାର କଦାପି କରନ୍ତି ନାହିଁ । ଏହି ବିଷୟରେ ନିଜେ ଭଗବାନ କିଛି ଲେଖିନଥିଲେ ମଧ୍ୟ ଭକ୍ତମାନେ ଭଗବାନଙ୍କ ତରଫରୁ କେତେ କ'ଣ ଲେଖି ଯାଇଛନ୍ତି । ସେହିସବୁ ଲେଖା ଅତି ପବିତ୍ର ଶାସ୍ତ୍ର ହୋଇ ରହିଛି, ପବିତ୍ର ଥାନମାନଙ୍କରେ ସାଇତା ହୋଇ ରହିଛି । ଏହି ଶାସ୍ତ୍ରଗୁଡ଼ାକ ସକାଶେ ଧର୍ମ ରହିଛି, ଅର୍ଥାତ୍ ସଂସାର ରହିଛି । ସଂସାର ଶୀତଳ ହୋଇ ରହିଛି, ଉଶ୍ବାସ ହୋଇ ରହିଛି, ନିରାପଦ ଏବଂ ସୁରକ୍ଷିତ ହୋଇ ରହିଛି । ପାଚେରୀଗୁଡ଼ାକ ମୋଟେ ଭୁଷୁଡ଼ି ପଡୁନାହିଁ ।

ଏହି ଅର୍ଥରେ ଅତି ଉତ୍ସାହରେ କେତେଟା ପାଦ ଆଗକୁ ଯାଉ ଯାଉ କେତେକ ବ୍ୟକ୍ତି ଏପରି ମଧ୍ୟ କହିଥାନ୍ତି ଯେ ଭଗବାନ ତାଙ୍କ ଶାସ୍ତ୍ରରେ ଖାସ୍ ଆମ ଭାରତବର୍ଷ ସକାଶେ ହିଁ ଏହିସବୁ କଥା କହିଛନ୍ତି । ଅଥବା, ଅନ୍ତତଃ ବିଶେଷ କରି ଏହି ଭାରତବର୍ଷ ବିଷୟରେ ଏହିସବୁ ଉପରୋଧ କରିଛନ୍ତି ଏବଂ ଏହିସବୁ ପ୍ରତିଶ୍ରୁତି ଦେଇଛନ୍ତି । ଭାରତର ଭୂମିରେ ଭାରତର ନିମକ ଖାଇ ଯେଉଁ ଶାସ୍ତ୍ର ଲେଖା ହୋଇଛି, ସେଥିରେ ରହିଥିବା ଏହିଭଳି ଏକ ମୋହୋକ୍ତିକୁ ମୋହୋକ୍ତି ବୋଲି କହିବା ନିଶ୍ଚୟ ପାପାଚାର ହେବ । ତେଣୁ କଥାଟିକୁ ଅବଶ୍ୟ ସତ ବୋଲି ମାନି ନେବାକୁ ହେବ ଏବଂ ଆଗ ବିଶ୍ୱାସ କରିପାରିଲେ ତା'ପରେ ମାନି ନେବାଟା ଆଦୌ କଷ୍ଟକର ହେବନାହିଁ । ଭୂମି ଅନେକ ରହିଛି, ମାତ୍ର ଧର୍ମଭୂମି ତ ଏଇ ଗୋଟିଏ ମାତ୍ର ରହିଛି । ଏହି ଧର୍ମଭୂମିର ସଂସ୍କାରଜାତ ସନ୍ତାନମାନେ ଯେତେବେଳେ ଏହିସବୁ କଥା ଲେଖୁଛନ୍ତି, ତେଣୁ ତାହାକୁ ସତ୍ୟବୋଲି କାନିରେ ନ ବାନ୍ଧିବାଟା ତୁଚ୍ଛା ନିର୍ବୋଧତା ନ ହୋଇ ଆଉ କ'ଣ ହୋଇପାରିବ ?

ବେଳେ ବେଳେ ଭଗବାନ ମନକୁ ବି ଏହି ସଂସାରକୁ ଆସନ୍ତି । ଏଇଠି କୋଉଠି ପାଖରେ ରହିଥିଲା ପରି ଏଇଠି ଓହ୍ଲାଇ ପଡ଼ନ୍ତି । ଆମ ଗପମାନଙ୍କରେ ରହିଛି ଯେ, ରାତି ହେଲେ ଈଶ୍ୱର ଆଉ ପାର୍ବତୀ ବୃଷଭ ଉପରେ ବସି ନନ୍ଦୀ ଭୃକୁଟୀଙ୍କୁ ସାଙ୍ଗରେ ଧରି ମର୍ତ୍ତ୍ୟମଣ୍ଡଳକୁ ବୁଲି ଆସନ୍ତି । ସେତେବେଳେ ସଂସାରରେ ସମସ୍ତେ ନିଘୋଡ଼ ନିଦରେ ଶୋଇଥାନ୍ତି । କେହି ଦେଖି ନ ପାରିବାର ଏହିପରି ଗୋଟିଏ ବେଳ ଉଣ୍ଡି ଈଶ୍ୱର ପାର୍ବତୀ ତାଙ୍କର ଚରାଚର-ଘର ଏହି ସଂସାର ଭିତରକୁ ଆସନ୍ତି । ଦୁଃଖ ମୋଚନ କରନ୍ତି, ସନ୍ତାପହରଣ କରନ୍ତି, ନ ଶୋଇଥିଲା ମଣିଷକୁ ଶୁଆଇ ପକାନ୍ତି, ଦହି ହେଉଥିବା ହୃଦୟଗୁଡ଼ାକୁ ମନ୍ଦୁରା ଫୁଲ ପାଣି ଛିଞ୍ଚି ଗୋଟାସୁଦ୍ଧା ଶୀତଳ କରିଦେଇ ଯାଆନ୍ତି । ଯେତେବେଳେ ଏହି ସଂସାରରେ ପାପର ଭାରା ପ୍ରବଳ ହୁଏ, ଯେତେବେଳେ ଦୁଷ୍କୃତମାନେ ପ୍ରବଳ ହୋଇ ଉଠନ୍ତି, ସତେଅବା ଅନନ୍ୟୋପାୟ ହୋଇ ଭଗବାନ ବୈକୁଣ୍ଠ ଛାଡ଼ି ସଂସାରକୁ ଆସନ୍ତି, ଏହି ସଂସାର ଭିତରେ କୋଉଠି ମନ କୋଉଠି ଜନ୍ମଗ୍ରହଣ କରନ୍ତି, ତାଙ୍କ ଗହଣରେ ଆସିଥିବା ଅନ୍ୟ ନିମିତ୍ତମାନେ ତାଙ୍କରି ନିର୍ଦ୍ଦେଶ ଅନୁସାରେ ଏଠି ସେଠି ଦେହ ଧାରଣ କରନ୍ତି ଏବଂ ତା'ପରେ ଲୀଳା ହୁଏ । ବରାଦ ଅନୁସାରେ କୈକେୟୀ ଜିଦ୍ ଧରି ବସନ୍ତି, ବରାଦ ଅନୁସାରେ ମହାପ୍ରଭୁ ବନବାସ ଯାଆନ୍ତି, ବରାଦ ଅନୁସାରେ ଲଙ୍କପତି ନାରୀହରଣ କରିବାକୁ ପ୍ରବୃତ୍ତ ହୁଏ, ବରାଦ ଅନୁସାରେ ଲଙ୍କାଠାବ ହୁଏ, ଗଡ଼ଜୟ ହୁଏ । ରାକ୍ଷସର ନିପାତ ହୁଏ ଏବଂ ସଭା ଶେଷରେ ଧନ୍ୟବାଦ ଦିଆଯାଉଥିଲା ପରି ସତେଅବା ଠିକ୍ ସେହିପରି ବରାଦ ଅନୁସାରେ ଦେବଗଣ ସ୍ୱର୍ଗରୁ ଥାଇ ପୁଷ୍ପବୃଷ୍ଟି କରନ୍ତି । ଅଥବା, ସେହି ବରାଦ ଅନୁସାରେ ଧର୍ମରାଜ ପଶାଖେଳି ପାରନ୍ତି, ବରାଦ ଅନୁସାରେ ଆପଣାର ଭାର୍ଯ୍ୟାକୁ ବି ଖେଳରେ ପଣକରି ବସନ୍ତି, ବରାଦ ଅନୁସାରେ ଝିମିଟି ଖେଳରୁ ଭାରତ–ଯୁଦ୍ଧର ସନ୍ଦୀପନ ହୁଏ; ଏବଂ ବରାଦ ଅନୁସାରେ କଳେ ବଳେ କୌଶଳେ କୌରବ କୁଳର ନିପାତ ହୁଏ । ଆମେ ଏଗୁଡ଼ାକୁ କଦାପି ତୁଚ୍ଛା କାବ୍ୟ ଅଥବା ତୁଚ୍ଛା କବିମନର ରଚନା ବୋଲି କହି ଉଡ଼ାଇ ଦେଇପାରିବା ନାହିଁ । ଏଗୁଡ଼ାକ ଗୋଟାସୁଦ୍ଧା ସତକଥା, ଆମେ କେହି ନ ମାନିଲେ ବି ସତକଥା । ଆଗ ବିଶ୍ୱାସ କର, ତେବେ ସତକୁ ସତ ବୋଲି ନିଶ୍ଚୟ ଚିହ୍ନି ପାରିବ ।

ଭଗବାନଙ୍କୁ ମାଗିବାଟା ସମ୍ଭବତଃ ସବୁଠାରୁ ଅଧିକ ସହଜ କଥା । ଖାଲି ତାଙ୍କ ସହିତ ଆମର ସମ୍ବନ୍ଧର କ୍ଷେତ୍ରରେ କାହିଁକି, ଜୀବନର ଯେ କୌଣସି କ୍ଷେତ୍ରରେ ମାଗିବାଟା ପ୍ରକୃତରେ ସବୁଠାରୁ ଅଧିକ ସହଜ କଥା । ଆମେ ଭଗବାନଙ୍କୁ ଯାହା ମନ ତାହା ମାଗି ପାରିବା, ଏହିପରି ଏକ ସୁଲଭତା ଓ ସହଜଲଭ୍ୟତା ସକାଶେ ହିଁ ଆମେ ସମ୍ଭବତଃ ଭଗବାନଙ୍କୁ ପୂଜା କରିବା ଲାଗି ଏତେବେଶୀ ମନ ବଳାଇଥାଉ । ଆମେ

ମାଗିବୁ, ସିଏ ଦେବେ; ଆମେ ଡାକିବୁ ସିଏ ଶୁଣିବେ ଓ ଓହ୍ଲାଇ ଆସିବେ; ଆମେ ସ୍ତୁତି କରିବୁ ଓ ସିଏ ପ୍ରସନ୍ନ ହେବେ; ଆମେ ତାଙ୍କ ଲାଗି ଦେଉଳ ତୋଳିଦେବୁ, ନେତ ଉଡ଼ାଇବୁ, ତାଙ୍କର ଆସ୍ଥାନ ପର୍ଯ୍ୟନ୍ତ ପାହାଚ ବାନ୍ଧିଦେବୁ ଏବଂ ସିଏ ଏଇଠି ଆମରି ହୋଇ ରହିଥିବେ । ଆମରି ଡିହରେ ବନ୍ଧାହୋଇ ରହିଥିବେ । ମଣିଷ ଇତିହାସରେ ଭଗବାନଙ୍କୁ ହିଁ ସବୁଠାରୁ ଅଧିକ ସରଞ୍ଜାମ ମାଗିଛି । ହଁ, କିଛି ମାଗୁନାହିଁ ବୋଲି କହିଛି; ଧନ ମାଗୁନାହିଁ କି ଜନ ମାଗୁନାହିଁ ବୋଲି କହି ନ ମାଗିବାର ଉଲୁଗୁଣା ଦେଇଛି ଏବଂ ତା'ପରେ କେବଳ ଶରଧା ବାଲିରୁ ହାତେ କିମ୍ବା ଚାଖଣ୍ଡେ ମାଗିବାକୁ ମନ ବଳାଇଛି; ଏବଂ ଆମେ ଯେଉଁମାନେ ଠାକୁରଙ୍କର ଜଣାଣ ମଣି ସେହି ଗୀତଟିକୁ ଉଚ୍ଛଳ ଏବଂ ଉଜ୍ଜ୍ୱଳନେତ୍ର ହୋଇ ଗାଇବାକୁ ମନ କରିଛୁ, ଆମେ ଗୋଟି ଗୋଟି କରି ତାଙ୍କୁ ସବୁକିଛି ମାଗିଛୁ; ଧନ ମାଗିଛୁ, ଜନ ମାଗିଛୁ ଏବଂ ଶରଧା ବାଲିରୁ ମଧ୍ୟ କିଞ୍ଚିତ୍ ମାଗିଛୁ । ଆମର ଏହିସବୁ କଦାଚରଣ ଦ୍ୱାରା ଖାସ୍ ଠାକୁରଙ୍କର କ'ଣ ହୋଇଥିବ ବା ନ ହୋଇଥିବ କେଜାଣି, ମାତ୍ର ଏଗୁଡ଼ାକ ଫଳରେ ଆମେ ଗୋଟାସୁଦ୍ଧା ଧରାପଡ଼ି ଯାଇଛୁ । ଆମର ଯାବତୀୟ ବିଶ୍ୱାସ ଭିତରେ ଆମ ଅବିଶ୍ୱାସଗୁଡ଼ାକ ଭାରି ଜଳ ଜଳ ହୋଇ ଦିଶିଯାଇଛି । ଆମ ପ୍ରୀତି ଭିତରେ ଆମର କାମନା ଓ କୋପନଗୁଡ଼ାକ ହିଁ ସବାଆଗ ଯାଇ ପଦାରେ ପଡ଼ିଯାଇଛି । ଆମର ଯାବତୀୟ ଉଲ୍ଲାସ ଭିତରେ ଆମ ଭୀରୁତାଗୁଡ଼ାକ ଦପ ଦପ ହୋଇ ଫୁଟି ଉଠିଛି ଏବଂ ଆମର ଯାବତୀୟ ଦର୍ପ ସତ୍ତ୍ୱେ ଆମର ପଳାୟନଗୁଡ଼ାକ ହିଁ ଆମର ସର୍ବପ୍ରଧାନ ପରିଚୟପତ୍ର ହୋଇ ରହିଛି । ଅବିଶ୍ୱାସୀମାନେ ଭଗବାନଙ୍କ ପାହାଚ ଉପରେ ଶଙ୍ଖମର୍ମର ପଥର ବସାଇ ଆପଣାର ନାମ, ଧାମ ଓ ଠିକଣାଗୁଡ଼ାକୁ ଲେଖିବାକୁ ଉତ୍ସାହୀ ହୋଇଛନ୍ତି, ଅନ୍ୟ-କାମୀମାନେ ଗୋଟା ସୁଦ୍ଧା ତାଙ୍କରି ପ୍ରୀତିରେ ବିଭୋର ହୋଇ ଥେଇ ଥେଇ ହୋଇ ନାଚିଛନ୍ତି, ଦୁଷ୍ଟ ଭୀରୁମାନେ ତାଙ୍କୁ ଭୟଭଞ୍ଜନ ବୋଲି କହି ବାହୁ ଫୁଲାଇ ଘଣ୍ଟ ବାଡ଼େଇଛନ୍ତି ଏବଂ ପଳାୟନକୁ ହିଁ ନିରାପଦ ଓ ନିରାଲମ୍ବ ଯଥାର୍ଥ ଜୀବନ ବୋଲି ଗ୍ରହଣ କରିଥିବା ଖଣ୍ଡମାନେ ତାଙ୍କରି ଲୀଳାର ସିଦ୍ଧାନ୍ତ ବଖାଣିଛନ୍ତି । ହୃଦୟ ନ ଥିବା ରାଜ୍ୟରେ ହୃଦୟ ବଣ୍ଟାଯିବାର ଜୁଲମ ହୋଇଛି, ନିଶା ଛଡ଼ାଇବା ନାଆଁରେ ଅଫିମ ଭୁଞ୍ଜାଇ ଦିଆ ଯାଇଛି । ସାହୀଟାଯାକ ସଭିଙ୍କୁ ଘୋର ନିଦରେ ଶୁଆଇ କରି ରଖି ଦିଆଯାଇଛି । ଯୁଗର ଚକଗୁଡ଼ାକୁ ବଡ଼ ନିତ୍ୟନୈମିତ୍ତିକ ସନ୍ତର୍ପଣ ସହିତ ସେହି ନିଦ୍ରାମଗ୍ନ ଦେହଗୁଡ଼ାକ ଉପରେ ନିଶ୍ଚିନ୍ତରେ ଗଡ଼ାଇ ନିଆ ହୋଇଛି ।

ଭଗବାନଙ୍କୁ କିଏ କେତେ କ'ଣ ମାଗିଲା ଓ ଭଗବାନ କିପରି କେତେ ଖଞ୍ଜରେ ତଳକୁ ଓହ୍ଲାଇ ଆସିଲେ–ବା ରସାଘାତରେ କିଞ୍ଚିତ୍ ପରିବର୍ତ୍ତନ କରାଇ କହିଲେ, ଭଗବାନଙ୍କୁ କିଏ କିପରି କ'ଣ ବାଢ଼ିଦେଲା ଓ ଅଜାଡ଼ି ଦେଲା ଓ ତା' ବଦଳରେ

ଭଗବାନ କିପରି ତା' ଲାଗି ଅମାର କାଢ଼ିଦେଲେ ଅଥବା ପୂରା ସିନ୍ଦୂକଟାଏ ଫିଟାଇ ଦେଲେ–ଅର୍ଥାତ୍, ଅଳପ ଭାଷାରେ କହିଲେ, କିଏ କେତେ ପ୍ରକାରେ ଭଗବାନଙ୍କୁ ରଖିଲା ଓ ଭଗବାନଙ୍କ କଥା ବୁଝିଲା, ଏବଂ ତେଣୁ ଭଗବାନ ମଧ କିପରି ତାକୁ ରଖିଲେ ଓ ତା' କଥା ବୁଝିଲେ –ଏହି ଉପନ୍ୟାସଗୁଡ଼ାକ ଆମ ପୁରାଣମାନଙ୍କରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଭରପୂର ହୋଇ ରହିଛି । ଖାସ୍ ଏହିଗୁଡ଼ାକର ହିଁ ପ୍ରଶସ୍ତି ଗାନ କରିବା ଲାଗି ତ ଆମ ବ୍ରତକଥାଗୁଡ଼ାକର ଭିଆଣ ହୋଇଛି ବା ଏପରିକି ଆମ ବ୍ରତଗୁଡ଼ାକର ବି ଭିଆଣ କରା ହୋଇଛି । ଯଦି ଭଗବାନ ପୁଅକୁ ପରୀକ୍ଷାରେ ପାଶ୍ କରାଉ ନ ଥାନ୍ତେ, ମକଦମାରେ ଜିତାଉ ନ ଥାନ୍ତେ, ରିଷ୍ଟଗୁଡ଼ାକରେ ଖଣ୍ଡନ କରାଉ ନ ଥାନ୍ତେ, ତେବେ ଏକାଦଶୀ, ଏକବାର, ବାଟଓଷା ଓ ବଡ଼ଓଷା କରିବାର ପ୍ରକୃତରେ ଆଉ କି ପ୍ରୟୋଜନ ରହିଥାନ୍ତା ? ଚିତ୍ରାଙ୍ଗଦା ଅର୍ଜୁନର ପ୍ରଣୟିନୀ ହେବାକୁ ମନକଲା ତ ସେଥିଲାଗି ସେ ଠାକୁରଙ୍କ ପାଖରେ ତପସ୍ୟା କଲା, ଠାକୁରମାନେ ପ୍ରସନ୍ନ ହେଲେ ଓ ଚିତ୍ରାଙ୍ଗଦାକୁ ତା' ତପସ୍ୟାର ଫଳ ମିଳିଲା । ଠିକ୍ ଏମିତି ଆଉ କେହି ଶତ୍ରୁର ବଂଶନାଶ ହେବାଲାଗି ଠାକୁରଙ୍କୁ ଜଣାଉଥିବ, ଠାକୁରଙ୍କ ପାଖରେ ଦୀପ ଜାଳି କାହାର କୁଳ ବୁଡ଼ିଯାଉ ବୋଲି ଠାକୁରଙ୍କ ପାଖରେ ଅତ୍ୟନ୍ତ ନିଷ୍ଠାର ସହିତ ଗୁହାରି କରୁଥିବ–ଏବଂ ତା'ର ନିଷ୍ଠାରେ ମୁଗ୍ଧ ହୋଇ ଠାକୁର ନିଶ୍ଚୟ ତା' କଥା ଶୁଣୁଥିବେ । ଭଗବାନ ବଳିରେ ବଶ ହୁଅନ୍ତି, ଭୋଜ୍ୟରେ ବଶ ହୁଅନ୍ତି, ଆଟିକାରେ ବଶ ହୁଅନ୍ତି ଏବଂ ଅବଢ଼ାରେ ବଶ ହୁଅନ୍ତି ବୋଲି ଆମର କେତେ କେତେ ଶାସ୍ତ୍ରରେ କେଡ଼େ ଦୃଢ଼ନିଶ୍ଚୟ ସହିତ କହି ଦିଆ ହୋଇଛି । ହୁଏତ ଖାସ୍ ଏହି କଥାଗୁଡ଼ାକରେ ଆମର ବିଶ୍ୱାସ ଜନ୍ମାଇବା ଲାଗି ଆମର କେତେ କେତେ ହିତୈଷୀ ମହାମତି ଶାସ୍ତ୍ରମାନ ଲେଖି ପ୍ରାତଃସ୍ମରଣୀୟ ହୋଇ ରହିଛନ୍ତି । ଭଗବାନଙ୍କୁ ବଶ କରାଯାଇ ପାରିବ, ତାଙ୍କୁ ପ୍ରଲୋଭନ ଦେଖାଇ ଆମ ସପକ୍ଷରେ ଓଟାରି ଅଣାଯାଇ ପାରିବ, ତାଙ୍କ ସହିତ ସର୍ତ୍ତ ରଖାଯାଇ ବଣିଜ କରାଯାଇ ପାରିବ–ଏସବୁ କଥା କେବଳ ଆମରି ଗୋଟାଏ ଦେଶ ଅଥବା ଗୋଟାଏ ଧର୍ମର ଏକଚାଟିଆ ହୋଇ ରହିନାହିଁ;–ଏଗୁଡ଼ାକ ସବୁ ଧର୍ମରେ ଓ ସବୁ ଦୈଶିକତାରେ ଏକ ବିଶିଷ୍ଟ ପର୍ଯ୍ୟାୟର ପରମ୍ପରା ହୋଇ ରହିଛି ଏବଂ ସଚରାଚର ଅବକ୍ଷୟ ଏବଂ ଅତ୍ୟାନୁଗତ୍ୟର ଏକ ପର୍ଯ୍ୟାୟରେ ହିଁ ଏହା ପ୍ରାୟ ସବୁଠାରେ ସତେଅବା ଗୋଟାଏ ରୋଗ ବା ଗୋଟାଏ ବଦ୍‌ଖୋଇ ପରି ହୋଇଛି । ବଦ୍‌ଖୋଇଗୁଡ଼ାକୁ ସ୍ୱୀକୃତି ମିଳିଲେ ସେଗୁଡ଼ାକ ମଧ ସତ୍‌ସଂସ୍କାର ରୂପେ କୁଆଡ଼େ ରଙ୍ଗ ବୋଳା ହୋଇ ଜରି ମଡ଼ାହୋଇ ରହିଯାନ୍ତି, ରୋଗଗୁଡ଼ାକୁ ସ୍ୱୀକୃତି ମିଳିଲେ ସେଗୁଡ଼ାକ ମଧ ବଡ଼ ଚମତ୍କାର ଭାବରେ ସାଧୁର ଭୂଷଣ ହୋଇ ରହିଥାନ୍ତି, କେବଳ ସୁଲକ୍ଷଣମାନଙ୍କର ହିଁ ଶିରସ୍ତ୍ରାଣ ହୋଇ ରହିଥାନ୍ତି । ନିପଟ ରୁଗ୍‌ଣତାଗୁଡ଼ାକୁ ରାଜାମନ୍ତ୍ରୀ କରି ଆସନରେ ବସା ହୋଇ

ମାଜଣା କରା ହେବାରେ ଲାଗିଥାଏ ଏବଂ କୌଣସି ମୋହଭଙ୍ଗକାରୀ ବୀର ଆସି ରୋଗଗୁଡ଼ାକୁ ରୋଗ ବୋଲି କହିବା ପର୍ଯ୍ୟନ୍ତ ଓ ଅନ୍ଧାରଗୁଡ଼ାକୁ ଅନ୍ଧାର ବୋଲି ଘୋଷଣା କରିବା ପର୍ଯ୍ୟନ୍ତ ସ୍ୱୀକୃତ ଚକର ଘେରାଟାହିଁ ବୁଲିବାରେ ଲାଗିଥାଏ ଓ ଆମେ ସବୁ ବି ତାହାରି ଭିତରେ ଘେର ବୁଲିବାରେ ଲାଗିଥାଉ । ତାହାକୁ ହିଁ ସତେଅବା ପରମା ସମ୍ପତ୍ ବୋଲି ଆବୋରି ନେଇଥାଉ ।

ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତବର୍ଷରେ ଏହିଭଳି ଏକାଧିକ ମୋହଭଙ୍ଗକାରୀ ଓ ମୂର୍ତ୍ତିଭଙ୍ଗକାରୀଙ୍କର ଆବିର୍ଭାବ ହୋଇଥିଲା, ଯିଏ ଅସଲ ମର୍ମଟି ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରି ଦେବାକୁ କହିଲା, ପୁରୁଣା ମୂର୍ତ୍ତିଗୁଡ଼ାକୁ ଭାଙ୍ଗିଦେବା ଲାଗି ଆହ୍ୱାନ ଦେଲା । ଭାରତବର୍ଷର ଇତିହାସରେ ଏହି ପର୍ଯ୍ୟାୟଟିକୁ ପୁନର୍ଜାଗରଣର ଏକ ପର୍ଯ୍ୟାୟ ବୋଲି କୁହାଯାଇଥାଏ । ପୁନର୍ଜାଗରଣର ପର୍ଯ୍ୟାୟ ଅର୍ଥାତ୍ ନିଦ ଭାଙ୍ଗି ଉଠିବାର ପର୍ଯ୍ୟାୟ, ଭୟ ଭାଙ୍ଗି ବାଟ ଚାଲିବାର ପର୍ଯ୍ୟାୟ, ହଜି ଯାଉଥିବା ପରମ ଧନଟିକୁ ନିଜ ଭିତରେ ଆବିଷ୍କାର କରି ମହିମାମୟ ହୋଇ ଆଗକୁ ଯିବାର ପର୍ଯ୍ୟାୟ, ଖଣ୍ଡଗୁଡ଼ାକୁ ପୁଣି ଏକାଠି କରି ସମଗ୍ରଟିକୁ ଦର୍ଶନ ଓ ସ୍ପର୍ଶ କରି ପାରିବାର ଏକ ପର୍ଯ୍ୟାୟ, ଅସାରଗୁଡ଼ାକୁ ଆଡ଼େଇ ଦେଇ ସାରଟିକୁ ହିଁ ଆପଣାର ଅସଲ ପରିଚୟ ବୋଲି ସ୍ୱୀକାର କରି ନେବାର ପର୍ଯ୍ୟାୟ, ମୋହର ରତ୍ନପ୍ରତିମାଗୁଡ଼ାକୁ ବର୍ଜନ କରି ସତ୍ୟର ଅନାବୃତ ଏବଂ ସମ୍ପୂର୍ଣ୍ଣ ଆବେଦନଟିକୁ ଚିହ୍ନିନେବାର ପର୍ଯ୍ୟାୟ । ରାଜା ରାମମୋହନ ରାୟଙ୍କଠାରୁ ଆରମ୍ଭ କରି ଶ୍ରୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ଆମେ ଏହି ପର୍ଯ୍ୟାୟଟି ମଧ୍ୟରେ ପ୍ରାୟ ସମସ୍ତଙ୍କ ସାକ୍ଷାତଲାଭ କରି ପାରିବା । କେଶବଚନ୍ଦ୍ର ତାହାରି ଭିତରେ, ଈଶ୍ୱରଚନ୍ଦ୍ର ତାହାରି ଭିତରେ; ଶ୍ରଦ୍ଧାନନ୍ଦ ତାହାରି ଭିତରେ, ଦୟାନନ୍ଦ ବି ତାହାରି ଭିତରେ । ରବୀନ୍ଦ୍ରନାଥ ତାହାରି ଭିତରେ, ମୋହନ ଦାସ ବି ତାହାରି ଭିତରେ । ବିବେକାନନ୍ଦ ତାହାରି ଭିତରେ, ଶ୍ରୀ ଅରବିନ୍ଦ ବି ତାହାରି ଭିତରେ । ଧର୍ମ, ସମାଜ ସଂସ୍କାର ଓ ରାଜନୀତି ପ୍ରଭୃତି କେତେ କେତେ କ୍ଷେତ୍ରରେ ଏମାନେ ପ୍ରତ୍ୟେକେ ଆପଣାକୁ ବିଚରଣ କରାଇ ନେଇଛନ୍ତି । ମାତ୍ର ତଥାପି ଆତ୍ମପରିଚୟକୁ ହିଁ ପ୍ରତ୍ୟେକ ସର୍ବମୂଳ ବୋଲି ଘୋଷଣା କରିଛନ୍ତି, ଭୟ ଭାଙ୍ଗି ମେରୁଦଣ୍ଡ ସିଧା କରି ଉନ୍ନତଶିର ହୋଇ ଠିଆ ହୋଇ ପାରିବାକୁ ହିଁ ଧର୍ମବିଚରଣର ସର୍ବସାର ବୋଲି କହିଛନ୍ତି । ସେମାନେ ସମସ୍ତେ ଧାର୍ମିକତାକୁ ଛାଡ଼ି ଆଧ୍ୟାତ୍ମିକତା ଆଡ଼କୁ ଆମକୁ ସାଥୀ ହୋଇ ଯିବାଲାଗି ଉଦ୍‌ବୋଧନ ଦେଇଛନ୍ତି । ଆଧ୍ୟାତ୍ମିକତା-ଅର୍ଥାତ୍ ଆପଣାକୁ କ୍ଷେତ୍ର କରି ସତ୍ୟ ଉପରେ ବିଶ୍ୱାସ, ଆପଣାକୁ କ୍ଷେତ୍ରକରି ସତ୍ୟ ଲାଗି ଯାତ୍ରା ଓ ସତ୍ୟର ଆବିଷ୍କାର, ଆପଣାକୁ କ୍ଷେତ୍ର କରି ସତ୍ୟର ପ୍ରତିଷ୍ଠା । ଏହା ମାଗିବାର ଅକିଞ୍ଚନତା ନୁହେଁ, ଦଶସାର ଦେଇ କୋଡ଼ିଏସାର ପାଇବାର ବଣିକ ବି ନୁହେଁ;—ଏହା ଅସହାୟତା ନୁହେଁ,

ଭୀରୁତା ନୁହେଁ, ଏହା ପଳାୟନ-ଚତୁରର ଅଫିମଖିଆ ବି ନୁହେଁ । ଯିଏ ଆଧ୍ୟାତ୍ମିକତାର ଆବାହନ କରିବ, ସିଏ ଏଇଠି ଏହି ମର୍ତ୍ତ୍ୟଭୂମିରେ ହିଁ ଅଭୟର ଉଦ୍‌ବୋଧନ କରି ଆଣିବ,–ସିଏ ଏଇଠି ବୀଜବପନ କରାଇବ, ବୀଜଟିଏ ହେବ,–ଫୁଲ ଓ ଫଳକୁ ଏଇଠି ହିଁ ସମ୍ଭବ କରାଇବ । ସିଏ ଫୁଟି ଉଠିବ, –ଅର୍ଥାତ୍ ବଦଳିଯିବ ଏବଂ ଯିଏ ବଦଳିଯିବ, ବଦଳିଯିବାକୁ ସମ୍ମତ ହେବ, କେବଳ ସେଇ ବଦଳାଇ ପାରିବ । ଘଣ୍ଟ ପିଟୁଥିବା ମଣିଷମାନେ ବଦଳାଇ ପାରିବେ ନାହିଁ; ସେମାନେ ରାଉଳ ହେବେ, ଡାହୁକ ହେବେ, ଦଇତାପତି ଓ ଏପରିକି କ୍ଷେତ୍ରପତି ଓ ଛତ୍ରପତି ବି ହେବେ,–ମାତ୍ର ବଦଳାଇ ପାରିବେ ନାହିଁ । ସଂସାରକୁ ଠକୁ ଠକୁ ସେମାନେ ଆପେ ଠକି ହୋଇ ରହିଯିବେ । ଆଦେଶ ଦେଇ ଅନ୍ୟ ସମସ୍ତଙ୍କୁ ସଜାଡୁ ସଜାଡୁ ଆପଣା ଭାରାରେ ଆପେ ଲୋସଡ଼ି ପଡ଼ିବେ, ଆପଣାର ଭୟ ଓ ତଜ୍ଜନିତ ଅନ୍ଧାକାଂକ୍ଷାଗୁଡ଼ାକର ଭୃତ୍ୟ ହୋଇ ରହିଯିବେ । ଭାରତବର୍ଷର ପ୍ରାଣକୁ ଆଲୋଡ଼ିତ କରି ଆସିଥିବା ଏହି ଆଧ୍ୟାତ୍ମିକତାର ଆନ୍ଦୋଳନଟିକୁ ଆମେ ଏକ ଆତ୍ମ-ଆବିଷ୍କାରର ଆନ୍ଦୋଳନ ବୋଲି କହିପାରିବା –ଏକ ନୂତନ ଓ ସାହସବିସ୍ତୃତ ଦୃଷ୍ଟି ସହିତ ଏକ ବିଶ୍ୱାବିଷ୍କାରର ଆନ୍ଦୋଳନ ବୋଲି କହିପାରିବା । କହିବା ବାହୁଲ୍ୟ ଯେ ଆପଣାର ଏହି ନୂତନ ପରିଚୟ-ପ୍ରେରଣାଟି ହିଁ ଭାରତବର୍ଷକୁ ଗୋଟିଏ ଜାତି ହିସାବରେ ମଧ ଚକ୍ଷୁଷ୍ମାନ୍ ହେବାର ପ୍ରେରଣା ଆଣି ଦେଇଥିଲା । ସେଇଥିରୁ ଗୋଟିଏ ଦେଶ ହିସାବରେ ସ୍ୱାଧୀନ ହେବାର ପ୍ରେରଣାଟି ମଧ ଜନ୍ମଲାଭ କରିଥିଲା । ସ୍ୱାଧୀନତା ଆସିବାଯାଏ ପ୍ରକୃତରେ ସେହି ପ୍ରେରଣାଟି ହିଁ ଭାରତବର୍ଷରେ ପ୍ରାୟ ଯାବତୀୟ ସ୍ୱପ୍ନ-ଦେଖା ତଥା ଭବିଷ୍ୟ-ରଚନାର ପ୍ରାଣ ସ୍ୱରୂପ ହୋଇ ରହିଥିଲା । ସେତେବେଳେ ଏହି ଦେଶରେ କେତେ ସାହସ ରହିଥିଲା, କେତେ ସଦ୍‌ବିଶ୍ୱାସ ରହିଥିଲା; ନବଯୌବନ-ବେଶ ଧାରଣ କରିଥିବା କୌଣସି ଭଗବାନଙ୍କ ସହିତ ସତେଅବା ଏକାଠି ବାଟ ଚାଲୁଥିବା ପରି ମନେ ହେଉଥିଲା । ଗୋଟିଏ ଦେଶ ହିସାବରେ ଏହି ପୃଥିବୀରେ ସମଗ୍ର ପୃଥିବୀ ଲାଗି ଯେ ଆମର ଏକ ଅବଦାନ ରହିଛି, ଗୋଟିଏ ଜାତି ହିସାବରେ ଯେ ଆମ ସମସ୍ତଙ୍କର ନିର୍ଦ୍ଦିଷ୍ଟ ବ୍ରତଟିଏ ରହିଛି –ଏଗୁଡ଼ାକ ଅନୁଭବ କରିବା ସେତେବେଳେ ସତେଅବା ଭାରି ସ୍ୱାଭାବିକ ହୋଇ ରହିଥିଲା । ଉପସ୍ଥିତ ମୁହୂର୍ତ୍ତଟିର ଏହି ସ୍ୱାଭାବିକତାଟି ସକାଶେ ସେତେବେଳେ ନେତାମାନେ ଜନଗଣଙ୍କୁ ବୁଝି ପାରୁଥିଲେ ଓ ଜନଗଣ ମଧ ସେମାନଙ୍କର ନେତାମାନଙ୍କୁ ବୁଝି ପାରୁଥିଲେ । ସେମାନଙ୍କର ଅଭିପ୍ରାୟଗୁଡ଼ିକ ଉପରେ ବିଶ୍ୱାସ ସ୍ଥାପନ କରି ପାରୁଥିଲେ । ଜୀବନ କହିଲେ ମୂଳତଃ ଯେ ସମର୍ପଣକୁ ବୁଝାଏ, ଅର୍ଥାତ୍ ଦେବାକୁ ବୁଝାଏ–ସେତେବେଳେ ଏହି ସତ୍ୟବୋଧଟି ଆମ ମନ୍ଦିରଠାରୁ ଆରମ୍ଭ କରି ଆମର ରାଜନୀତି ପର୍ଯ୍ୟନ୍ତ ସବୁଠାରେ ସତେଅବା ସାକ୍ଷାତ ଓ ପ୍ରତ୍ୟକ୍ଷ ହୋଇ ରହିଥିଲା ।

ଆଧ୍ୟାତ୍ମିକତାର ଦୃଷ୍ଟି ଅର୍ଥାତ୍ ଏକ ସମଗ୍ର ଦୃଷ୍ଟି । ଅସୁନ୍ଦରକୁ ଛାଡ଼ି କେବଳ ତଥାକଥିତ ସୁନ୍ଦରଟାକୁ ହିଁ ଆବୋରି ରହିବାର ଦୃଷ୍ଟି ନୁହେଁ, ଧୂଳିଗୁଡ଼ାକୁ ବର୍ଜନ କରି ଶୁଦ୍ଧ, ପୂତ ଓ ଅପାପବିଦ୍ଧ ହୋଇ ରହିବା ଲାଗି କୌଣସି ଏକ ସୀମାଙ୍କିତ ଖାସମାହାଲକୁ ପଳାଇଯିବାର ଦୃଷ୍ଟି ନୁହେଁ—ଏଇଠି ଯାହାକିଛି ରହିଛି, ସେହିଗୁଡ଼ାକ ପ୍ରତି ନିର୍ମମ ଭାବରେ ଆପଣାର ବିବେକଟିକୁ ବୁଜିଦେଇ ଇତିହାସରେ ଆଉ କେଉଁଠି ଲୁଚିଥିବା ଅନ୍ୟ ପ୍ରତିମାଗୁଡ଼ିକର ଆରାଧନା କରିବାର ଦୃଷ୍ଟି ମଧ୍ୟ ନୁହେଁ । ଏଇଠି ପୂର୍ଣ୍ଣ ପ୍ରତିଷ୍ଠା ଓ ଶ୍ରଦ୍ଧାଯୁକ୍ତ ହୋଇ ରହି, ଆକାଂକ୍ଷିତ ସତ୍ୟଟିକୁ ଏଇଠାରେ ହିଁ ଅବତୀର୍ଣ୍ଣ ଓ ସଂକ୍ରାମିତ କରାଇ, ପରିତ୍ରାଣକାରୀ ଯାବତୀୟ ସ୍ପର୍ଶକୁ ଏଇଠି ସମ୍ଭବ କରି ଏଠାରେ ସବୁ କିଛିକୁ ସତେଅବା ଦେବଶିଳ୍ପ କରି ଗଢ଼ିବାକୁ ବାହାରିବାର ଦୃଷ୍ଟି ହେଉଛି ଆଧ୍ୟାତ୍ମିକତା । ଏସବୁ ପ୍ରାୟ କେତେଟା ଦଶକ ଲାଗି ଏକଦା ଆମ ଦେଶରେ ସତେଅବା ଆମର ନିଃଶ୍ୱାସ-ପ୍ରଶ୍ୱାସ ହୋଇ ରହିଥିଲା । ଏହି ସମାଜ ନୂଆ ହୋଇ ଗଢ଼ା ହେବ, ଆମର ଯାବତୀୟ ସମ୍ବନ୍ଧ ମଧ୍ୟରେ ଏକ ନୂତନ ସମ୍ବେଦନଶୀଳତାର ସଞ୍ଚାର ହେବ, ମନୁଷ୍ୟ ମନୁଷ୍ୟର ମହିମାରେ ହିଁ ପ୍ରତିଷ୍ଠିତ ହେବ, ସେତେବେଳେ ଜାତୀୟତା ଓ ଜାତୀୟ ଲକ୍ଷ୍ୟ କହିଲେ ରାଜନୀତିକ ସ୍ୱାଧୀନତା ହାସଲ କରିବା ସଙ୍ଗେ ସଙ୍ଗେ ଏହିସବୁ କଥାକୁ ମଧ୍ୟ ବୁଝାଉଥିଲା । ବରଂ ଏପରି କୁହାଯାଇ ପାରିବ ଯେ ଏହିସବୁ କଥାର ସିଦ୍ଧି ଲାଗି ହିଁ ସେତେବେଳେ ଆମର ଜନଗଣ ଓ ଆମର ନେତୃତ୍ୱ ରାଜନୀତିକ ସ୍ୱାଧୀନତା ହାସଲ କରିବାର ସଂଗ୍ରାମକୁ ଏକ ସର୍ବପ୍ରଥମ ଅତ୍ୟାବଶ୍ୟକତା ରୂପେ ଗ୍ରହଣ କରିଥିଲେ ଓ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଠିଆ ହୋଇ ବାଟ ଚାଲିବାକୁ ଓ ସତତ ବାଟ ଚାଲିବାକୁ ଆଧ୍ୟାତ୍ମଶାସ୍ତ୍ରରେ ସତ୍ୟଯୁଗ ବୋଲି କୁହାଯାଇଛି ଏବଂ ସେଇଟି ବିଷୟରେ ଆମ ମୂଲ୍ୟକଳନାର ବୋଧ ଯଦି ଏତେ ଟିକିଏ ବିଶ୍ୱାସ ବି କରୁଥାଏ, ତେବେ କୁହାଯାଇ ପାରିବ ଯେ ସ୍ୱାଧୀନତା ପୂର୍ବରୁ ଆମର ଯାବତୀୟ ବାସନା ସତେଅବା ସତ୍ୟଯୁଗର ବାସନା ହୋଇ ରହିଥିଲା, ତାହା ଆମକୁ ଶକ୍ତି ଦେଇ ପାରିଥିଲା, ଆମର ପାଦରେ 'ଚରୈବେତି' ର ବଳ ଦେଇ ଯାଉଥିଲା । ଆମ ଦେଶରେ ମଣିଷ ଯେ ହତଶ୍ରୀ ହୋଇ ରହିଥିଲା, ଜୀବନରେ ଏବଂ ସ୍ୱପ୍ନରେ ଏପରି ଦରିଦ୍ର ହୋଇ ରହିଥିଲା, ସେଥିରେ ଏକ ପରିବର୍ତ୍ତନ ଆଣି ଏହି ଦେଶର ସାମୂହିକ ସାମ୍ବନ୍ଧିକ ଭୂମିକୁ ବଦଳାଇ ଦେବାକୁ ଆଧ୍ୟାତ୍ମିକ ସମଗ୍ର ବିପ୍ଳବରେ ଅବଶ୍ୟ ଏକ ଅଙ୍ଗ ବୋଲି ଗ୍ରହଣ କରା ଯାଉଥିଲା ଏବଂ ସେଥିଲାଗି "ଜନଗଣ-ମନ-ଅଧିନାୟକ" ଙ୍କର ଆଶିଷ ପ୍ରାର୍ଥନା କରାଯାଉଥିଲା ।

ସ୍ୱାଧୀନତା ଆସିଲା । ଅର୍ଥାତ୍ ରାଜନୀତିକ ସ୍ୱାଧୀନତା ଆସିଲା । ଆମ ପ୍ରଥମ ଭୂମିଟି ଆମର ବୋଲି ଘୋଷିତ ହେଲା । ମାତ୍ର ତା'ପରେ କ'ଣ ହେଲା ? କାଳକ୍ରମେ

ରାଜନୀତି ଅଲଗା ହୋଇ ଆପଣାର ଏକ ଭିନେ ଘର କରି ରହିଲା । ଆମର ଜ୍ଞାନୀ ଓ ପଣ୍ଡିତମାନେ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟମାନଙ୍କରେ ଅଲଗା ହୋଇ ରହିଲେ । ଜ୍ଞାନକୁ କୁଟିଲେ, ଜ୍ଞାନକୁ ଖାଇ ଚଳିଲେ । ଆମ ଧର୍ମଟା ତୁଚ୍ଛା ଏକ ଧାର୍ମିକତା ହୋଇ ରହିଲା । ଆଧ୍ୟାତ୍ମିକତା ସହିତ ତାହାର ପ୍ରାୟ ସବୁଯାକ ନାଡ଼ କଟିଗଲା । ଆପଣାର ଉଦୟ ବିଷୟରେ ଯୋଉମାନେ ଗୋଟାସୁଦ୍ଧା ବଣା ହୋଇ ସାରିଥିଲେ, ସେମାନେ ଆମ ଆଗରେ ପୁଙ୍ଗା ଲଗାଇ ଉଦୟ ଏବଂ ଅଭ୍ୟୁଦୟର କଥା କହି ବାହାରିଲେ । ସ୍ୱାଧୀନତା ସଂଗ୍ରାମ ବେଳର ସେହି ସମଗ୍ର ନେତୃତ୍ୱ ଖଣ୍ଡ ଖଣ୍ଡ ହୋଇ ପଡ଼ିଲା, ଗୟାସୁରର ଶରୀରଟା ପରି ତାହା କେତେ ତୀର୍ଥରେ ଓ କେତେ ସ୍ୱାର୍ଥରେ ବିଭକ୍ତ ହୋଇଗଲା ଏବଂ ଆଗ୍ରହର ସମଗ୍ରତାଟି ଭାଙ୍ଗିଯିବାରୁ ଖଣ୍ଡ-ଆଗ୍ରହଗୁଡ଼ାକ ଅନେକ ସମୟରେ ଗୋଟାଏ ଗୋଟାଏ ଦୁରାଗ୍ରହରେ ପରିଣତ ହେବାକୁ ବସିଲା ଏବଂ ଆମ ସମସ୍ତଙ୍କର ଦୃଷ୍ଟିକୁ ସମଯୋଚିତ ଭାବରେ ଗ୍ରସ୍ତ କରି ରଖିବାରେ ସତେଅବା ଦୁଷ୍ଟାଗ୍ରହ ପରି କାର୍ଯ୍ୟ କଲା । ଏ ଦେଶରେ ଯାହାସବୁ ବଦଳି ଯାଇଥାନ୍ତା, ସେଗୁଡ଼ାକ ଯେଉଁଠି ଥିଲା, ସେଇଠି ପାସୋର ହୋଇ ରହିଲା । ନୃଶଂସତାଗୁଡ଼ାକ ବେଶ୍ ଘଣ୍ଟଘୋଡ଼ିଆ ହୋଇ ରହିଲା ଏବଂ ଅସହନୀୟତା ଗୁଡ଼ାକ ସହନୀୟ ପରି ଲାଗିଲା । ସମସ୍ତେ ସବୁଗୁଡ଼ାକୁ ବଦଳାଇ ଦେବେ ବୋଲି ତୂର୍ଯ୍ୟନାଦ କରିବାରେ ଲାଗିଲେ, ମାତ୍ର ସେମାନେ କେହି ବଦଳିଲେ ନାହିଁ । ସେମାନେ ଆପଣାର ତମ୍ବୁଗୁଡ଼ିକ ମଧ୍ୟରେ ଅବଢ଼ା ବାଢ଼ି ଖାଇଲେ ଏବଂ ତାହାକୁ ହିଁ ଆନନ୍ଦବଜାର ବୋଲି ମନେ କରିବାକୁ ଲାଗିଲେ । ସମସ୍ତେ ଦଉଡ଼ିଲେ, ମାତ୍ର କେବଳ ନିଜ ପାଇଁ ଦଉଡ଼ିଲେ । ଭାଗ୍ୟର ଆକାଶଟି ଆମର ପାଚେରୀଗୁଡ଼ାକ ଦ୍ୱାରା ସତେ ଅବା ଚେନା ଚେନା ଅଲଗା ହୋଇଗଲା । ବିଶ୍ୱାସ ଗୁଡ଼ାକ ବୋଲିରେ ପରିଣତ ହେଲା, ଆଦର୍ଶମାନେ ଚତୁର ହୋଇ ଶିଖିଲେ, ଧୂର୍ତ୍ତତାର ଅରଣ୍ୟ ଭିତରେ ପଶି ଶକ୍ତିଗୁଡ଼ାକ କ୍ଷମତାରେ ପରିଣତ ହୋଇଗଲା ଏବଂ ଯେଉଁଠାରେ ଖିଅ ଲାଗି ରହିଥିଲେ ଜୀବନ ତା'ର ନିଜ ଘରେ ରହିଥିଲା ପରି ଅନୁଭବ କରୁଥାଏ, ଯେଉଁଠି ଆତ୍ମୀୟତା ଅର୍ଜନ କରିଥିଲେ ନିଜ ଚାରିପାଖରେ ସବୁକିଛି ଆପଣାର ଓ ଅଭେଦ ବୋଲି ମନେହୁଏ, ଯାହା ପ୍ରତି ଲୟ ରହିଥିଲେ ସଂସାରରେ ସବୁକିଛି ଲାଗି ଲୟ ଓ ସମ୍ବେଦନା ରହିଥାଏ, ସେଇଟି ସତେ ଅବା ଏକ ସମ୍ପୂର୍ଣ୍ଣ ଅନ୍ୟ ହାଉଆ ଭିତରେ ପୋତି ହୋଇ ରହିଗଲା । ସିଏ ଆମ ଲାଗି ଆଉ କୌଣସି କଥା କହି ପାରିଲା ନାହିଁ ବା ଆମେ ହୁଏତ ତା'ର କଥା ଶୁଣିବା ଲାଗି ଆଉ ପ୍ରସ୍ତୁତ ଓ ଥୟ ହୋଇ ପାରିଲୁ ନାହିଁ । ଖିଅଗୁଡ଼ାକ ଗୋଟା ଗୋଟା ହୋଇଛାଡ଼ିଗଲା, ଆତ୍ମୀୟତା ଗୁଡ଼ାକ ଆତ୍ମସ୍ୱାର୍ଥ ଭିତରେ ବୁଡ଼ିମଲେ ଏବଂ ଆଶ୍ରୟଗୁଡ଼ାକ ଗ୍ରାସରୂପୀ ହୋଇ ସତେ ଅବା ଗିଳି ପକାଇବାର ଏକ ଜାତୀୟ ଅଭିଯାନରେ ବାହାରିଲେ । ପଇସା ଖୁବ୍ ବଢ଼ିଲା, ଆଲୁଅ ଅପେକ୍ଷା

ଅନ୍ଧାର ଭିତରେ ହିଁ ରାସ୍ତାଗୁଡ଼ାକ ଅଧିକ ଜଳ ଜଳ ହୋଇ ଦିଶିଲା । କ୍ଷମତାଗୁଡ଼ିକ ସାତ ସରି ହୋଇ ଆମେ ଯିଏ ଯେଉଁଠି ତା'ଲାଗି ଟାକି ବସିଥିଲୁ, ସେମାନଙ୍କୁ ଗୋଟା-ସୁଦ୍ଧା ଗୁରାଇ ତୁରାଇ ପକାଇଲା । ଆମେ ଦେଶକୁ ଆମର ବୋଲି କହିଲୁ, ମହୀମଣ୍ଡଳଟାକୁ ଆମର ବୋଲି କହିଲୁ, ମହିମାଗୁଡ଼ାକୁ ମଧ ପରିଶେଷରେ ଖାସ୍ ଆମର ବୋଲି କହିବାର ସବୁଯାକ ଯୁକ୍ତି ବେଶ୍ ଯୋଗାଡ଼ କରି ନେଇ ପାରିଲୁ । ଆମେ ଯେ କେବେ ପ୍ରକୃତରେ କୋଉ ଦେଶର ହୋଇ ଗଢ଼ା ହୋଇ ପାରିଥାନ୍ତୁ, କୋଉ ମହୀମଣ୍ଡଳ ଲାଗି ଆପଣାକୁ ଏକ ଆସ୍ଥାନ ରୂପେ ତିଆରି କରି ପାରିଥାନ୍ତୁ, କୌଣସି ମହିମା ଦ୍ୱାରା ଆମେ ଯେ ସ୍ୱୟଂ ମହିମାନ୍ୱିତ ହୋଇ ପାରିଥାନ୍ତୁ, ସେକଥା ଗୁଡ଼ାକ ଆଉ ଆମର ମନେ ହିଁ ରହିଲା ନାହିଁ । ଆମ ସ୍କୁଲ ପାଠଗୁଡ଼ାକରୁ ସେ ସବୁ ନିଷିଦ୍ଧ ହୋଇ ରହିଲା, ଆମ ନାୟକମାନଙ୍କର ତୁଣ୍ଡରେ ପଇଟିବା ଲାଗି ସତେ ଅବା ନାସ୍ତି କରିଦେଲା ଏବଂ ଏସବୁ ଘଟୁଥିବା ସମୟରେ ଆମର ଧର୍ମ ସତେଅବା ଆମ ଲାଗି ହରିବୋଲ ଦେବାରେ ହିଁ ମସ୍ତ ହୋଇ ରହିଲା । ପ୍ରବଳର ବଳ ହୋଇ ରହିଲା ।

ଯେତେବେଳେ ଧର୍ମ ଓ ଧର୍ମାଚାରଗୁଡ଼ାକ ପ୍ରବଳର ବଳ ହେବାକୁ ବସେ, ସେତେବେଳେ ତାହାକୁ ଆପଣାର ଅସଲ ବଳଟିକୁ ବଡ଼ ଶୋଚନୀୟ ଭାବରେ ହରାଇ ବସିବାକୁ ପଡ଼େ । ଏକଥା ଖାଲି ଭାରତବର୍ଷରେ ସ୍ୱାଧୀନତା ପାଇବା ପରେ ହୋଇନାହିଁ, ଏକଥା ଅନେକ ଯୁଗରେ ଓ ଅନେକ ଦେଶରେ ହୋଇଛି । ଯେଉଁଦିନଠାରୁ ଖ୍ରୀଷ୍ଟିଆନ୍ ଧର୍ମ ଇଉରୋପରେ ରାଜାମାନଙ୍କର ସରାଗଫରୁଆ ହୋଇ ରହିବାକୁ ଆରମ୍ଭ କଲା, ଯେଉଁଦିନଠାରୁ ରାଜାମାନେ ଧର୍ମକୁ ଅକ୍ତିଆର କରିନେଲେ, ସେହିଦିନଠାରୁ ଧର୍ମର ବଳ ଭାଙ୍ଗିଗଲା, ଧର୍ମ ମେରୁଦଣ୍ଡ ହରାଇ ବସିଲା, ରାଜଛତ୍ରକୁ ଆଶ୍ରୟ କରି ରହିଲା, ଯାବତୀୟ ପ୍ରକାରର ରାଜପଣ ତଥା ଉଦଣ୍ଡପଣ ଲାଗି ତାହା ଛତ୍ର ହୋଇ ରହିଲା । ରାଜାମାନଙ୍କର କୃପାରୁ ଧର୍ମାଧୀଶମାନେ ସୁନାରେ ରୂପାରେ ବାଟ ଚାଲିଲେ, କଣ୍ଢେଇମାନେ ପାଟଲୁଗା ପିନ୍ଧିଲେ, ସୁନାବେଶ ହେଲେ ସତ, ମାତ୍ର ଧର୍ମ ବଳହୀନ ହୋଇଗଲା, ଆପଣାର ସାମଗ୍ରିକ ଆବେଦନ ଓ ସାମଗ୍ରିକ ପରିଧିଟିକୁ ହରାଇ ବସିଲା । ଭାରତବର୍ଷରେ ଅତୀତର ଆହୁରି କେତେଟା ଯୁଗ ଭଳି ସ୍ୱାଧୀନତା ପରେ ମଧ ଧର୍ମ ନାନାବିଧ କାରଣରୁ କ୍ରମଶଃ ଛତିତଳେ ଯାଇ ଆଶ୍ରୟ ନେଲା, ନିରାପତ୍ତା ଖୋଜିଲା, ପ୍ରବଳର ଅନୁଗତ ହୋଇ ରହିଲା, ପ୍ରଗଲ୍‌ଭର କଥାପେଡ଼ୀ ହୋଇ ରହିଲା । ନୂଆ ନୂଆ ଗୁରୁ ବାହାରିଲେ, ନୂଆ ନୂଆ ଗହଣ ସୃଷ୍ଟି କଲେ, ନୂଆ ନୂଆ ପୀଠ ବସିଲା, ନୂଆ ନୂଆ ଝାଞ୍ଜ ବଜା ହୋଇ ସେହି ପୁରୁଣା ଶୀତଳତାଗୁଡ଼ାକୁ ପୁନର୍ବାର ମାଜଣା କରି ଅଣାଗଲା । ଗୋଟାଏ ମିଛ ଜାତୀୟତାବୋଧ ମଧ ଧର୍ମର ଏହିଭଳି ଏକ ଆଡ଼ମ୍ବରମୟ ଶକ୍ତିହୀନତାରେ ପରିଣତ ହେବାରେ ବେଶ୍

ସହାୟତା କଲା । ଏଠୁ ଯୋଗୀମାନେ ବିଦେଶକୁ ଗଲେ, ଲଣ୍ଡନର ଦାଣ୍ଡରେ ରଥ ଟଣାହେଲା । ଆମେରିକାରେ ହରିନାମ-ସଂକୀର୍ତ୍ତନ ହେଲା, କୃଷ୍ଣଚେତନା ଫରଫର ହୋଇ ଉଡ଼ିଲା । ଯୋଗର ଇସ୍କୁଲ ବସିଲା, ଯୋଗବିଦ୍ୟାରେ ଇଞ୍ଜିନିଅରିଙ୍ଗ୍ ପାଶ୍ କରିବା ବେଶ୍ ସମ୍ଭବ ହେଲା । ଟେକ୍‌ନିକ୍‌ଗୁଡ଼ାକୁ ଜାଣିନେଲେ ଯେ-କେହି ବଇଁଶୀର ରନ୍ଧ୍ର ଦେଇ କୃଷ୍ଣନାମ ଅଥବା ରାଧାନାମ ଡ଼ାକି ପାରିବେ ବୋଲି ପ୍ରତ୍ୟୟ ଜନ୍ମାଇ ପ୍ରବଚନ ଦିଆଗଲା । ଅଲୌକିକତାର ଜୟଜୟକାର ହେଲା । ଧର୍ମ କହିଲେ ପ୍ରାୟ ତୃତୀୟ ସ୍ତରର ଗୋଟାଏ ପ୍ରକାରର ମ୍ୟାଜିକ୍‌କୁ ବୁଝାଇଲା । ଗୁରୁମାନେ ଗହଳ ଲଗାଇ ବୁଲିଲେ, ଅଘଟଣ ଘଟାଇଲେ, ଭକ୍ତ-ମନ ରଞ୍ଜାଇଲେ, ଦୀକ୍ଷା ଦେଲେ;–ସେଇମାନେ ଯେ କୃପା କଲେ ପିତଳ ସୁନା ହୋଇଯିବ ଓ ରାତିଗୁଡ଼ାକ ଦିନ ହୋଇଯିବ, ଅବିଶ୍ୱାସମୟ କଳିଯୁଗରେ ଏହାକୁ ହିଁ ଅମୋଘ ବିଶ୍ୱାସ ବୋଲି କହି ଶୂନ୍ୟର ଭରଣା କରାଗଲା ।

ଭକ୍ତମାନଙ୍କର ବେଳ ଆସିଲା । ଅଚ୍ୟୁତାନନ୍ଦ ତାଙ୍କ ଯୁଗରେ ଯେତେଖାନି ଭକ୍ତଙ୍କର ବର୍ଣ୍ଣନା କରି ଯାଇଛନ୍ତି ଓ ଯେଉଁମାନଙ୍କଠାରୁ ଅସଲ ଭକ୍ତିକୁ ସାବଧାନ ରହିବା ଲାଗି କହି ଯାଇଛନ୍ତି, ସେହିସବୁ ପ୍ରକାର ଭକ୍ତଙ୍କର ବହୁଳ ପ୍ରଭାବ ହେବାକୁ ଲାଗିଲା । ଭକ୍ତ ହେବାଲାଗି ଅଧିକାର ବୋଲି ଆଉ କିଛିହେଲେ ରହିଲା ନାହିଁ । ଇଚ୍ଛା କରିବା ମାତ୍ରକେ ସମସ୍ତେ ଭକ୍ତ ହୋଇ ପାରିବେ ବୋଲି ଜଣାଇ ଦିଆଗଲା । ତୁମେ ଯାହା କରୁଥାଅ ପଛକେ, ଯେଉଁଠି ଯେଉଁଭଳି ଧୂଳିରେ ଲୋଟୁଥାଅ ପଛକେ, ଆମ ସାଙ୍ଗକୁ ଆସିଗଲେ ତୁମେ ବଡ଼ ଚମତ୍କାର ଭାବରେ ଭକ୍ତ ହୋଇଯାଇ ପାରିବ, ନାଆଁ ନ ଲେଖାଇ ମଧ୍ୟ ପାଠ ପଢ଼ିଛ ବୋଲି ପ୍ରମାଣ ଦେଇ ପାରିବ । ଏବଂ, ଭକ୍ତମାନଙ୍କର କାରୁଣ୍ୟ ଦେଖି ସତେଅବା ଭଗବାନ ହିଁ ସହସ୍ର ଗୁରୁଙ୍କ ରୂପ ଧରି ଏଠାକୁ ଓହ୍ଲାଇ ଆସିଲେ । ଷୋଳ ସହସ୍ର ଗୋପୀଙ୍କର ମନ ରଖିବା ଉଦ୍ଦେଶ୍ୟରେ ଗୋପୀଜନବଲ୍ଲଭ ଏକଦା ଷୋଳ ସହସ୍ର ରୂପ ଧାରଣ କରିଥିବା ପରି ଗୁରୁ ଏବଂ ତାଙ୍କର ସମ୍ପ୍ରଦାୟଗୁଡ଼ାକ ଭଳି ଭଳି ହେବାକୁ ଲାଗିଲେ । ଦିନରେ ତୁମେ ଯାହା କର ଓ ରାତିରେ ତୁମେ ଯୋଉ ସ୍ୱପ୍ନ ଦେଖୁଥାଅ ପଛକେ, ଏଇ ଘଡ଼ିକ ପାଇଁ ଯଦି ସବୁ ପାସୋରି ଖଣ୍ଡେ ମଲ୍ଲୀମାଳ ନେଇ ପଙ୍ଗତକୁ ଆସି ପାରିବ, ତେବେ ତାହାହିଁ ଯଥେଷ୍ଟ । ତୁମେ ବି ଜଣେ ଗୁରୁ-ଭାଇ ହୋଇଯିବ ।

ମେଘ ତଳି ଛାଡ଼ିଗଲା ପରି ଏହି ଧର୍ମ ପ୍ରକୃତରେ ତଳି ଛାଡ଼ିଗଲା । ଚେର ଛିଣ୍ଡାଇ ଉପରେ ଉପରେ ଉଡ଼ିଗଲା । ଆମ ଜୀବନଠାରୁ ତାହା କିଛିହେଲେ ଦାବୀ କଲାନାହିଁ । ଊନବିଂଶ ଶତାବ୍ଦୀରେ ଧର୍ମକୁ ବାହନ କରି ଭାରତବର୍ଷରେ ଯେଉଁ ସମଗ୍ର

ପ୍ଲାବନଟି ଆସିଥିଲା, ଇତିହାସରେ ତାହାକୁ ପୁନର୍ଜାଗରଣ ବୋଲି କୁହାଯାଇଛି । ଯେତେବେଳେ ସବୁ ଜାଗରଣକୁ କାନି ଘୋଡ଼ାଇ ରଖି ଦିଆଯାଏ, ଯେତେବେଳେ ବାଟ କାଢ଼ି ବାଟ ଚାଲିବାକୁ ମନ କରୁଥିବା ହୃଦୟଗୁଡ଼ାକୁ ଜାଲ ପକାଇ ଛନ୍ଦି ଦିଆଯାଏ, ସେତେବେଳେ କଣ୍ଢେଇନାଚ କରାଇ ଭକ୍ତମାନେ ରାତି ପୁହାଇ ଦେବାକୁ ମନ କରନ୍ତି । ଧର୍ମର ଇତିହାସରେ ଏହାକୁ Revivalism ବା ସେହି ପୁରୁଣାଟାର ହିଁ ପୁନଃପ୍ରଚଳନ ବୋଲି କୁହାଯାଇଅଛି । ସେତେବେଳେ ସେହି ପୁରୁଣା ସ୍ଥିତାବସ୍ଥାଟାକୁ ହିଁ ନୂଆ ଘୁଙ୍ଗୁର ଲଗାଇ ଦିଆହୁଏ ଓ ନୂତନ ନାମକରଣରେ ସେହି ପୁରୁଣା ନାଚ ଚାଲିଥାଏ । ଦଳେ ଅତୀତ ଭିତରେ ସମ୍ମୋହିତ ହୋଇ ରହିଥିବା ପରି ଆଉ ଦଳେ ଭବିଷ୍ୟତ ଭିତରେ ସମ୍ମୋହିତ ହୋଇ ରହିଥାନ୍ତି । ବର୍ତ୍ତମାନ ବିଷୟରେ ଆଉ କୌଣସି ହୋସ୍ ନ ଥାଏ ବା ସାହସ ମଧ୍ୟ ନଥାଏ । ବର୍ତ୍ତମାନଗୁଡ଼ାକ ପାଷଣ୍ଡଙ୍କର ହାବୁଡ଼ରେ ପଡ଼ିଥିଲେ ମଧ୍ୟ ତାହା ବିଷୟରେ ଆଉ କାହାରି କିଛି କହିବାର ନ ଥାଏ । ଓଲଟି ସେହି ପାଷଣ୍ଡମାନଙ୍କ ଭିତରୁ ମଧ୍ୟ ଆବଶ୍ୟକତାର ଅନୁରୋଧରେ କାହାରି କାହାରିକୁ ସଭାଘରକୁ ଡାକି ଅଣାଯାଏ, ସେମାନଙ୍କର କାନରେ ଠାକୁରଙ୍କର ଫୁଲ ଖୋସି ଦିଆଯାଏ ଓ ସେମାନଙ୍କୁ ଆପଣା ସାଙ୍ଗରେ ମଙ୍ଗୁଲାଇ ନିଆଯାଏ । ଧର୍ମର କଥା କୁହାଯାଏ, ସତ୍ୟର କଥା କୁହାଯାଏ, ସଂସ୍ଥାପନର କଥା ମଧ୍ୟ କୁହାଯାଏ; ମାତ୍ର ବର୍ତ୍ତମାନର ଭୂମିରେ ଏଗୁଡ଼ାକର ଯେ କୌଣସି ଅର୍ଥ ଅଥବା ସନ୍ଦର୍ଭ ରହିଛି, ମୋର ଏହି ମୁହୂର୍ତ୍ତଟିରେ ଯେ ତାହା ମୋ'ଠାରୁ କିଛି ଦାବୀ କରୁଛି, ସେଗୁଡ଼ାକୁ ମାୟାର ପ୍ରକରଣ ଭିତରେ ନିକ୍ଷିପ୍ତ କରି ରଖି ଦିଆଯାଏ । ଆଧ୍ୟାତ୍ମିକତା ଆମ ଭିତରେ ଅସଲ ଅଗ୍ନିଟିକୁ ପ୍ରଜ୍ୱଳିତ କରିଆଣେ, ମାତ୍ର ସ୍ଥିତାବସ୍ଥାଟିକୁ ଥାପି ରଖିବାର ଯାବତ ଧର୍ମାଚାର କେବଳ ଏକ ଅଗ୍ନିମାନ୍ଦ୍ୟକୁ ହିଁ ସ୍ୱୀକୃତି ଦେଇ ରଖିଥାଏ, ତାହା କ୍ଷମତା ସହିତ ସାଲିଶ କରେ । ଅସତ୍ୟ ସହିତ ସାଲିଶ କରେ, ଅବସରବାଦିତାକୁ ହିଁ ମୋକ୍ଷପଥ ବୋଲି ଜାଣିଥାଏ । ଏଗୁଡ଼ାକ ଭାଙ୍ଗି ନୂତନ ପବନର ସଞ୍ଚାର ହେଲେ ଯାଇ ଏଗୁଡ଼ାକ ଆମକୁ ଏକଦା ଯେ କେତେ ଆଳସ୍ୟବଶ ଓ ଅସତ୍ୟଭୋଜୀ କରି ରଖିଥିଲା, ସେକଥା ଜାଣିହୁଏ ।

ସ୍ୱାଧୀନତା ପୂର୍ବରୁ ଆମ ଜାତୀୟ କ୍ଷେତ୍ରରେ ଏକ ଅନୁକୂଳ ସମଗ୍ର ଆହ୍ୱାନର ଭୂମିଟିଏ ପ୍ରସ୍ତୁତ କରିବାରେ ଯଦି ଆଧ୍ୟାତ୍ମିକତାର ଏକ ବହୁ-ମୂଲ୍ୟ ସାହସିକ ଅବଦାନ ରହିଥିଲା, ସ୍ୱାଧୀନତା ପରେ ଆମ ଦେଶର ଧର୍ମ ଆମକୁ ନ୍ୟାୟତଃ ସେହି ମାର୍ଗରେ ହିଁ ଆହୁରି ଆଗକୁ ବାଟ ଦେଖାଇ ନେଇଥାନ୍ତା,–ପୁରୁଣାକୁ ଭାଙ୍ଗି ନୂଆର ସଂସ୍ଥାପନରେ ଆମକୁ ପ୍ରେରଣା ଦେଇଥାନ୍ତା । ମନ୍ଦିରଗୁଡ଼ାକ ଭିତରୁ money-changers କୁ ନିକାଳି ଜୀବନର ସଂସ୍ଥାପନ କରିବା ଲାଗି ତାହା ଆମ ଶପଥରେ ଆହୁରି ଦୃଢ଼ତା ଆଣି

ଦେଇଥାନ୍ତା । ତାହା ହୋଇ ପାରିଲା ନାହିଁ । ନାନା କାରଣରୁ ହୋଇ ପାରିଲା ନାହିଁ । ଏହି ଦେଶରେ·ସମାଜର ପରିବର୍ତ୍ତନ ଲାଗି ଧର୍ମ ଓ ଆଧ୍ୟାତ୍ମିକତା ଯେଉଁ ମହନୀୟ ଭୂମିକା ଗ୍ରହଣ କରି ପାରିଥାନ୍ତା, ତାହା ହୋଇ ପାରିଲା ନାହିଁ । ଐତିହାସିକ ଟଏନ୍‌ବୀଙ୍କ ମତରେ ଯୁଗେ ଯୁଗେ ସମାଜର ଅଗ୍ରଗତିରେ, ଅର୍ଥାତ୍ ସମାଜକୁ ମନୁଷ୍ୟ ଓ ମାନବିକତାର ଅଭ୍ୟୁଦୟ ଲାଗି ଅନୁକୂଳ କରି ଗଢ଼ିବାରେ ଆଧ୍ୟାତ୍ମିକ କ୍ଷେତ୍ରର ନେତୃତ୍ୱ ହିଁ ସବୁଠାରୁ ଅଧିକ ସହାୟତା କରି ଆସିଛି । ଯାବତୀୟ ଯଥାର୍ଥ ଅଗ୍ରଗତିର ପ୍ରେରଣାରେ ଆଧ୍ୟାତ୍ମିକ ପ୍ରେରଣା ହିଁ ସର୍ବ-ପ୍ରଧାନ ସ୍ରୋତଟି ହୋଇ ରହି ଆସିଛି । ସ୍ୱାଧୀନତା ପରେ ଭାରତବର୍ଷରେ ଆଧ୍ୟାତ୍ମିକ ପ୍ରେରଣାର ନାୟକମାନଙ୍କୁ ପଥର ମୂର୍ତ୍ତି କରି ରଖାଗଲା । ସେମାନଙ୍କର ଜୟନ୍ତୀ ହେଲା, ସେମାନଙ୍କ ନାଆଁରେ ବସ୍ତି ବସିଲା, ଗଳି ଓ ରାସ୍ତାଗୁଡ଼ିକର ନାମକରଣ ହେଲା, ମାତ୍ର ଆମ ଜୀବନର ବସ୍ତିରୁ ସେମାନେ ସତେ ଅବା ଏକାବେଳକେ ବିଦା ହୋଇ ଆଉ କୁଆଡ଼େ ଚାଲିଗଲେ । ସେମାନେ ସମସ୍ତେ ଆମର ପୂର୍ବପୁରୁଷ ହୋଇ ରହିଲେ, ମହାନ୍ ଅତୀତ ହୋଇ ରହିଲେ ଏବଂ ସେମାନଙ୍କର ଦାୟାଦ ରୂପେ ଆମେ ଆଗକୁ ଯିବା ଲାଗି ପୂରାପୂରି ଅମଙ୍ଗ ହୋଇ ସାଂସାରିକ ରୀତିରେ ଗୁରୁମାନ କଲୁ, ସମ୍ପ୍ରଦାୟ ଓ ସଙ୍ଗତମାନ ଥାପିଲୁ, ସଂକୀର୍ତ୍ତନ କଲୁ, ଯିଏ ଯୋଉଠି ଥିଲୁ, ନିଜ ନିଜର ଗୋଡ଼କୁ ସେଇଠି ବାନ୍ଧି ରଖିଲୁ । ଏକ ପୁନର୍ଜାଗରଣର ପର୍ଯ୍ୟାୟକୁ ଗୋଟାଏ ତୁଚ୍ଛା Revivalism ରେ ପରିଣତ କରିଦେଲୁ, ତୁଚ୍ଛା ଔପଚାରିକତାରେ ବୁଡ଼ାଇ ରଖିଲୁ ।

ଯବନ ଏହିସବୁ ସଙ୍ଗତରୁ ଅଲଗା ହୋଇ ରହିଲା, ଆପଣାକୁ ଏଗୁଡ଼ାକରୁ ଅଲଗା କରି ରଖିଲା । ଡାକିଦେଲା ମାତ୍ରକେ ଯେ ଭଗବାନ ମର୍ତ୍ତ୍ୟକୁ ଓହ୍ଲାଇ ଆସନ୍ତି, ତାଙ୍କଠାରୁ ଅପେକ୍ଷିତ କାର୍ଯ୍ୟଟିକୁ ସମ୍ପନ୍ନ କରି, ଯେଉଁଠାରୁ ଆସିଥିଲେ ପରବର୍ତ୍ତୀ ସମନଯାଏ ଅପେକ୍ଷା କରି ରହିବା ଲାଗି ପୁଣି ସେଠାକୁ ଚାଲି ଯାଆନ୍ତି, ଭଗବାନଙ୍କ ସହିତ ଯେ ସର୍ତ୍ତରଖି ବଣିଜ କରାଯାଏ, ଯବନ ଏଗୁଡ଼ାକୁ ସିଧା ଧର୍ମହୀନ ବୋଲି କହେ, ସିଆଣିଆ ପାଷଣ୍ଡତା ବୋଲି କହେ । ଭଗବାନ ଆମରି ଭିତରେ ଥାଆନ୍ତି–ତାଙ୍କୁ ସେହି ଭିତରୁ ହିଁ ଉଦ୍‌ବୋଧିତ କରି ଆଣିବାକୁ ହୁଏ । ଆମର ଏହି ସମଗ୍ର ଜୀବନ ଓ ଜୀବନ-ସମ୍ବନ୍ଧ ଭିତରେ ଏକ ନୂଆ ଆକାଂକ୍ଷା ଭରିଦେଇ ପାରିବା ଲାଗି ସାହସ ସମ୍ଭବ ହେଲେ ଏଇଠି ପ୍ରତିଷ୍ଠିତ ସବୁ ଖମ୍ବଗୁଡ଼ାକୁ ଭାଙ୍ଗି ଭଗବାନଙ୍କର ଆବିର୍ଭାବ ହୁଏ । ଶକ୍ତି ରୂପେ ଆବିର୍ଭାବ ହୁଏ, ଆହ୍ୱାନ ରୂପେ ଆବିର୍ଭାବ ହୁଏ । ଯେତେ ଯେଉଁଠି ମନ୍ଦିର ଗଢ଼ା ହୁଏ, ଭଗବାନଙ୍କର ଦ୍ୱାହି ଦେଇ ଯେତେ ଯେଉଁଠି ମଣିଷକୁ ଶୀତଳ କରି ରଖି ଦିଆଯାଏ, ଯେତେ ଯେଉଁଠି ଭାଗ୍ୟ ନାମରେ ଶାର୍ଦ୍ଦୂଳଗୁଡ଼ାଙ୍କର ଦୌରାତ୍ମ୍ୟକୁ ସହିଯିବାର ଉପଦେଶ ଦିଆଯାଏ, ସେଠାରେ ଯବନ କେବଳ ଆପଦ ହିଁ ଗଣିବାରେ ଲାଗିଥାଏ । ଯେଉଁଠି ଧର୍ମକୁ ପୋଷକ

ପରି ବ୍ୟବହାର କରାଯାଏ, କରୁଥିବା ପାପଗୁଡ଼ାକର ପ୍ରାୟଶ୍ଚିତ୍ତ ପରି ବ୍ୟବହାର କରାଯାଏ, ଯବନର ଜୀବନଧର୍ମ ତାହାକୁ ସତେଅବା ଏକ ନିଷିଦ୍ଧ ଅଞ୍ଚଳ ବୋଲି ଜାଣି ସେଠାରୁ ଦୂରଛଡ଼ା ହୋଇ ରହିଯାଏ । ଧର୍ମ ନାମରେ ଏପରିକି ଭଗବାନଙ୍କ ନାମରେ ମଧ୍ୟ ଯବନ କଦାପି ଅଫିମ ଖାଇବାର ଫନ୍ଦା ଭିତରେ ପଡ଼ିବାକୁ ଯାଏ ନାହିଁ । ମଣିଷକୁ ଅଫିମ ଖୁଆଇ ରଖିବା ଲାଗି କୌଣସି ଭଗବାନ କେବେହେଲେ ଇଚ୍ଛା କରୁ ନଥିବେ । ନିଜ ଜୀବନର ଅସଲ ଦାୟିତ୍ୱ ଓ ଆହ୍ୱାନ ଗୁଡ଼ାକର ସମ୍ମୁଖୀନ ହେବା ଲାଗି ପ୍ରସ୍ତୁତ ହୋଇ ପାରୁନଥିବା ମଣିଷ ହିଁ ଆପଣା ସକାଶେ ଅଫିମର ବରାଦ କରିବାରେ ଲାଗିଥାଏ । ସମାଜ ଭିତରେ ସତେଅବା ମାରଣା ବଳଦ ପରି ହୋଇ ସବୁ ଆବୋରି ରହିବାକୁ ଇଚ୍ଛା କରୁଥିବା ଦୁଷ୍ଟ ହିଁ ଧର୍ମ ନାମରେ ଅଫିମ ବାଣ୍ଟିବା ଲାଗି ବାହାରିଥାଏ । କହିବା ବାହୁଲ୍ୟ, ଅଧିକାଂଶ ଯୁଗରେ ଓ ଅଧିକାଂଶ ଜଳବାୟୁରେ ସେଇ ମଣିଷ ସଫଳତା ହାସଲ କରେ । ମାତ୍ର ଅସଲ ସତ୍ୟଟା ଯବନ ଆଡ଼େ ରହିଥାଏ ।

ଯେତେବେଳେ ଆମେ ଅଫିମ ଖାଇ ବସୁ; ଧର୍ମ ଆଚରଣ କରିବା ନାଁରେ ଯେତେବେଳେ ଆମେ କେତେଟା ପଥରର ପୂଜା କରୁଥାଉ ଅଥବା କେତେଟା ନିୟମର ପାଳନ କରୁ, ସେତେବେଳେ ଆମ ଭିତରର ଯବନଟା ଶୋଇ ପଡ଼ିଛି ବୋଲି ଆମେ ଭ୍ରମ କରିବାରେ ଲାଗିଥାଉ । ଭିତରେ ରହିଥିବା ଭଗବାନ ବି ବେଳେ ବେଳେ ଶୋଇ ପଡ଼ିଥାନ୍ତି ଓ ଆମେ କରୁଥିବା ଭିଆଣ ଓ ଭିଆଣଗୁଡ଼ିକ ବିଷୟରେ ସିଏ କିଛି ଜାଣନ୍ତି ନାହିଁ ବୋଲି ଯେପରି ଆମ ଭିତରୁ କେହି କେହି ଭାବିଥାନ୍ତି, ନିଜ ଭିତରର ଯବନଟା ମଧ୍ୟ ସେହିପରି ବେଳେବେଳେ ଶୋଇ ପଡ଼େ ବୋଲି ଆମେ ବିଚାର କରିଥାଉ । ଆମେ ସେତିକିବେଳେ ଅନ୍ଧାରଗୁଡ଼ାକୁ ପହଁରିବାରେ ଲାଗିଥାଉ, ଅନ୍ଧାରଗୁଡ଼ାକୁ ପିଇବାରେ ଲାଗିଥାଉ ଏବଂ ତାହାକୁ ହିଁ ଯୁଗଧର୍ମ ବୋଲି କହି ନିଜକୁ ମୁକୁଟ ପିନ୍ଧାଇବାରେ ବି ଲାଗିଥାଉ ଏବଂ ସେତିକିବେଳେ ଆମେ ବଣିଜଗୁଡ଼ାକୁ ବନ୍ଧୁତା ବୋଲି କହୁ, ଭୀରୁତାଗୁଡ଼ାକୁ ଆତ୍ମରକ୍ଷା କହୁ, ଚାଟୁକାରିତାକୁ ପ୍ରଶଂସା ବୋଲି କହୁ– ଜୀବନଟାକୁ ବ୍ୟାବହାରିକତା ବୋଲି କହୁ । ଶହେ ଥାନରେ ପୀରତି କରୁ ଓ ବିଶା ଶହେ ଥାନରୁ ପୀରତି ଛିଣ୍ଡାଇ ଆଣିବାରେ ଲାଗିଥାଉ । ଯବନ ଶୋଇ ନଥାଏ, ଯବନ ହସୁଥାଏ । ଆମରି ଭିତରେ ରହିଥାଏ ଓ ହସୁଥାଏ । ଜନନୀର ଧୈର୍ଯ୍ୟ ଧରି ସିଏ ତଥାପି ଅପେକ୍ଷା କରି ରହିଥାଏ; ଆମ ଉପରେ ସିଏ ତଥାପି ବିଶ୍ୱାସ ରଖିଥାଏ । ଅସଲ ମୁହୂର୍ତ୍ତଟି ଲାଗି ଅପେକ୍ଷା କରି ରହିଥାଏ । ଆମ ପ୍ରତ୍ୟେକଙ୍କ ଜୀବନରେ ଯେତେବେଳେ ଯବନର ମୁହୂର୍ତ୍ତ ଆସି ପହଞ୍ଚେ, ଯବନ ଲାଗି ବାଟ ଛାଡ଼ି ଦେବାଲାଗି ଯେତେବେଳେ ଆଉ କୌଣସି ଭୀତି ବା ସଙ୍କୋଚ ରହେ ନାହିଁ, ସେତେବେଳେ ମଣିଷର ଜାତି ଯାଏ ।

ପ୍ରତିଷ୍ଠିତ ମୂର୍ତ୍ତିଗୁଡ଼ାକ ଭାଙ୍ଗି ଭାଙ୍ଗି ଯାଆନ୍ତି; – ଆଖି ଫିଟାଇ ଦେବା ମାତ୍ରକେ ସଂସାରଟା ଅନ୍ୟପ୍ରକାର ଦିଶିବାକୁ ଆରମ୍ଭ କରେ । ଯୁଗର ସବୁଯାକ ଆକାଂକ୍ଷା ସତେ ଅବା ଠିକ୍ ଆପଣା ଭିତରୁ ହିଁ ଜନ୍ମଗ୍ରହଣ କରୁଥିବା ପରି ମନେହୁଏ, ସେଇ ଆପଣାର ଗୋଟିଏ ବୃନ୍ତରେ ସଂସାରଯାକର ସବୁଯାକ ଫୁଲ ଆଉ ଜଷି ଲଦିହୋଇ ରହିଥିଲା ପରି ମନେ ହେଉଥାଏ । ଘର ଭିତରୁ ବାହାରି ଆସିବାକୁ ଆଉ ମୋଟେ ବେଶୀ ବେଳ ଲାଗେ ନାହିଁ; ସେତେବେଳେ ଆଉ କୌଣସି ଗୁରୁ ଠାରୁ ମନ୍ତ୍ର ନେବାର ପ୍ରୟୋଜନ ହୁଏ ନାହିଁ, ଆପଣା ଭିତରର ଗୁରୁ ଆପଣା ଭିତରର ନବଦୀକ୍ଷିତକୁ ସ୍ନାତକରୂପେ ବାହାରକୁ ବାହାର କରାଇ ଆଣେ । ପୁରୁଣା ଏରୁଣ୍ଡି ବନ୍ଧଗୁଡ଼ାକ ଆପେ ଆପେ ଢ଼େଇଁ ହୋଇଯାଏ, ପୁରୁଣା ଦିଗନ୍ତଗୁଡ଼ିକରେ ସତେ ଅବା ଏକ ନୂତନ ପ୍ରସ୍ଥ ଦୃଶ୍ୟମାନ ହେବାକୁ ଆରମ୍ଭ କରେ ।

ତା।୧୦।୦୭।୧୯୭୬ ରିଖ



# ପନ୍ଦର

ଆମର ଏହି ଦେହ ଗୋଟିଏ ଯନ୍ତ୍ର । ଆହୁରି ଅନେକ ଅନେକ ଯନ୍ତ୍ର ଭିତରୁ ଗୋଟିଏ । ଯେଉଁମାନେ ଯନ୍ତ୍ରର ସମ୍ବାଦ ଜାଣନ୍ତି, ଯନ୍ତ୍ରଗୁଡ଼ାକର ମର୍ମପ୍ରବେଶ କରନ୍ତି, ଆମର ଆଧୁନିକ ଚଳଣିରେ ଆମେ ସେମାନଙ୍କୁ ବିଜ୍ଞାନୀ ବୋଲି କହିଥାଉ । ସେମାନଙ୍କର କାଇଦା ଏବଂ କରଣିଗୁଡ଼ାକୁ ବିଜ୍ଞାନ ବୋଲି କୁହାଯାଏ । ଅତ୍ୟନ୍ତ ଉତ୍ସାହରେ, ସତେଅବା ପ୍ରେମରେ ପଡ଼ିଥିଲା ପରି, ଆମେ ଆମର ଏହି ଯୁଗଟିକୁ ବିଜ୍ଞାନର ଯୁଗ ବୋଲି କହିଥାଉ । ଏ ଯୁଗରେ କେବଳ ବୈଜ୍ଞାନିକହିଁ ମଣିଷକୁ ଚଳାଇବ ବୋଲି କହିଥାଉ । ମାତ୍ର ଆଖର ମଣିଷହିଁ ବିଜ୍ଞାନ ଓ ବୈଜ୍ଞାନିକକୁ ଚଳାଇବ ବୋଲି କେହି କହିବାକୁ ବସିଲେ, ଆମେ ତାକୁ ମରହଟିଆ, ପୁରୁଣା ଓ ଆହୁରି କେତେ କ'ଣ ବୋଲି କହି ଉଡ଼ାଇ ଦେଇଥାଉ । କାରଣ, ଏ ଯୁଗଟା ସେମାନଙ୍କର ନୁହେଁ, ମାତ୍ର ଗୋଟାସୁଦ୍ଧା ଆମର ବୋଲି ହିଁ ଆମେ ଧରି ନେଇଥାଉ ।

ଡ଼ାକ୍ତରମାନେ ଦେହର ଯନ୍ତ୍ରଟାକୁ ନେଇ କାରବାର କରନ୍ତି । ଦେହରେ ରୋଗ ହେଲେ ଡାକ୍ତରଙ୍କର ଡାକରା ପଡ଼େ । ଦେହ ଥିବାଯାକ ହିଁ ଦେହରେ ଅବଶ୍ୟ ରୋଗ ହେବ ବୋଲି ଧରି ନେଇଥିବା ଆମେ ଦେହ ସହିତ ବାସ କରୁଥିବା ଆମର ଏହି ଜୀବନର ଆୟତନଟା ମଧ୍ୟରେ ଡାକ୍ତରମାନଙ୍କୁ ମଧ୍ୟ ଏକ ଆବଶ୍ୟକତା ବୋଲି ଗ୍ରହଣ କରିନେଇଥାଉ । ସେହି ଅନୁସାରେ ପ୍ରତ୍ୟେକ ରାଷ୍ଟ୍ରରେ ମଧ୍ୟ ଚିକିତ୍ସା ବିଜ୍ଞାନ ଏକ ଆବଶ୍ୟକତା ରୂପେ ସ୍ୱୀକୃତ ହୋଇଥାଏ । କେତେକ ମଣିଷଙ୍କୁ ଏକାଧାରରେ ବୈଜ୍ଞାନିକ ଏବଂ ଡାକ୍ତର ହିସାବରେ ମଣ କରିବାଲାଗି ରାଷ୍ଟ୍ରାଧୀନ ହୋଇ ଚିକିତ୍ସା-ଶାସ୍ତ୍ରର ଉଚ୍ଚ ଅନୁଷ୍ଠାନମାନ ରହିଥାଏ । ଡାକ୍ତର ହେବା କଦାପି ସମସ୍ତଙ୍କର ଭାଗ୍ୟରେ ଯୁଟେ ନାହିଁ । ମଣିଷର ନାନା ସଉକ ଭିତରେ ଡାକ୍ତର ହେବା ଗୋଟିଏ ଅତ୍ୟୁଚ୍ଚ ସଉକରୂପେ ପରିଗଣିତ ହୁଏ । ଡାକ୍ତର ହେଲେ ଅଧିକ ପଇସା ମିଳେ, ସମାଜରେ ଅଧିକ ଖାତିରି ମିଳେ ଏବଂ

ସମ୍ଭବତଃ ସେଇଥିଲାଗି ଆମ ଭିତରୁ ଅନେକେ ଡାକ୍ତର ହେବାକୁ ଇଚ୍ଛା କରିଥାନ୍ତି । ଜଣେ ଡାକ୍ତର ହୋଇପାରିବା ଲାଗି ସେମାନେ କେତେ କେତେ ତପସ୍ୟା କରନ୍ତି, କେତେ କୃଚ୍ଛ୍ର କରନ୍ତି ଏବଂ ତପସ୍ୟାଟି ସିଦ୍ଧ ହୋଇଗଲେ, କେବଳ ଯିଏ ଡାକ୍ତର ହେଲା, ସେଇ ଏକୁଟିଆ ନୁହେଁ, ତା'ର ବାପ, ମାଆ, ଭାଇବିରାଦର ମଧ୍ଯ ସମସ୍ତେ ପ୍ରକୃତରେ କେଡ଼େ ଖୁସି ହୁଅନ୍ତି । ଡାକ୍ତରୀ ପାଠ ପଢ଼ି ଡାକ୍ତର ହେବା ବେଳକୁ ଜଣେ ଡାକ୍ତରର ଅସଲ ପରୀକ୍ଷାଟି ପ୍ରକୃତରେ ଆରମ୍ଭ ହେବାର ହିଁ କଥା । ମାତ୍ର ଡାକ୍ତରୀ ପାଠଟା ସାରି ଡାକ୍ତର ହେବା ମାତ୍ରକେ ହିଁ ସତେଅବା ସବୁଯାକ ପରୀକ୍ଷା ସରି ଯାଇଥିବା ପରି ମନେ ହୁଏ । ଏଥର 'ପାଣି ପିଇବ ଛାଣି ପଇସା ନେବ ଗଣି'ର ଉପାଖ୍ୟାନଟାହିଁ ଯେପରି ବାକି ରହି ଯାଇଥାଏ ।

ଡାକ୍ତର ସମସ୍ତଙ୍କ ଲାଗି ଦରକାର; ଧନୀଙ୍କ ଲାଗି ଦରକାର, ଦରିଦ୍ରଙ୍କ ଲାଗି ବି ଦରକାର । କାରଣ, ରୋଗ ଆସିବା ସମୟରେ ଧନୀ ଆଉ ଦରିଦ୍ର ମଧ୍ୟରେ କୌଣସି ବାଛବିଚାର ରଖି କଦାପି ଆସେ ନାହିଁ । ଅବଶ୍ୟ ଏକଥା ସତ ଯେ, ଦରିଦ୍ରମାନଙ୍କୁ ଯେଉଁ ରୋଗ ହୁଏ, ଧନୀମାନଙ୍କୁ ସେହି ରୋଗ ସଚରାଚର ଖୁବ କମ୍ ହୁଏ, ଓ ଧନୀମାନଙ୍କୁ ହେଉଥିବା ବିଶେଷ ରୋଗଗୁଡ଼ାକ ସାଧାରଣତଃ ଦରିଦ୍ରମାନଙ୍କର ଘରକୁ ଆସିବା ଲାଗି ଆଦୌ ପସନ୍ଦ କରନ୍ତି ନାହିଁ । ହୁଏତ ବୈଜ୍ଞାନିକମାନେ କହିବେ ଯେ, ବିଜ୍ଞାନର ଦୃଷ୍ଟିକୋଣରୁ ବିଚାର କରି ଦେଖିଲେ, ସର୍ବଦା କେବଳ ସେହି ଗୋଟିଏ କାରଣରୁ ଅର୍ଥାତ୍, ସଂକ୍ରମଣ ଦ୍ୱାରା କୌଣସି ନିର୍ଦ୍ଦିଷ୍ଟ ରୋଗର ଜୀବାଣୁ ଦେହ ଭିତରେ ପ୍ରବେଶ କରିବାରୁ ହିଁ ଦେହରେ ଯାବତୀୟ ରୋଗର ସୂତ୍ରପାତ ହୋଇଥାଏ । ମାତ୍ର ବସ୍ତୁତଃ, ଧନୀମାନଙ୍କୁ ପ୍ରଧାନତଃ ଯେଉଁସବୁ କାରଣରୁ ରୋଗ ହୁଏ, ଦରିଦ୍ରମାନଙ୍କୁ ଖାସ୍ ସେହିସବୁ କାରଣରୁ ରୋଗ ହୁଏ ନାହିଁ । ନିୟମ ଭିତରେ ବିକଳ୍ପ ପଶିଯାଏ–କାରଣ ତୁଚ୍ଛା ଯନ୍ତ୍ରବିଜ୍ଞାନର ସୂତ୍ରଗୁଡ଼ାକ ବ୍ୟତୀତ ଏହି କ୍ଷେତ୍ରରେ ଆହୁରି କେତେ କେତେ କାରଣସୂତ୍ର ପରସ୍ପରର ପ୍ରାୟ ଅଙ୍ଗୀଭୂତ ହୋଇ କାର୍ଯ୍ୟ କରିବାରେ ଲାଗିଥାନ୍ତି ।

ସବୁ ଦେଶରେ ଧନୀ ଥାଆନ୍ତି, ଦରିଦ୍ର ବି ଥାଆନ୍ତି । ପୃଥିବୀର ଅଧିକ ସଂଖ୍ୟକ ଦେଶରେ ଧନୀ ଅଳପ ଥାନ୍ତି, ଦରିଦ୍ର ଅକ୍ଷୌହିଣୀ ପ୍ରମାଣେ ରହିଥାନ୍ତି, ଏବଂ ସମସ୍ତଙ୍କର ସଙ୍ଗାଳି ହିସାବରେ ସେହି ଦେଶର ରାଷ୍ଟ୍ରକୁ ନିୟମତଃ ଧନୀ ଓ ଦରିଦ୍ର ଉଭୟଙ୍କ ଲାଗି ବ୍ୟବସ୍ଥା କରିବାକୁ ପଡ଼େ । ଅଳପ ହେଉ ଅଥବା ବେଶୀ ହେଉ, କିଛି ନା କିଛି ବ୍ୟବସ୍ଥା

ଅବଶ୍ୟ କରିବାକୁ ପଡ଼େ । ଖାଦ୍ୟ ଲାଗି ବ୍ୟବସ୍ଥା କରିବାକୁ ପଡ଼େ, ଶିକ୍ଷାଲାଗି ବ୍ୟବସ୍ଥା କରିବାକୁ ପଡ଼େ ଏବଂ ସ୍ୱାସ୍ଥ୍ୟ ଲାଗି ବି ବ୍ୟବସ୍ଥା କରିବାକୁ ପଡ଼େ । ଗରିବ ଦେଶରେ ରାଷ୍ଟ୍ର ଯେପରି ଥାଏ, ଡାକ୍ତରମାନେ ବି ଠିକ୍ ସେହିପରି ହୋଇ ରହିଥାନ୍ତି । ଗରିବ ଦେଶରେ ବିଜ୍ଞାନ ଯେପରି ଥାଏ, ଡ଼ାକ୍ତରୀବିଜ୍ଞାନ ବି ସେହିପରି ହୋଇ ରହିଥାଏ । ସାମାଜିକ ଶ୍ରେଣୀ-ଗଠନର ଏକ ନିୟମ ଅନୁସାରେ ଗରିବ ଦେଶର ରାଷ୍ଟ୍ର ଗରିବମାନଙ୍କ ହାତରେ ନଥାଏ, ଅନେକ ସମୟରେ ଗରିବମାନଙ୍କ ପାଇଁ ମଧ୍ୟ ନଥାଏ । ଠିକ୍ ସେହିପରି ଚିକିତ୍ସାବିଜ୍ଞାନ ଓ ଚିକିତ୍ସକମାନେ ମଧ୍ୟ ଗରିବମାନଙ୍କ ହାତରେ ନଥାନ୍ତି । ଚିକିତ୍ସକମାନେ ସତେଅବା ଉପର ଶ୍ରେଣୀର ଏକ ଅଧିରଚନା ହୋଇ ରହିଥାନ୍ତି, ଅନ୍ୟାନ୍ୟ ପ୍ରାୟ ଯାବତୀୟ ବିଜ୍ଞାନ ପରି ଚିକିତ୍ସାବିଜ୍ଞାନ ମଧ୍ୟ ସେହିପରି ଭାଡ଼ି ଉପରେ ଅଥବା ତୁଳି ଉପରେ ଯାଇ ରହିଥାଏ । ଉପର ମହଲା ଭିତରେ ରହିଥାଏ, ଖଞ୍ଜ ପାଦ ଓ ଭଗ୍ନ କଟିଗୁଡ଼ାକ ଉପରେ ଉଜ୍ଜ୍ୱଳ ଦର୍ପରେ ଶୋଭା ପାଉଥିବା ସିନ୍ଦୂରଲଗା କାନ୍ଥଗୁଡ଼ାକ ହୋଇ ରହିଥାଏ ।

ମଣିଷର କଲ୍ୟାଣ ପାଇଁ ହିଁ କୁଆଡ଼େ ବିଜ୍ଞାନର ଭିଆଣ ହୋଇ ରହିଥିଲା । ବିଜ୍ଞାନକୁ ପ୍ରକୃତରେ ବାଟ ଛାଡ଼ି ଦିଆ ଯାଉଥିଲେ ହୁଏତ ତାହା ମଣିଷର କଲ୍ୟାଣ ହିଁ କରୁଥାନ୍ତା । ମଣିଷର ଜୀବନରେ ଦୁଃଖଭୋଗର ଭାରକୁ କମ୍ କରୁଥାନ୍ତା, ଭାଗ୍ୟ ଓ ଅସହାୟତା ସମ୍ମୁଖରେ ମଣିଷକୁ କମ୍ ଅସହାୟ କରି ରଖୁଥାନ୍ତା, ମଣିଷକୁ ତାହା ଅଧିକ ସମ୍ମାନିତ ଭାବରେ ପ୍ରତିଷ୍ଠିତ କରି ପାରୁଥାନ୍ତା । ଜୀବନର ନୀରସ ପଥଶ୍ରମକୁ ଆମ ସମସ୍ତଙ୍କ ଲାଗି ଏକ ଆଶାସଚଳ ଭବିଷ୍ୟଦୃଷ୍ଟିରେ ପରିଣତ କରୁଥାନ୍ତା । ମାତ୍ର ସେକଥା ସଚରାଚର ଆଦୌ ହୋଇ ପାରେ ନାହିଁ । ଯେଉଁ ସମାଜରେ ମଣିଷର ପ୍ରତିଷ୍ଠା ହୋଇଥାନ୍ତା, ସେଇ ସମାଜରେ ହୁଏତ ମଣିଷର ବିଜ୍ଞାନ ମଧ୍ୟ ମୂଳତଃ ଅଧିକରୁ ଅଧିକ ମଙ୍ଗଳର ହିଁ ପ୍ରତିଷ୍ଠା ଲାଗି ବାଟ କାଢ଼ି ନେଉଥାନ୍ତା । ମାତ୍ର ଯେଉଁଠାରେ ମଣିଷ ଉପରେ କ୍ଷମତାର ପ୍ରତିଷ୍ଠାକୁ ହିଁ ଇତିହାସ ବୋଲି ସ୍ୱୀକାର କରାଯାଏ, ସେଠାରେ ଅନ୍ୟ ଯାବତୀୟ ଜ୍ଞାନ ପରି ବିଜ୍ଞାନ ମଧ୍ୟ ଅଧିକାଂଶତଃ କ୍ଷମତାର ଭୃତ୍ୟରୂପେ ହିଁ ବ୍ୟବହୃତ ହୋଇଥାଏ । ବିଜ୍ଞାନ ନାମରେ ଯନ୍ତ୍ରଗୁଡ଼ାକ ବଢ଼େ, କାରିଗର ବଢ଼ନ୍ତି ଓ କାରିଗରିଗୁଡ଼ାକ ମଧ୍ୟ ବିଂଶତିଭୁଜ ହୋଇ ବଢ଼େ । ମାତ୍ର ଏମାନେ ସମସ୍ତେ ଯାଇ କ୍ଷମତାର ଗୁହାଳ ଭିତରେ ବନ୍ଧା ହୋଇ ରହନ୍ତି, କ୍ଷମତାର ପରିଚର୍ଯ୍ୟା ଖଟନ୍ତି । ତେଣୁ, ଯେଉଁ ଯୁଗକୁ ଏକ ନିରୀହ ସରାଗରେ ବିଜ୍ଞାନ ଯୁଗ ବୋଲି କୁହାଯାଏ, ସେହି ଯୁଗରେ ପୃଥିବୀସାରା ମଣିଷର ସଂସାରଗୁଡ଼ାକ ଅନ୍ଧାର ଭିତରେ ପାଚି କରି ରହିଥାଏ । ସେହି ସଂସାରରେ ଅଧେ

ମଣିଷ ଅଧପେଟ ଖାଇବାକୁ ପାଆନ୍ତି, ଅଧେ ମଣିଷ ପ୍ରାୟ ସକଳ ପ୍ରକାର ଶିକ୍ଷାରୁ ବଞ୍ଚିତ ହୋଇ ରହିଥାନ୍ତି, ନାନାପ୍ରକାର ପରିହାର୍ଯ୍ୟ ରୁଗ୍ଣତା ଭିତରେ ପ୍ରାୟ ପରିତ୍ୟକ୍ତ ଓ ବର୍ଜିତ ହୋଇ ରହିଥାନ୍ତି । ବିଜ୍ଞାନର ଏହି ସଜ୍ଜିତ ଅପସଂସାରଟା ଭିତରେ ମଣିଷ ମଣିଷକୁ ଯୁଦ୍ଧରେ ଖଟାଏ, ଆଦର୍ଶବାଦ ନାଆଁରେ ମଣିଷକୁ ତୁଚ୍ଛା ଦୌରାତ୍ମ୍ୟଗୁଡ଼ାକର ଦାସ କରି ରଖେ, ଗୁହାଳଗୁଡ଼ିକର ରାଜସିକତାକୁ ସେଠି ଅନେକ ସମୟରେ ଜାତୀୟତା ବୋଲି କୁହାଯାଏ । ଥୋକେ ମଣିଷ ଅନ୍ୟ ସମସ୍ତଙ୍କ ଉପରେ ଘୋଡ଼ା ଚଢ଼ି ବାହାରନ୍ତି । ବିତ୍ତଠାରୁ ଆରମ୍ଭ କରି ବିଜ୍ଞାନ ପର୍ଯ୍ୟନ୍ତ ସବୁଗୁଡ଼ାକୁ ହିଁ ସେମାନେ ଆପଣାର ପର୍ଯ୍ୟଙ୍କ ଉପରର ବେହରଣ କରି ରଖନ୍ତି । ସମାଜର ସମ୍ବନ୍ଧଗୁଡ଼ାକ ଯେଉଁଠି ଯେଉଁ ଜାଲ ଭିତରେ ଛନ୍ଦି ହୋଇ ରହିଥାଏ, ଜ୍ଞାନ ବି ଆସି ସେହି ଜାଲଟି ଭିତରେ ପଡ଼ିଯାଏ; ସେହି ଜାଲ ଭିତରେ ବିଜ୍ଞାନ ପଡ଼େ, ରାଜନୀତି ପଡ଼େ, ବିତ୍ତ ଓ ବିବେକ-ବିତରଣର ଯାବତୀୟ ନୀତି ସେହି ଜାଲଟା ଭିତରେ ପଡ଼ି ଲଟରପଟର ହେବାରେ ଲାଗିଥାନ୍ତି ଓ ଏହିପରି ଭାବରେ ସେଗୁଡ଼ାକୁ ନେଇ ଲଟରପଟର ହେଉଥିବା ମଣିଷମାନେ ଜୟଧ୍ୱନି ଦେବାରେ ବି ଲାଗିଥାନ୍ତି । ସମସ୍ତ ପ୍ରକାର ରସଲାଳସା ଏବଂ ରସିକତା ସତ୍ତ୍ୱେ ସାହିତ୍ୟ ନାମରେ ଆମ ଉଦ୍ଧତତା, ଅଜ୍ଞଗମ୍ୟତା ଓ ଭାବପ୍ରବଣତା ଗୁଡ଼ାକ ବି ଆସି ଫାଶ ଭିତରେ ପଡ଼ି ଯାଆନ୍ତି । ତୁଚ୍ଛା ଯନ୍ତ୍ରଗୁଡ଼ାକୁ ନେଇ କାରବାର ହେଉଥିବା ତଥାକଥିତ ବିଜ୍ଞାନଗୁଡ଼ାକ ବି ଫାନ୍ଦରେ ପଡ଼ନ୍ତି । ତୁଚ୍ଛା ଦେହରେ ରୋଗଗୁଡ଼ାକୁ ନେଇ କାରବାର କରୁଥିବା ଚିକିତ୍ସା-ବିଜ୍ଞାନ ମଧ୍ୟ ଫାଶରେ ବନ୍ଧା ହୋଇ ରହେ । ଚିକିତ୍ସକ ବିଶେଷବିତ୍‌ମାନେ କାଳର ସ୍ୱୀକୃତ ବରାଦ ଅନୁସାରେ ଅନୁଗୃହୀତ ବୟସ୍ୟର ସାଜଗୁଡ଼ାକୁ ପିନ୍ଧି ତାହାରି ଭିତରେ ଖାପ ଖାଇ ରହି ଯାଆନ୍ତି । ସମାଜ ଅନୁସାରେ ହିଁ ବିଜ୍ଞାନ ଚାଲେ, କ୍ଷମତାର ବୋଲ ମାନି ବିଜ୍ଞାନୀମାନେ ଚାଲନ୍ତି । କଲ୍ୟାଣ, ଲୋକହିତ ଓ କର୍ତ୍ତବ୍ୟାଦର୍ଶର ଆବାହନ,—ଏହି ସବୁଯାକ ବ୍ୟାପାର ଅଳପକୁ ବୁଝାଉଥିବା ଓ ବହୁତ ଗାଇ ହେଉଥିବା ଗୋଟାଏ ଗୋଟାଏ ବୋଲିରେ ପରିଣତ ହୋଇ ରହିଯାନ୍ତି ।

୧୯୬୯ ମସିହାରେ ଦକ୍ଷିଣ ଆମେରିକାର ଚିଲି ରାଜ୍ୟରେ ଶ୍ରୀ ସାଲ୍‌ଭାଡ଼ୋରେ ଆୟେଣ୍ଡେ ସେହି ଦେଶର ଶାସନ-ମୁଖ୍ୟ ରୂପେ ନିର୍ବାଚିତ ହୋଇ ଆସିଲେ । ହଁ, ନିର୍ବାଚିତ ହୋଇ ଆସିଲେ, ଏକ ମିଳିତ ଶାସକ-ମଣ୍ଡଳୀରେ ସେ ଶାସନ-ମୁଖ୍ୟ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ଶ୍ରୀଯୁକ୍ତ ଆୟେଣ୍ଡେ ସ୍ୱୟଂ ଡ଼ାକ୍ତର ଥିଲେ । ତେଣୁ ଏ କଥାଟି ଅତ୍ୟନ୍ତ ସହଜରେ ବୁଝିହେବ ଯେ କ୍ଷମତାକୁ ଆସିବା ପରେ ଶ୍ରୀଯୁକ୍ତ ଆୟେଣ୍ଡେ

ସ୍ୱାସ୍ଥ୍ୟ ବ୍ୟବସ୍ଥା ଓ ସ୍ୱାସ୍ଥ୍ୟ-ସେବାର ପ୍ରଶାସନ କ୍ଷେତ୍ରରେ କେତେଗୁଡ଼ିଏ ମୌଳିକ ପରିବର୍ତ୍ତନ ଆଣିବାକୁ କେତେକ ସକ୍ରିୟ ଉଦ୍ୟମ କରିଥିଲେ । ସାଧାରଣତଃ ଦରିଦ୍ର ଓ ପଛୁଆ ଦେଶମାନଙ୍କରେ ଯାହା ହୋଇଥାଏ, ଚିଲିର ସ୍ୱାସ୍ଥ୍ୟସେବା ଓ ସ୍ୱାସ୍ଥ୍ୟବ୍ୟବସ୍ଥାମାନ ସେତେବେଳେ ଦରିଦ୍ର ଶ୍ରେଣୀର ଲୋକମାନଙ୍କୁ ପ୍ରାୟ ସ୍ପର୍ଶ ହିଁ କରୁ ନଥିଲା । ଅବଶ୍ୟ, ସେହି ଦରିଦ୍ର ଶ୍ରେଣୀର ଲୋକମାନେ ହିଁ ଦେଶରେ ସର୍ବାଧିକ ସଂଖ୍ୟାରେ ରହିଥିଲେ ଏବଂ ରୋଗର ସମସ୍ୟାଟି ଅଧିକତର ସମଗ୍ର ଭାବରେ ସେହି ଦରିଦ୍ର ଶ୍ରେଣୀର ଲୋକମାନଙ୍କୁ ହିଁ କାମୁଡ଼ି ଧରିଥିଲା । ଏହି ଅବସ୍ଥାକୁ ଆୟେଣ୍ଡେ ବଦଳାଇ ଦେବାକୁ ଚାହିଥିଲେ । ସ୍ୱାସ୍ଥ୍ୟ-ସେବାର ସାଧନ ଏବଂ ସାହାଯ୍ୟ ଗୁଡ଼ିକ ଯେପରି ଦେଶର ସମସ୍ତଙ୍କ ପାଖରେ ଯାଇ ପହଞ୍ଚି ପାରିବ, ସେଥିଲାଗି ସେ ସେହି ଅବସ୍ଥାର ମୌଳିକ ଗଠନରେ ଓ ସ୍ୱଭାବରେ କେତେକ ପରିବର୍ତ୍ତନ ବିଧାନ କରିଥିଲେ । ଦ୍ୱିତୀୟତଃ, ସେ ଚିକିତ୍ସାର ବ୍ୟବସ୍ଥାକୁ ଅଧିକତର ପରିମାଣରେ ଲୋକ-ସାଧାରଣଙ୍କର ନିୟନ୍ତ୍ରଣରେ ଆଣି ରଖିବାର ଚେଷ୍ଟା କରିଥିଲେ । ଚିକିତ୍ସାର ଅନୁଷ୍ଠାନଟି ସଚରାଚର ଚିକିତ୍ସକ ମାନଙ୍କର ନିୟନ୍ତ୍ରଣରେ ହିଁ ରହିଥାଏ । ଯେଉଁମାନେ ବିଦ୍ୟାଟିକୁ ଜାଣନ୍ତି, ସମ୍ଭ୍ରମର ସହିତ ଯେଉଁମାନଙ୍କୁ ବିଶେଷଜ୍ଞ ବୋଲି କୁହାଯାଏ, ଏବଂ ଯେଉଁମାନେ ଅଧିକାଂଶ ସମାଜରେ ମାତ୍ର ଅଳ୍ପ କେତେକ ସଂଖ୍ୟାରେ ରହିଥାନ୍ତି, ଚିକିତ୍ସାର ବିଧାନ, ବିତରଣ ଓ ପ୍ରଶାସନ ସେହିମାନଙ୍କ ହାତରେ ହିଁ ରହିଥାଏ ଏବଂ ଚିକିତ୍ସାର ପ୍ରୟୋଜନରେ ଯେଉଁମାନେ ଡ଼ାକ୍ତରଖାନାକୁ ଆସନ୍ତି, ଏହି ରାଜ୍ୟରେ ସେମାନେ ସତେ ଅବା ଅନୁଗୃହୀତ ପ୍ରଜାପରି ହୋଇ ରହିଥାନ୍ତି ଏବଂ ଆପଣାର ଆରୋଗ୍ୟ ଲାଭ କରିବାର ବରାଦଟିକୁ ସମ୍ପୂର୍ଣ୍ଣ ଭାବରେ ସେହି ବିଶେଷଜ୍ଞ ଭାଗ୍ୟବିଧାତା ମାନଙ୍କ ହାତରେ ହିଁ ଛାଡ଼ି ଦେଇଥାନ୍ତି । ଅଧିକାଂଶ ସ୍ଥଳରେ ଦେବୀଙ୍କ ଆଗରେ ବଳି ପଡ଼ିବା ଲାଗି ଆସିଥିବା ଛେଳି ପରି ହୋଇ ସେମାନେ ଡ଼ାକ୍ତରଖାନାରେ ସମୟ ଅତିବାହିତ କରୁଥାନ୍ତି । ଠିକ୍ ଏହିପରି ଏକ ବ୍ୟବସ୍ଥାହିଁ ଚିଲିରେ ଲୋକମାନଙ୍କର ଭାଗ୍ୟ ହୋଇ ରହିଥିଲା । ଶ୍ରୀଯୁକ୍ତ ଆୟେଣ୍ଡେ ଏଥିରେ ମଧ୍ୟ କେତେକ ପରିବର୍ତ୍ତନ ଘଟାଇଥିଲେ । ନିୟନ୍ତ୍ରଣର ଦଉଡ଼ିଗୁଡ଼ିକୁ ସେ ବିଶେଷଜ୍ଞମାନଙ୍କର ଏକଚାଟିଆ ଭିତରୁ ମୁକ୍ତ କରି ଆଣିବା ଉଦ୍ଦେଶ୍ୟରେ କେତେକ ବିକଳ୍ପ ବ୍ୟବସ୍ଥା କରିଥିଲେ ।

ବିଶେଷ କରି ପଛୁଆ ଦେଶମାନଙ୍କରେ ଯାହା ହୋଇଥାଏ, ଚିଲି ଦେଶରେ ମଧ୍ୟ ଡ଼ାକ୍ତରମାନେ ଏକ ଶ୍ରେଣୀ ହିସାବରେ ବଡ଼ଲୋକମାନଙ୍କ ମଧ୍ୟରେ ହିଁ ଗଣା ହେଉଥିଲେ । ସେମାନେ ବୈଜ୍ଞାନିକ ହେବାକୁ ନୁହେଁ ଅଥବା ଲୋକମାନଙ୍କର ସେବା

କରିବାକୁ ନୁହେଁ, ମାତ୍ର ବଡ଼ଲୋକ ହେବାକୁ, ଅର୍ଥାତ୍ ଅଧିକ ପଇସା କମାଇବାକୁ ହିଁ ଡ଼ାକ୍ତରୀ ପାଠ ପଇଠ କରି ଡ଼ାକ୍ତର ହୋଇଥିଲେ । ଯାହାର ପଇସା ଅଛି, ପ୍ରଧାନତଃ ସେହିମାନେ ହିଁ ଚିକିତ୍ସା ଓ ଚିକିତ୍ସାବିଜ୍ଞାନ ଦ୍ୱାରା ଅଧିକ ଉପକୃତ ହେଉଥିଲେ । ସହରର ଯେଉଁସବୁ ଅଞ୍ଚଳରେ ସାଧାରଣତଃ ଅବସ୍ଥାପନ୍ନ ଲୋକମାନେ ବାସ କରନ୍ତି, ସେହି ଅଞ୍ଚଳଗୁଡ଼ିକରେ ହିଁ ଡାକ୍ତରମାନେ ମଧ ଅଧିକ ଗହଳି ଲଗାଇ ରହୁଥିଲେ । ଅଳ୍ପ-ବେତନଭୋଗୀ ନିମ୍ନଶ୍ରେଣୀର ଲୋକମାନେ ବାସ କରୁଥିବା ଦରିଦ୍ରତର ସହରାଞ୍ଚଳରେ ସେମାନଙ୍କର ପାଦ ପଡୁ ନଥିଲା; ଅର୍ଥାତ୍ କେବଳ ନୀରସ ଡ଼ାକ୍ତରମାନେ ସେହିସବୁ ଅଞ୍ଚଳରେ ଆପଣାର ଭାଗ୍ୟ ଦରାଣ୍ଡିବାକୁ ଯାଉଥିଲେ । ଗ୍ରାମାଞ୍ଚଳର ମଣିଷଗୁଡ଼ାକ ଚିକିତ୍ସା ବିଜ୍ଞାନ ଏବଂ ଭାଗ୍ୟବନ୍ତ ଚିକିତ୍ସକ ମାନଙ୍କଠାରୁ ବହୁ ଦୂରରେ ରହିଥିଲେ । ଶାସକ ଆୟେଣ୍ଡେ ଏକ ନୂତନ ଚିକିତ୍ସାବିଧାନର ପ୍ରଣୟନ କରି ସେଥିରେ ପରିବର୍ତ୍ତନ ଆଣିଥିଲେ । ଚିଲିର ପ୍ରତ୍ୟେକ ନାଗରିକ ଓ ତା'ର ପରିବାର ଯେପରି ଚିକିତ୍ସାର ସକଳ ପ୍ରକାର ସୁଯୋଗ ପାଇ ପାରିବ, ସେ ସେଥିଲାଗି ବ୍ୟବସ୍ଥା କରିଥିଲେ । ଭ୍ରାମ୍ୟମାଣ ସ୍ୱାସ୍ଥ୍ୟବ୍ୟବସ୍ଥାର ପ୍ରବର୍ତ୍ତନ କରି ଚିକିତ୍ସା ଓ ଚିକିତ୍ସକ-ମାନଙ୍କୁ ଚିଲିର ଗ୍ରାମାଞ୍ଚଳରେ ଉପଲବ୍ଧ କରାଇବା ଲାଗି ସେ ଏକ ଜାତୀୟ ସ୍ୱାସ୍ଥ୍ୟ-ବ୍ୟବସ୍ଥା ଆରମ୍ଭ କରାଇଥିଲେ । ଚିଲିର ଦକ୍ଷିଣାଞ୍ଚଳରେ, ଯେଉଁଠାକୁ କି ଯମ ବ୍ୟତୀତ ଆଉ କେହିହେଲେ ଆସୁ ନଥିଲେ ଅଥଚ ଯେଉଁଠାରେ ହଜାର ହଜାର ଜନବସତି ରହିଥିଲା, ନୂଆ ଶାସନର ବ୍ୟବସ୍ଥା ଅନୁସାରେ ସେଠାରେ ମଧ ସମ୍ଭବତଃ ଇତିହାସରେ ସର୍ବପ୍ରଥମ ଥର ପାଇଁ ଚିକିତ୍ସାର ସାଧନମାନ ଯାଇ ପହଞ୍ଚିଲା । ଦେଶସାରା ସବୁ ପିଲା ଓ ସବୁ ଗର୍ଭିଣୀ ଓ ସାନ ଶିଶୁ ଥିବା ମାଆ ସରକାରଙ୍କ ତରଫରୁ ଦିନକୁ ଅଧଲିଟର କରି ଦୁଧ ପିଇବାକୁ ପାଇଲେ । ଚିଲିରେ ଚିରଦିନ ଅନେକ ସଂଖ୍ୟାରେ ଶିଶୁ ମରି ଆସିଥିଲେ; ବର୍ତ୍ତମାନ ତାହାର ପ୍ରତିକାର ଲାଗି ଦେଶର ସାନ ଓ ବଡ଼ ସବୁ ସହରରେ ମାତୃମଙ୍ଗଳ ଓ ଶିଶୁମଙ୍ଗଳ କେନ୍ଦ୍ରମାନ ସ୍ଥାପିତ ହେଲା, ଯେଉଁଠାରେ କି ଗ୍ରାମବାସୀମାନେ ବି ଅପେକ୍ଷାକୃତ ଅଧିକ ସହଜରେ ଆସି ପହଞ୍ଚି ପାରିଲେ ଓ ଉପକୃତ ହୋଇ ପାରିଲେ । ଦେଶଯାକ ଚାରିଆଡ଼େ ବାସଗୃହ ଗୁଡ଼ିକୁ ଅଧିକ ସ୍ୱାସ୍ଥ୍ୟ-ଅନୁକୂଳ କରିବା ଲାଗି ଯଥାସମ୍ଭବ ଅଧିକ ବ୍ୟବସ୍ଥା ହେଲା, ନାଳ ଓ ନର୍ଦ୍ଦମା ପରିଷ୍କାର ହେଲା, ଜଳ ନିଷ୍କାସନର ବ୍ୟବସ୍ଥା ହେଲା । ଆକସ୍ମିକ ଚିକିତ୍ସାର ଆବଶ୍ୟକତା ମେଣ୍ଟାଇବା ଲାଗି ଯଥାସାଧ୍ୟ ପ୍ରୟାସ କରାଗଲା, ଚିଲିର ତମ୍ବାଖଣିମାନଙ୍କରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କର ନିତ୍ୟ-ଅଭ୍ୟସ୍ତ ଅସ୍ୱାସ୍ଥ୍ୟକର ଜୀବନର ପରିବେଶରେ

ମଧ୍ୟ ଏକ ପରିବର୍ତ୍ତନ ଆଣିବା ଲାଗି ଚେଷ୍ଟା ହେଲା । ଏହି ସବୁଯାକ କାମ ସରକାରଙ୍କ ତରଫରୁ ହେଲା; ସେଥିପାଇଁ ଯେଉଁ ଅଧିକ ଅର୍ଥ ବ୍ୟୟ ହେଲା, ଅନ୍ୟ ଯାବତୀୟ ପାରମ୍ପରିକ ବ୍ୟୟରୁ କାଟି ସରକାର ସେଥିଲାଗି ଯୋଗାଡ଼ କରି ପାରିଥିଲେ ।

ଆୟେଣ୍ଡେ ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗ ସମସ୍ତ ଦେଶକୁ କେତୋଟି ସ୍ୱାସ୍ଥ୍ୟଅଞ୍ଚଳରେ ବିଭକ୍ତ କରି ରଖିଲା । ଉଦାହରଣ ସ୍ୱରୂପ, ରାଜଧାନୀ ସାଣ୍ଟିଆଗୋ ସହରକୁ ଏହିପରି ଚାରିଗୋଟି ଅଞ୍ଚଳରେ ବିଭକ୍ତ କରାଗଲା ଓ ପ୍ରତ୍ୟେକ ଅଞ୍ଚଳ ପାଇଁ ଗୋଟିଏ ପ୍ରଧାନ ହସ୍‌ପିଟାଲ ରହିଲା । ପ୍ରତ୍ୟେକ ଅଞ୍ଚଳ ଭିତରେ କେତୋଟି ଉପାଞ୍ଚଳ ରହିଲା, ଯେଉଁଠାରେ ବାସ କରୁଥିବା ପ୍ରାୟ ପଚାଶରୁ ପଚସ୍ତରି ହଜାର ଲୋକଙ୍କୁ ଗୋଟିଏ ଗୋଟିଏ ଏକକ ରୂପେ ଗ୍ରହଣ କରାଗଲା । ସେଠାରେ ଏକ ସ୍ଥାନୀୟ ସ୍ୱାସ୍ଥ୍ୟ-କେନ୍ଦ୍ର ସ୍ଥାପିତ କରାଗଲା ଏବଂ ଏହିସବୁ ସ୍ଥାନୀୟ ସ୍ୱାସ୍ଥ୍ୟ-କେନ୍ଦ୍ରକୁ ଚଳାଇବା ନିମନ୍ତେ ଗୋଟିଏ ଗୋଟିଏ ଜାତୀୟ ସ୍ୱାସ୍ଥ୍ୟ କାଉନ୍‌ସିଲ୍ ଦାୟିତ୍ୱରେ ରହିଲା । ଡ଼ାକ୍ତର, ଔଷଧ ଆଦି ଚିକିତ୍ସା ସରଞ୍ଜାମ ଓ ଅର୍ଥ ଲାଗି ଏମାନେ ପ୍ରଧାନ ହସପିଟାଲ ଉପରେ ନିର୍ଭର କରୁଥିଲେ । ସ୍ଥାନୀୟ ସ୍ୱାସ୍ଥ୍ୟ କାଉନସିଲ୍‌କୁ ସଭ୍ୟମାନେ ନିର୍ବାଚିତ ହୋଇ ଆସୁଥିଲେ । ଶ୍ରମିକ-ସଙ୍ଗଠନ, ସ୍କୁଲ, ଯୁବ-ସଙ୍ଗଠନ ଓ ନାରୀକଲ୍ୟାଣ ଲାଗି ନାରୀମାନଙ୍କ ଦ୍ୱାରା ଗଢ଼ା ହୋଇଥିବା ବିଭିନ୍ନ ଅନୁଷ୍ଠାନରୁ ସଦସ୍ୟମାନେ ନିର୍ବାଚିତ ହୋଇ ଆସୁଥିଲେ । ସମାଜସେବକ ଆସୁଥିଲେ, ମନୋବୈଜ୍ଞାନିକ ବି ଆସୁଥିଲେ । ଏମାନେ ସାମୂହିକ ଜୀବନର ସ୍ୱାସ୍ଥ୍ୟଗତ ସମସ୍ୟା ବିଷୟରେ ନିୟମିତ ଆବଶ୍ୟକ ଆଲୋଚନା କରୁଥିଲେ, ସେଗୁଡ଼ିକର ସମାଧାନ ବାହାର କରୁଥିଲେ, ସ୍ୱାସ୍ଥ୍ୟ-କ୍ଷେତ୍ରରେ ହେଉଥିବା ଯାବତୀୟ କାର୍ଯ୍ୟକ୍ରମ ଏବଂ ଅଭିଯାନରେ ସହଯୋଗ କରୁଥିଲେ । କାଉନ୍‌ସିଲ୍ ଏବଂ ବୃହତ୍ତର ଜନସମୂହଙ୍କ ମଧ୍ୟରେ ଏମାନେ ସେତୁପରି କାର୍ଯ୍ୟ କରୁଥିଲେ । ଚିକିତ୍ସାର ଯେ ଏକ ମାନବିକ ଦିଗ ରହିଛି, ବିଦ୍ୟାଗୁଡ଼ାକ ଯେ ବିଶେଷଜ୍ଞମାନଙ୍କୁ କେବଳ ପ୍ରଶସ୍ତ ଅର୍ଥସଂସ୍ଥାନର ଅବସରମାନ ଖଞ୍ଜି ନ ଦେଇ ବୃହତ୍ତର ଲୋକଜୀବନରେ ହିଁ ସେହି ଲୋକମାନଙ୍କର କାର୍ଯ୍ୟରେ ଲାଗିବ, ଏହିପରି ଏକ ଅନ୍ୟ ଦୃଷ୍ଟିକୋଣ ଓ ଆଗ୍ରହରୁ ଏପରି ବ୍ୟବସ୍ଥା ହୋଇଥିଲା । ମୋଟ ଉପରେ କହିବାକୁ ଗଲେ ଦେଶବ୍ୟାପୀ ସ୍ୱାସ୍ଥ୍ୟସେବାର ଯଥାସମ୍ଭବ ଅଧିକ ବିକେନ୍ଦ୍ରୀକରଣ କରିଦେବା ଲାଗି ଓ ତଦ୍ୱାରା ତାହାକୁ ଉଚ୍ଚ ବିଶେଷଜ୍ଞମାନଙ୍କର ଏକଚାଟିଆ ମଧ୍ୟରୁ ମୁକ୍ତ କରି ଆଣିବାକୁ ହିଁ ଏହିଭଳି ଗୋଟିଏ ପଦକ୍ଷେପ ନିଆଯାଇଥିଲା । କାଉନ୍‌ସିଲ୍‌ଗୁଡ଼ିକରେ ଯେ ଖାଲି ଡାକ୍ତରୀ ବିଦ୍ୟା-ସଂସାରର ବାହାରେ ଥିବା ଲୋକପ୍ରତିନିଧି

ଥିଲେ ତା' ନୁହେଁ, ସେଥିରେ ଡାକ୍ତର ବି ଥିଲେ, ଡାକ୍ତରଖାନାର ସେବିକା–ପ୍ରତିନିଧି ମଧ୍ୟ ରହିଥିଲେ । ଆଗେ କେବଳ ପେଶାଦାର ଉଚ୍ଚ ବିଶେଷଜ୍ଞମାନେ, ଅର୍ଥାତ୍ ଉଚ୍ଚ ପାହିଆରେ ସମସ୍ତ କ୍ଷେତ୍ରଟିକୁ ଆପଣାର ହସ୍ତମୁଦି ମାହାଲ କରି ରଖିଥିବା ତଥାକଥିତ ଚିକିତ୍ସା ବିଜ୍ଞାନୀମାନେ ଯେଉଁଠି ଯାବତୀୟ ନିଷ୍ପତ୍ତି ନେଉଥିଲେ ଓ ଚିକିତ୍ସାରୂପୀ ଅନୁଗ୍ରହର ବିତରଣ କରୁଥିଲେ, ସେହି ସ୍ଥାନରେ ବର୍ତ୍ତମାନ ରୋଗ, ସ୍ୱାସ୍ଥ୍ୟ ଓ ତତ୍‌ସମ୍ବନ୍ଧୀୟ ଯାବତୀୟ ଅନୁଷ୍ଠାନଗୁଡ଼ିକ ସହିତ ସମ୍ପୃକ୍ତ ରହିଥିବା ସମସ୍ତେ ଏକ ପ୍ରତିନିଧିମୂଳକ ବ୍ୟବସ୍ଥା କରିଆରେ କାଉନ୍‌ସିଲମାନ ଗଠନ କରି ନିଷ୍ପତ୍ତିମାନ ଗ୍ରହଣ କଲେ । ବିଦ୍ୟାକୁ ଭୂଇଁ ଛୁଆଁଇ ରଖାଗଲା, ବିଶେଷଜ୍ଞ ବଡ଼ମାନେ ମଣିଷର ହିଁ କାମରେ ଲାଗିବାକୁ ମଣିଷମାନଙ୍କ ପାଖକୁ ଆସିଲେ ।

ମାତ୍ର ଏଇଥିରୁ ବିରୋଧ ଉପୁଜିଲା, ଅସନ୍ତୋଷ ଓ ତଜ୍ଜନିତ ପ୍ରତିରୋଧ ବଢ଼ିଲା । ପେଶାଦାର ବିଶେଷଜ୍ଞମାନେ ଆଗରୁ ଆପଣା କ୍ଷେତ୍ରର ଅନ୍ଧାରଗୁଡ଼ାକୁ ଏକୁଟିଆ ଓ ପୂରା ଭୋଗ କରି ଆସିଥିଲେ । ଅବିଶେଷଜ୍ଞ ବିବେକ ଲାଗି ସେମାନଙ୍କର ବିଶେଷଜ୍ଞ ଉଦ୍ଧତପଣିଆଗୁଡ଼ାକର କ୍ଷେତ୍ର ଭିତରେ ଆଦୌ କୌଣସି ପ୍ରବେଶ ନ ଥିଲା । ଚିଲିର ଡାକ୍ତରମାନେ ଏହି ନୂତନ ବ୍ୟବସ୍ଥାଟିର ପ୍ରଚଳନ ଫଳରେ ପ୍ରାୟ ବିଚଳିତ ଏବଂ ବିକ୍ଷୁବ୍ଧ ହୋଇ ପଡ଼ିଲେ । ଚିଲିର ମେଡିକାଲ୍ ଆସୋସିଏସନ୍ ଅର୍ଥାତ୍ କେବଳ ଡାକ୍ତରମାନଙ୍କୁ ନେଇ ଗଢ଼ା ହୋଇଥିବା ଜାତିସ୍ତରୀୟ ସଂସ୍ଥାଟି ଏଥିରେ ଅତ୍ୟନ୍ତ କ୍ଷୁବ୍‌ଧ ଓ ତେଣୁ କ୍ଷିପ୍ତ ହୋଇ ଉଠିଲା । ନୂଆ ବ୍ୟବସ୍ଥାଟି ଫଳରେ ସେମାନଙ୍କର ଦାନାଗୁଡ଼ାକୁ ଯେ ସମ୍ପୂର୍ଣ୍ଣ ଭାବରେ ମାରି ଦିଆଯାଇଥିଲା, ସେକଥା ଆଦୌ ନୁହେଁ । ପୁରୁଣା ରୀତିଗୁଡ଼ାକ ତଥାପି ପୂରା ଯାଇ ନଥିଲା ଏବଂ ନୂଆ ପରିବର୍ତ୍ତନଗୁଡ଼ାକ ସମୂହିକ ସକ୍ରିୟତାର ଏକ ସ୍ୱାଭାବିକ ଜଳବାୟୁ ରୂପେ ତଥାପି ପ୍ରତିଷ୍ଠିତ ହୋଇ ନ ଥିଲା । ଡାକ୍ତରମାନଙ୍କର ଘରୋଇ ଚିକିତ୍ସା ପ୍ରାୟ ଆଗପରି ବଳବତ୍ତର ରହିଥିଲା । ସେମାନେ ଘରେ ରୋଗୀ ଦେଖି ପଇସା କମାଉଥିଲେ, ଆପଣା ଉପାର୍ଜନର ଅଧିକତର ଭାଗଟିର ବ୍ୟବସ୍ଥା ସେମାନେ ହୁଏତ ତାହାରି ଦ୍ୱାରା ହିଁ କରୁଥିଲେ । ତେଣେ ସରକାରୀ ଅର୍ଥାତ୍ ସାଧାରଣ ଡାକ୍ତରଖାନାର ଡାକ୍ତର ହିସାବରେ ନିୟମିତ ବେତନ ମଧ୍ୟ ଆଣୁଥିଲେ । ବିଦ୍ୟା, ଆଗ୍ରହ ଓ ବୁଦ୍ଧିଗୁଡ଼ାକ ଏହିପରି ଭାବରେ ଦୁଇଟି କ୍ଷେତ୍ରରେ ବିଭକ୍ତ ହୋଇ ରହିଥିଲା; ପରସ୍ପରର ଅନୁପୂରକ ନ ହୋଇ, ସର୍ବତ୍ର ଯାହା ହୁଏ, ପରସ୍ପରର ବିରୋଧୀ ହୋଇ ରହିଥିଲା । ଘର-ଉପାର୍ଜନର ଆକର୍ଷଣଟା ସର୍ବଦା ଅଧିକ ହୋଇ ରହିଥିବାରୁ ଡାକ୍ତରମାନେ ଜାତୀୟ ସ୍ୱାସ୍ଥ୍ୟ ସେବା

ଭିତରେ ଆପଣାର କର୍ତ୍ତବ୍ୟରେ ଚିରାଚରିତ ଭାବରେ ହେଳା କରି ଆସୁଥିଲେ । ସରକାର ଡାକ୍ତରଖାନାର ରୋଗୀମାନଙ୍କ ପାଇଁ, ଯେଉଁମାନଙ୍କର ଚିକିତ୍ସା ଲାଗି ଡିଲିର ସାଧାରଣ କୋଷରୁ ସେମାନଙ୍କୁ ବେତନ ମିଳୁଥିଲା ଓ ଅସଲ ସ୍ୱୀକୃତିଟି ମିଳୁଥିଲା, ସେମାନଙ୍କ ସକାଶେ ଯଥାସମ୍ଭବ କମ୍ ସମୟ ଦେଇ ସେମାନେ ଘରେ ଆପଣାର ବ୍ୟକ୍ତିଗତ ଉପାର୍ଜନ ଖନ୍ଦାଗୁଡ଼ାକୁ ଅଧିକ ପ୍ରଶସ୍ତ କରିବାରେ ହିଁ ଅଧିକ ସମୟ ଦେଉଥିଲେ, ଶକ୍ତି ବି ଦେଉଥିଲେ । ଘରେ ଅଧିକରୁ ଅଧିକ ରୋଗୀ ଦେଖିବାକୁ ହିଁ ଲକ୍ଷ୍ମୀମନ୍ତ ହେବାର ଏକ ଅପରିହାର୍ଯ୍ୟ ପନ୍ଥା ବୋଲି ଗ୍ରହଣ କରି ନେଇଥିଲେ ।

ତଥାପି, ଅଯେଣ୍ଡେ ସରକାରଙ୍କର ପ୍ରଚେଷ୍ଟା ଫଳରେ ଚିକିତ୍ସା-କ୍ଷେତ୍ରର ବିକେନ୍ଦ୍ରୀକରଣ ଓ ଲୋକତନ୍ତ୍ରୀକରଣ ଦିଗରେ ଯେଉଁ ପଦକ୍ଷେପମାନ ନିଆଗଲା, ଚିକିତ୍ସକମାନଙ୍କର ଶିବିରଟି ସେଥିରେ କ୍ରମେ ଭାରି ପ୍ରମାଦ ଗଣିଲା । ରୋଗର କ୍ଷେତ୍ରଟିକୁ ସମ୍ପୂର୍ଣ୍ଣ ଭାବରେ ବିଶେଷଜ୍ଞମାନଙ୍କର ଏକ କ୍ଷେତ୍ର ବୋଲି ବାଡ଼ ବସାଇ ଦେଇ ସେମାନେ ଏପର୍ଯ୍ୟନ୍ତ ଯେଉଁ ପ୍ରତିଷ୍ଠାଗୁଡ଼ାକୁ ଏକୁଟିଆ ଭୋଗ କରି ଆସିଥିଲେ, ବିଶେଷ ବିଦ୍ୟାକୁ ସେମାନେ ଯେପରି ଏକ ଚମତ୍କାର ନ୍ୟସ୍ତସ୍ୱାର୍ଥରେ ପରିଣତ କରି ରଖିଥିଲେ, ଏଣିକି ସେଗୁଡ଼ାକ ଆଦୌ ନିରାପଦ ହୋଇ ରହିପାରିବ ବୋଲି ସେମାନଙ୍କର ପ୍ରତ୍ୟୟ ହେଲା ନାହିଁ । ତେଣେ ସରକାରଙ୍କ ଦ୍ୱାରା ସମର୍ଥିତ ନୂତନ ବ୍ୟବସ୍ଥାଟି ଦ୍ୱାରା ମେଡ଼ିକାଲ କଲେଜର ପାଠ ଭିତରେ ମଧ କେତେ ନୂଆ କଥା ଆସି ପଶିଲା । ମେଡ଼ିକାଲ କଲେଜମାନଙ୍କରେ ସମାଜ-ବିଜ୍ଞାନ ପଢ଼ା ହେବାର ବ୍ୟବସ୍ଥା ହେଲା । ବାବୁମାନଙ୍କର ରାଜତ୍ୱରେ ଯାହା ହୋଇଥାଏ, ବିଦ୍ୟାକୁ ଯଥାସମ୍ଭବ ଅଧିକ ଅର୍ଥକାମୀ ଏବଂ ଜୀବନଦ୍ୱେଷୀ ଅର୍ଥାତ୍ ମନୁଷ୍ୟ-ବିମୁଖ କରି ରଖାଯାଇଥିଲା । ମଣିଷଠାରୁ, ଏପରିକି ଆପଣା ଭିତରେ ରହିଥିବା ମଣିଷଟିଠାରୁ ଯଥାସମ୍ଭବ ଦୂରଛଡ଼ା ହୋଇ ରହିଲେ ଯେ ବିଦ୍ୟାବୃକ୍ଷରେ ଅଧିକ ଫଳ ସମ୍ଭବ ହୁଏ ଓ ଅଧିକ ସିଦ୍ଧି ମିଳେ, ଆଗରୁ ଏହି ବିଶ୍ୱାସଟି ଅତ୍ୟନ୍ତ ଦୃଢ଼ ହୋଇ ରହିଥିଲା । ଏଥର ସେହି ଅଲକ୍ଷଣା ଦୃଢ଼ତାଗୁଡ଼ାକୁ ଭାଙ୍ଗି ବିଦ୍ୟାକୁ ଓ ବିଦ୍ୟାର୍ଜନକାରୀମାନଙ୍କୁ ମଣିଷର ଅଧିକ ନିକଟକୁ ଆଣିବାର ଏକ ପ୍ରୟାସ କରାଗଲା । ସମାଜକୁ ହିଁ ଯାବତୀୟ ବିଦ୍ୟା ଓ ବିଜ୍ଞାନର କ୍ଷେତ୍ର ରୂପେ ସ୍ୱୀକାର କରି ତାହାକୁ ଯଥେଷ୍ଟ ଅଧିକ ପରିମାଣରେ ବୁଝିବା ଲାଗି ମେଡ଼ିକାଲ କଲେଜ ମାନଙ୍କରେ ସମାଜ-ବିଜ୍ଞାନକୁ ପାଠ୍ୟକ୍ରମ କରି ରଖାଗଲା । ଏହା ଫଳରେ, ଯେଉଁ ତରୁଣମାନେ ନୂଆ ଡାକ୍ତର ହୋଇ ବାହାରିବା ଲାଗି ମେଡ଼ିକାଲ କଲେଜମାନଙ୍କୁ ଆସିଲେ, ସେମାନଙ୍କ ମଧ୍ୟରେ ଏକ ନୂତନ

ସମାଜ-ସଚେତନତା ଏବଂ ସମଗ୍ର ଚିକିତ୍ସା-କ୍ଷେତ୍ରଟି ପ୍ରତି ଏକ ନୂତନ ସମୀକ୍ଷାମୂଳକ ଦୃଷ୍ଟି କ୍ରମଶଃ ଜନ୍ମଗ୍ରହଣ କରିବାକୁ ଲାଗିଲା । ବିଦ୍ୟା, ପ୍ରତିଷ୍ଠା, ସମ୍ମାନ ଓ ସୁଖ୍ୟାତି କହିଲେ ସେମାନେ ସତେ ଯେପରି ଅନ୍ୟ-ପ୍ରକାରେ ବୁଝିବାକୁ ଆରମ୍ଭ କଲେ । ପୁରୁଣାମାନେ ଅର୍ଥାତ୍ ପୂର୍ବପ୍ରତିଷ୍ଠିତମାନେ ସତେଅବା ଭେଳା ବୁଡ଼ିଗଲା ଭଳି ଅନୁଭବ କଲେ । ସେମାନଙ୍କ ଜଳାଶୟଟିର ଅପ୍ରତିବାଦିତ ଅବଲମ୍ବନ ଗୁଡ଼ାକ ଏଣିକି ସତେଅବା ଅକାମୀ ହୋଇଯିବ ଓ ମୁଖାଗୁଡ଼ାକ ମୁଖା ବୋଲି ଧରା ପଡ଼ିଯିବ ବୋଲି ସେମାନେ ପ୍ରାୟ ଏକ ଜୀବନତ୍ରାସ ଅନୁଭବ କରିବାକୁ ଲାଗିଲେ ଏବଂ ଏହାହିଁ ସେମାନଙ୍କର ବିଷଦାନ୍ତ ଏବଂ ବାଘନଖ ଗୁଡ଼ାକୁ ବାହାର କରି ଆଣିବା ଲାଗି ଯଥେଷ୍ଟ ହେଲା ।

ଏହି ସବୁଯାକ ନୂତନ ପ୍ରବର୍ତ୍ତନ ଓ ଓଲଟପାଲଟ ଗୁଡ଼ାକ ସକାଶେ ସେମାନେ ବ୍ୟକ୍ତିଗତ ଭାବରେ ଶ୍ରୀଯୁକ୍ତ ଅୟେଣ୍ଡେଙ୍କୁ ହିଁ ଦାୟୀ କରିବାକୁ ଲାଗିଲେ । ନିଜର ସମସ୍ୟା ଅର୍ଥାତ୍ ଅସୁବିଧାଗୁଡ଼ାକୁ ପ୍ରକ୍ଷେପିତ କରି ସେମାନେ ଆହୁରି ପାଦେ ଆଗକୁ ଯାଇ ନୂତନ ଚିଲିର ଯାବତୀୟ ସମସ୍ୟା ଲାଗି କେବଳ ତାହାଙ୍କୁ ହିଁ ଦାୟୀ କଲେ । ୧୯୭୨ ମସିହା ଅକ୍ଟୋବର ମାସରେ ରାଜନୀତିକ ବିରୋଧୀମାନଙ୍କ ତରଫରୁ ସରକାରଙ୍କ ବିରୁଦ୍ଧରେ ଯେଉଁ ଧର୍ମଘଟ ହେଲା ସେଥିରେ ଚିଲିର ଡ଼ାକ୍ତରମାନେ ବି ଯୋଗ ଦେଇଥିଲେ । ଧର୍ମଘଟରେ ଯୋଗଦେଇ ସେମାନେ ଡ଼ାକ୍ତରଖାନାରେ ଥିବା ରୋଗୀମାନଙ୍କୁ ଦେଖିବା ବନ୍ଦ କରିଦେଲେ । କେବଳ ଘରେ ସ୍ୱତନ୍ତ୍ର ପାରିଶ୍ରମିକ ନେଇ ଘରୋଇ ରୋଗୀମାନଙ୍କୁ ଦେଖିଲେ । ଉଲ୍ଲେଖ କରି ରଖିବା ଉଚିତ ଯେ ଡ଼ାକ୍ତରମାନଙ୍କ ବ୍ୟତୀତ ଡ଼ାକ୍ତରଖାନାର ଅନ୍ୟ ବେତନଭୋଗୀ କର୍ମଚାରୀମାନେ ଏହି ଧର୍ମଘଟରେ ଯୋଗଦେଇ ନଥିଲେ । ସ୍ଥାନୀୟ ସ୍ୱାସ୍ଥ୍ୟ କାଉନ୍‌ସିଲ୍‌ର ସଭ୍ୟମାନେ ଏହିମାନଙ୍କ ସହଯୋଗରେ ଓ ଧର୍ମଘଟରେ ଯୋଗ ଦେଇ ନଥିବା ଅଳ୍ପସଂଖ୍ୟକ ଡ଼ାକ୍ତରମାନଙ୍କ ସାହାଯ୍ୟରେ ଡ଼ାକ୍ତରଖାନା ଗୁଡ଼ିକୁ ଯେକୌଣସି ପ୍ରକାରେ ଚାଲୁ ରଖିବାକୁ ଚେଷ୍ଟା କରିଥିଲେ । ଶ୍ରୀଯୁକ୍ତ ଆୟେଣ୍ଡେଙ୍କୁ ଆସନଚ୍ୟୁତ ଓ ନିହତ କରି ୧୯୭୩ ମସିହା ସେପ୍ଟେମ୍ବର ମାସରେ ବିଦେଶୀ ବଳର ସମର୍ଥନ ଓ ପ୍ରରୋଚନାରେ ଚିଲିରେ ଯେଉଁ ଆକସ୍ମିକ ଶାସନଗତ ପରିବର୍ତ୍ତନଟି ଘଟିଲା, ତାହାର ଅବ୍ୟବହିତ ପୂର୍ବର ସପ୍ତାହ ଗୁଡ଼ିକରେ ଚିଲି ମେଡ଼ିକାଲ ଆସୋସିଏସନ୍ ତରଫରୁ ଏକ ବ୍ୟାପକତର ଧର୍ମଘଟର ସଂଗଠନ କରାଯାଇଥିଲା । ଡ଼ାକ୍ତରମାନେ ସଂଗଠିତ ଭାବରେ ଜାତୀୟ ବ୍ୟବସ୍ଥାକୁ ଗୋଟାସୁଦ୍ଧା ଅଚଳ କରି ଦେଇଥିଲେ । ଆୟେଣ୍ଡେଙ୍କ ପରେ ଚିଲିରେ ଯେଉଁ ସାମରିକ ଏକାଧିପତ୍ୟର ପ୍ରତିଷ୍ଠା ହେଲା, ତାହାରି ମୂଳଦୁଆଟି ତିଆରି କରି

ଆଣିବା ଦିଗରେ ଏପରି ଭାବରେ ଚିଲିର ଡ଼ାକ୍ତରମାନଙ୍କର ବି ଏକ ବଳିଷ୍ଠ ଅବଦାନ ରହିଥିଲା । ଚିକିତ୍ସା-ବ୍ୟବସ୍ଥାର ବିକେନ୍ଦ୍ରୀକରଣ ବିରୋଧରେ ସେମାନଙ୍କ ଭିତରେ ଯେଉଁ ଅସନ୍ତୋଷ ଗତିଶୀଳ ହୋଇ ରହିଥିଲା, ଆୟେଣ୍ଡେଙ୍କୁ ଶାସନଚ୍ୟୁତ ଏବଂ ନିହତ କରାଇ ତାହାର ପ୍ରତିଶୋଧ ନିଆଗଲା ।

ଆୟେଣ୍ଡେଙ୍କୁ ହତ୍ୟା କରାଗଲା । ଚିଲିରେ ସାମରିକ ଏକାଧିପତ୍ୟର କଂସ-ଶାସନ ଆପଣାକୁ ପ୍ରତିଷ୍ଠିତ କରି ଆଣିଲା । ଯେଉଁମାନେ ଏକଦା କିଉବାରେ ବିଫଳ ହୋଇଥିଲେ, ସେମାନେ ଚିଲିରେ ସଫଳ ହେଲେ, ସମଗ୍ର ଲାଟିନ୍ ଆମେରିକାକୁ ଆପଣା ଲାଗି ଓ ଆପଣାର ପଣ୍ୟବାଣିଜ୍ୟ ଲାଗି ନିଷ୍କଣ୍ଟକ କରି ରଖିଲେ, ଅନ୍ଧକାର ଲାଗି ନିଷ୍କଣ୍ଟକ କରି ରଖିଲେ । ଗାଦି ଉପରେ ବସିବା ପରେ ଚିଲିର ସାମରିକ ଶାସନ ଦେଶକୁ କଣ୍ଟକ-ନିର୍ମୂଳ କରି ରଖିବାର ଯେଉଁ ଅଭିଯାନ ଆରମ୍ଭ କଲା, ସେଥିରେ ଡାକ୍ତରଖାନାଗୁଡ଼ାକୁ ମଧ ଧକ୍‌କା ସହିବାକୁ ପଡ଼ିଲା । ସରକାରୀ ଖାତାରେ ଡ଼ାକ୍ତରମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରି ରଖାଗଲା । ଯେଉଁମାନେ ସମ୍ପୂର୍ଣ୍ଣ ବିଶ୍ୱସ୍ତ, ଯେଉଁମାନଙ୍କୁ ତଥାପି ସନ୍ଦେହ କରାଯାଇପାରେ ଓ ଯେଉଁମାନେ ରାଜନୀତିକ ଦୃଷ୍ଟିରୁ ବିପଜ୍ଜନକ, ଅର୍ଥାତ୍ ଯେଉଁମାନଙ୍କୁ ଆଉ ମୋଟେ ସଂଶୋଧନ କରାଯାଇ ପାରିବ ନାହିଁ । ଚିଲି ମେଡ଼ିକାଲ ଆସୋସିଏସନ୍‌ର ମହାସଚିବ ସ୍ୱୟଂ ସ୍ୱୀକାର କରିଛନ୍ତି ଯେ ସାମରିକ ସରକାରଙ୍କୁ ସମର୍ଥନ କରୁଥିବା ଓ ସଂଖ୍ୟାଗରିଷ୍ଠ ହୋଇ ରହିଥିବା ଡାକ୍ତରମାନେ ଆୟେଣ୍ଡେ ସରକାରଙ୍କ ପ୍ରତି ସହାନୁଭୂତି ପୋଷଣ କରିଥିବା କୁଳକଳଙ୍କ ଅନ୍ୟ ଡ଼ାକ୍ତରମାନଙ୍କୁ ଚିହ୍ନାଇ ଦେବାରେ ସତ୍ତାଧାରୀ ସୈନ୍ୟକର୍ତ୍ତା ମାନଙ୍କୁ ସହାୟତା ମଧ କରିଥିଲେ । ୧୯୭୩ର ଡାକ୍ତର ଧର୍ମଘଟରେ ଯେଉଁ ଡ଼ାକ୍ତରମାନେ ଯୋଗ ଦେଇ ନଥିଲେ, ସେମାନେ ପ୍ରଧାନତଃ ସେହିମାନଙ୍କୁ ହିଁ ଅବାଞ୍ଛିତ ବୋଲି ଚିହ୍ନାଇ ଦେଇଥିଲେ । ତାହାରି ଫଳରେ କେତେ ଡାକ୍ତର ବନ୍ଦୀଶାଳାକୁ ଗଲେ, ଆହୁରି କେତେ ହାଣ ଖାଇଲେ । ଏବଂ ଆୟେଣ୍ଡେଙ୍କର ନେତୃତ୍ୱରେ ତାଙ୍କ ସମୟରେ ଚିଲିରେ ଯେଉଁ ନୂତନ ସ୍ୱାସ୍ଥ୍ୟ-ବ୍ୟବସ୍ଥାର ପ୍ରବର୍ତ୍ତନ କରାଯାଇଥିଲା, ସାମରିକ ଶାସନ ଅମଳରେ ତାର ବି କ'ଣ ହେଲା ? ସେଗୁଡ଼ାକର ଆଉ କୌଣସି ଆବଶ୍ୟକତା ଅନୁଭବ କରାଗଲା ନାହିଁ । ବିକେନ୍ଦ୍ରୀକରଣକୁ ପୁନର୍ବାର ଏକ କେନ୍ଦ୍ରୀକରଣରେ ପରିଣତ କରି ଦିଆଗଲା । ସ୍ୱାସ୍ଥ୍ୟ କାଉନ୍‌ସିଲ୍ ଗୁଡ଼ାକୁ ଭାଙ୍ଗି ଦିଆଗଲା । ଚିଲିର ମେଡ଼ିକାଲ ଆସୋସିଏସନ୍ ହାତକୁ ଅର୍ଥାତ୍ ବିଦ୍ୟାଭୂଷଣ ଡ଼ାକ୍ତରମାନଙ୍କ ହାତକୁ ହିଁ ଚିକିତ୍ସାଳୟଗୁଡ଼ିକର ବ୍ୟବସ୍ଥାକୁ ସମର୍ପି ଦିଆଗଲା । ବ୍ୟବସ୍ଥାଟିକୁ ଏକ ବିପଣିରେ ପରିଣତ କରି ରଖିବା

ଲାଗି ସେମାନଙ୍କୁ ପରିପୂର୍ଣ୍ଣ ସ୍ୱାଧୀନତା ଦିଆଗଲା । ମେଡ଼ିକାଲ ଆସୋସିଏସନ୍ ଆନୁଷ୍ଠାନିକ ଭାବରେ ସାମରିକ ଶାସନ ପରିଷଦକୁ ହିଁ ଯଥାର୍ଥ ସର୍ବୋପଯୁକ୍ତ ଶାସକ ବୋଲି ଘୋଷଣା କଲା । ଆୟେଣ୍ଡେ ସରକାର ପିଲାମାନଙ୍କୁ ଦୁଧ ବାଣ୍ଟିବା ପ୍ରଭୃତି ଯେଉଁ ପ୍ରତିକାର-ବ୍ୟବସ୍ଥାମାନ କରିଥିଲେ, ସେଗୁଡ଼ାକୁ ବନ୍ଦ କରି ଦିଆଗଲା । ସାମରିକ ସରକାର ଆପଣାର ସବୁଯାକ ଅନ୍ତଃଦୃଷ୍ଟି ପ୍ରୟୋଗ କରି ଓ ମେଡ଼ିକାଲ ଆସୋସିଏସନର ସୁମନ୍ତବ୍ୟଗୁଡ଼ିକୁ ମାନି ନେଇ ଚିଲିର ମେଡ଼ିକାଲ କଲେଜଗୁଡ଼ିକରୁ ପାଠ୍ୟକ୍ରମରେ ନୂଆ ହୋଇ ଭର୍ତ୍ତି କରାଯାଇଥିବା ପ୍ରତିକାରମୂଳକ ଚିକିତ୍ସାଶାସ୍ତ୍ର, ଲୋକସ୍ୱାସ୍ଥ୍ୟ ଏବଂ ସମାଜବିଜ୍ଞାନ ପ୍ରଭୃତି ବିଷୟକୁ ପୁନର୍ବାର ଉଠାଇ ଦେଲା । ବିଶେଷଜ୍ଞମାନଙ୍କର ଚେତନାଗୁଡ଼ାକୁ ପୁନର୍ବାର ନିଷ୍ପ୍ରଦୀପ ଓ ତେଣୁ ପ୍ରମାଦମୁକ୍ତ କରି ରଖାଗଲା । ଏହିସବୁ ବିଷୟଗୁଡ଼ିକୁ ପଢ଼ାଉଥିବା ଅଧ୍ୟାପକମାନଙ୍କୁ କଲେଜ ମଧ୍ୟରୁ ଅନ୍ତର କରି ଦିଆଗଲା । ଜାତୀୟ ସ୍ୱାସ୍ଥ୍ୟ-ବ୍ୟବସ୍ଥା କେବଳ କାଗଜ ଉପରେ ହିଁ ଏକ ବ୍ୟବସ୍ଥା ହୋଇ ରହିଲା । ସ୍ୱାସ୍ଥ୍ୟବ୍ୟବସ୍ଥା କହିଲେ ଏଣିକି ଘରୋଇ ଚିକିତ୍ସା ଓ ଘରୋଇ ଉପାର୍ଜନର ସେହି ପୁରୁଣା ବ୍ୟବସ୍ଥାଟାକୁ ବୁଝାଇଲା । ଅବସ୍ଥାପନ୍ନ ରୋଗୀମାନଙ୍କ ଦ୍ୱାରା ବିଦ୍ୱାନ୍‌ମାନଙ୍କୁ ଅଧିକ ଅବସ୍ଥାପନ୍ନ ଅର୍ଥାତ୍ ଧନବନ୍ତ ହେବା ଲାଗି ସାହାଯ୍ୟ କରିବାକୁ ହିଁ ବୁଝାଇଲା ।

ଚିଲିରେ ଏହିସବୁ ଅଭିନୟ ପଛରେ ଯେଉଁସବୁ ପ୍ରବୃତ୍ତିଗୁଡ଼ାକ ଆପଣାକୁ ସ୍ପଷ୍ଟ ଭାବରେ ଧରା ପକାଇ ଦେଲେ, ତାହା ଆମକୁ ପ୍ରକୃତରେ ଅନେକ ଶିକ୍ଷା ଦେଇପାରିବ, ଅନେକ ପ୍ରଚ୍ଛନ୍ନ ଗତିପଥ ଓ ମତଲବ ବିଷୟରେ ଅନ୍ତଃଦୃଷ୍ଟି ଯୋଗାଇ ଦେଇ ପାରିବ । ସର୍ବପ୍ରଥମ ଶିକ୍ଷାଟି ହେଉଛି ଯେ, ଯେଉଁମାନଙ୍କ ହାତରେ ଅର୍ଥନୈତିକ କ୍ଷମତା ରହିଛି, ଅର୍ଥାତ୍ ଅର୍ଥ ରହିଛି, ଯେଉଁମାନେ ରାଜନୀତିକ୍ଷେତ୍ରରେ ମଧ୍ୟ ଆଧିପତ୍ୟ ବିସ୍ତାର କରି ରହିଛନ୍ତି ଓ ସର୍ବୋପରି ସମାଜର ଧନ୍ଦା ଓ ସଂସ୍ଥାନଗୁଡ଼ିକର କ୍ଷେତ୍ରରେ ଯେଉଁମାନେ ଅଧିକ ଶକ୍ତିଶାଳୀ ପାହାଚ ଗୁଡ଼ିକ ଉପରେ ରହିଛନ୍ତି, ସେମାନେ କଦାପି କୌଣସି ବିକେନ୍ଦ୍ରୀକରଣ ଲାଗି ବାଟ ଛାଡ଼ିଦେବାକୁ ଚାହିଁବେ ନାହିଁ, ଅର୍ଥାତ୍ ଅର୍ଥ ଏବଂ କ୍ଷମତାରେ ଯେକୌଣସି ପୁନର୍ବିତରଣର କଳ୍ପନାକୁ ସେମାନେ ଶେଷ ପର୍ଯ୍ୟନ୍ତ ବିରୋଧ କରିବାରେ ଲାଗିଥିବେ । କୌଣସି ସମାଜରେ ଯେଉଁମାନେ ବରିଷ୍ଠ ବର୍ଗ ଭାବରେ ରହିଛନ୍ତି, ଯୋଗ୍ୟତର ବର୍ଗ ରୂପେ ଗଣ୍ୟ ହେଉଛନ୍ତି, ସେମାନଙ୍କର ଏହି ବରିଷ୍ଠ ଓ ବିଶେଷାଧିକାରଯୁକ୍ତ ସ୍ଥିତିଗୁଡ଼ିକ ଆକ୍ରାନ୍ତ ଏବଂ ଆପଦଗ୍ରସ୍ତ ନ ହେଉଥିବା ପର୍ଯ୍ୟନ୍ତ ହିଁ ସେମାନେ ଆଇନସଙ୍ଗତ ଭାବରେ ଦେଶରେ କୌଣସି ପରିବର୍ତ୍ତନ ଘଟାଇବାରେ ହୁଏତ

ସେତେବେଶୀ ଆପତ୍ତି କରିବେ ନାହିଁ । ମାତ୍ର ସେହି ସ୍ଥିତିଗୁଡ଼ିକରେ ଏତେ ଟିକିଏ ଆଞ୍ଚ ଆସିବାର ଆଶଙ୍କା ରହିଥିଲେ ଯେତେ ଆଇନସଙ୍ଗତ ଭାବରେ ହେଲେ ମଧ୍ୟ ସେମାନେ ସେଗୁଡ଼ାକୁ କଦାପି କରାଇ ଦେବେ ନାହିଁ । ଚିଲିର ଅଭିଜ୍ଞତାଟି ଆମକୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଦର୍ଶାଇ ଦେଇ ଯାଉଛି ଯେ, କୌଣସି ଦେଶର ଅଥବା ସମାଜର ସ୍ୱାସ୍ଥ୍ୟ ଏବଂ ଚିକିତ୍ସା-ବ୍ୟବସ୍ଥା ସେହି ଦେଶର ଆର୍ଥିକ ଏବଂ ରାଜନୀତିକ ସ୍ୱାର୍ଥଗୁଡ଼ିକର ବ୍ୟବସ୍ଥାଟି ସହିତ ପ୍ରାୟ ଅଭିନ୍ନ ଭାବରେ ହିଁ ଗୁନ୍ଥାହୋଇ ରହିଛି । ଏକ ସମାଜରେ ରହିଥିବା ସୋପାନ ବ୍ୟବସ୍ଥାଟି ଚିକିତ୍ସା ଅର୍ଥାତ୍ ଚିକିତ୍ସା-ବିଜ୍ଞାନର ପ୍ରୟୋଗକୁ ମଧ୍ୟ ପ୍ରଭାବିତ କରି ରଖିଛି, ଆମ ବିଜ୍ଞାନଗୁଡ଼ାକ ଆମ ସାମାଜିକ ଅନ୍ୟାୟଗୁଡ଼ାକର ସ୍ୱୀକୃତ ଗମ୍ଭୀରିଗୁଡ଼ାକରେ ପ୍ରାୟ ବନ୍ଦୀ ହୋଇ ରହିଛନ୍ତି । ଚିଲିରେ ସେହି ଦେଶର ସାମାଜିକ ପରିପ୍ରେକ୍ଷୀ ଉପରେ ଚିକିତ୍ସା-ବିଜ୍ଞାନର ଅବସ୍ଥା ଯାହା ହୋଇଛି, ଏବେ ତୃତୀୟ ପୃଥିବୀ ବୋଲି କୁହାଯାଉଥିବା ଅଧିକାଂଶ ବିକାଶଶୀଳ ଦେଶରେ ମଧ୍ୟ ଅବସ୍ଥା ଅଳ୍ପ-ବହୁତ ପ୍ରାୟ ସେହିପରି ହୋଇଛି । ସବୁଠାରେ ହିଁ ଡ଼ାକ୍ତରମାନେ ଜଳ-ସମତଳଟି ଉପରେ ଶିଉଳି ପରି ଭାସିବାରେ ଲାଗିଛନ୍ତି । ସମାଜର ଏକ ଅଂଶ ହୋଇଥିଲେ ମଧ୍ୟ ସେମାନେ ସତେଅବା ସମାଜର ବାହାରେ ରହିଛନ୍ତି । ତଥାକଥିତ ଘରୋଇ ଚିକିତ୍ସାର ସାଆନ୍ତିଆ ଫନ୍ଦିଗୁଡ଼ାକ ଲାଗି ରହିଥିବା ପର୍ଯ୍ୟନ୍ତ ଦେଶର ସ୍ୱାସ୍ଥ୍ୟ ତଥା ଚିକିତ୍ସା ବ୍ୟବସ୍ଥାରେ ଯେ ପ୍ରକୃତରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ କରାଯାଇ ପାରିବ ନାହିଁ, ଚିଲିରେ ଆୟେଣ୍ଡେ ସରକାର ସେହି କଥାଟିକୁ ହୃଦୟଙ୍ଗମ କରିଥିଲେ ଏବଂ ଏକ ବିକଳ୍ପର ସମ୍ଭାବନା ଲାଗି ଅନ୍ୱେଷଣ କରି ଜାତୀୟ ସ୍ତରରେ କେତେକ ଦୂର ଅଗ୍ରସର ହୋଇଥିଲେ । ଆୟେଣ୍ଡେଙ୍କର ଶାସନ କାଳରେ ମଧ୍ୟ ଘରୋଇ ଚିକିତ୍ସା ଏବଂ ଜାତୀୟ ସ୍ୱାସ୍ଥ୍ୟ-ସେବାର ତତ୍ତ୍ୱାବଧାନରେ ଚାଲିଥିବା ଚିକିତ୍ସା ପରସ୍ପରର ପାର୍ଶ୍ୱବର୍ତ୍ତୀ ହୋଇ ରହିଥିଲା । ହିସାବ ରଖୁଥିବା ସମୀକ୍ଷକମାନେ କହିଛନ୍ତି ଯେ ସେତେବେଳେ ମଧ୍ୟ ଦେଶବାସୀ ସ୍ୱାସ୍ଥ୍ୟ ବାବଦରେ ମୋଟ ଯେତେ ଖରଚ କରୁଥିଲେ, ତାହାର ଶତକଡ଼ା ଚାଳିଶ ଭାଗ ଜାତୀୟ ସ୍ୱାସ୍ଥ୍ୟ-ସଂସ୍ଥା ହାତକୁ ଆସୁଥିଲା ଓ ସେଇଥିରେ ହିଁ ତାହାକୁ ଜାତୀୟ ଜନସଂଖ୍ୟାର ପ୍ରାୟ ଶତକଡ଼ା ଅଶୀଭାଗ ଲୋକଙ୍କର ସ୍ୱାସ୍ଥ୍ୟ-ବ୍ୟବସ୍ଥା କରିବାକୁ ପଡୁଥିଲା; ଏବଂ ଅନ୍ୟପକ୍ଷରେ, ସେହି ଖର୍ଚ୍ଚର ଶତକଡ଼ା ମୋଟ ଷାଠିଏଭାଗ ଘରୋଇ ଚିକିତ୍ସା କରୁଥିବା ଡ଼ାକ୍ତରମାନଙ୍କର ପେଟୀ ଭିତରକୁ ଯାଉଥିଲା ଏବଂ ତଦ୍ୱାରା ଦେଶର ମୋଟେ ଶତକଡ଼ା କୋଡ଼ିଏ ଭାଗ ଲୋକ ଉପକୃତ ହେଉଥିଲେ । ଡାକ୍ତର ଓ ଡ଼ାକ୍ତରୀବିଭାଗର ବିଶେଷଜ୍ଞ ତଥା ଅନ୍ୟ କର୍ମଚାରୀମାନେ

ମଧ୍ୟ-ସେହିପରି ବଡ଼ ଅସମ ଭାବରେ ବାଣ୍ଟି ହୋଇ ରହୁଥିଲେ । ସମସ୍ତେ ସହରରେ, ଅର୍ଥାତ୍ ସଦର ମୁକାମରେ ପ୍ରାୟ ଲେଶି ହୋଇ ରହିବାକୁ ଇଚ୍ଛା କରୁଥିଲେ । ଆୟେଣ୍ଡେ ସରକାରଙ୍କର ଯାବତୀୟ ପ୍ରଚେଷ୍ଟା ସତ୍ତ୍ୱେ ସମଗ୍ର ଚିଲିର ଶତକଡ଼ା ଷାଠିଏ ଭାଗ ଡାକ୍ତର ସାଣ୍ଟିଆଗୋ ସହରରେ ହିଁ ଗହଳ ଲଗାଇ ରହିଥିଲେ ଏବଂ ସେଠାରେ ମଧ୍ୟ ଅଳ୍ପ ଆୟ କରୁଥିବା ଲୋକମାନଙ୍କର ବସତି ଅଞ୍ଚଳରେ ଯେତେ ଡାକ୍ତର ରହୁଥିଲେ, ଅପେକ୍ଷାକୃତ ଅଧିକ ଧନୀ ଅଞ୍ଚଳ ଗୁଡ଼ିକରେ ତା'ର ଛଅଗୁଣ ଅଧିକ ଡାକ୍ତର ରହିଥିଲେ ।

ନିଷ୍କର୍ଷ ହେଉଛି ଯେ, ଡାକ୍ତରମାନଙ୍କର ସଂଖ୍ୟା ବଢ଼ାଇଲେ, ଡାକ୍ତରଖାନା ଗୁଡ଼ାକର ସଂଖ୍ୟା ଓ କଳେବରରେ ବୃଦ୍ଧି ଘଟାଇଲେ, ଏହି କ୍ଷେତ୍ରରେ ବିଶେଷଜ୍ଞମାନଙ୍କୁ ଆଧୁନିକ ବିଜ୍ଞାନ ଏବଂ ଅତ୍ୟାଧୁନିକ ବିଜ୍ଞାନ ଏବଂ ଅତ୍ୟାଧୁନିକ ବିଦେଶମାନଙ୍କରେ ବୁଲାଇ ଆଣିଲେ ମଧ୍ୟ, ଯେପର୍ଯ୍ୟନ୍ତ ସମାଜ-ବ୍ୟବସ୍ଥାରେ ଏକ ଅନୁରୂପ ମୌଳିକ ପରିବର୍ତ୍ତନ ନ ଘଟିଛି, ସେପର୍ଯ୍ୟନ୍ତ ସେହି ଡ଼ାକ୍ତରମାନଙ୍କ ଦ୍ୱାରା ଏବଂ ସେଗୁଡ଼ାକୁ ଲୋଡୁଥିବା ମଣିଷମାନଙ୍କର ଖୁବ୍ ବେଶୀ ଉପକାର ହୋଇ ପାରିବ ନାହିଁ । ଆମର ସର୍ବମୂଳ ମୂଲ୍ୟବୋଧଗୁଡ଼ିକରେ ପରିବର୍ତ୍ତନ ନ ଘଟିବା ପର୍ଯ୍ୟନ୍ତ, ବିଜ୍ଞାନର ଭୂରି ଭୂରି କୌଶଳଗୁଡ଼ାକ ଆମ ପାଖରେ ମହଜୁଦ ହୋଇ ରହିଥିଲେ ମଧ୍ୟ ଆମେ ତଥାପି ତଦ୍ୱାରା କଦାପି ସବୁ ମଣିଷଙ୍କୁ ଉପକୃତ କରି ପାରିବା ନାହିଁ । ତଥାକଥିତ ଆଲୋକଦ୍ୱାରା ଆମ ଅନ୍ଧାରଗୁଡ଼ାକୁ କଦାପି ଦୂର କରିପାରିବା ନାହିଁ । ଆମର ପ୍ରବର୍ତ୍ତିତ ଆଲୋକଗୁଡ଼ାକ ସେପର୍ଯ୍ୟନ୍ତ ଆମକୁ କେବଳ ନୃଶଂସ କରି ରଖିଥିବ, ଆମକୁ ଜଳକା କରି ରଖିଥିବ ଏବଂ ଅଧିକତର କ୍ଷେତ୍ରରେ ବିତ୍ତ ବଢ଼ିବାଟାକୁ ହିଁ, ଅର୍ଥାତ୍ ଅନ୍ୟ ଅନେକଙ୍କ ତୁଳନାରେ ନିଜେ ଅଧିକ ବିତ୍ତଶାଳୀ ହୋଇ ଦିଶିବାକୁ ହିଁ ଆମେ ଜୀବନ-ବିଦ୍ୟାରେ ଯଶସ୍ୱୀ ହେବା ବୋଲି ବୁଝିବାରେ ଲାଗିଥିବା । ଆମ ଆଗ୍ରହଗୁଡ଼ାକ ମଣିଷକୁ ଛାଡ଼ି ଆହୁରି କେଉଁସବୁ କାମୁକତା ଏବଂ ଲୋଲୁପତା ଭିତରେ ବୁଲିବାରେ ଲାଗିଥିବେ । ଆମ ଆଦର୍ଶଗୁଡ଼ାକ ନାନା ସାଲିଶ୍‌ର କେବଳ ଏକ ସ୍ୱୀକୃତ ଔଦ୍ଧତ୍ୟ ହୋଇ ରହିଥିବେ ଏବଂ ଆମକୁ ସର୍ବସ୍ୱାନ୍ତ କରିଦେବା ପର୍ଯ୍ୟନ୍ତ ଆମ ଲାଗି ଅନେକ ମିଛ ସଫଳତାର ଅସନ୍ତୋଷ ବହନ କରି ଆଣୁଥିବେ । ଆମ ଡ଼ାକ୍ତରଖାନାଗୁଡ଼ାକ ପଇସା ଦେଇ ମୃତ୍ୟୁବରଣ କରିବାର ଗୋଟାଏ ଗୋଟାଏ ବର୍ବରଖାନା ହୋଇ ରହିଥିବ ।

ଆୟେଣ୍ଡେ ସରକାରଙ୍କ ଅମଳରେ ଡ଼ାକ୍ତରମାନଙ୍କ ମଧ୍ୟରେ ଯବନ ଅବଶ୍ୟ ଥିଲେ । ସାମରିକ ଶାସନ ସେମାନଙ୍କୁ କଏଦୀଖାନାରେ ପୂରାଇଲା, ସେମାନଙ୍କୁ

ନାନାପ୍ରକାର ଅନ୍ୟ ନିର୍ଯାତନା ଦେଲା, କେତେକଙ୍କୁ ସମାପ୍ତ ବି କରିଦେଲା । ଯବନମାନେ ଯୁଗେ ଯୁଗେ ଏହିପରି ମରିକରି ବଞ୍ଚନ୍ତି, ସେମାନେ ହାରିହାରି ଜିତନ୍ତି । ବିଜ୍ଞାନର ଗୋଡ଼ହାତ ଏବଂ ବିଜ୍ଞାନ ତଳେ ରହିଥିବା ଭୂଇଁଟାରୁ ହିଁ ସେମାନେ ବିଜ୍ଞାନକୁ ଚିହ୍ନିବା ଲାଗି ଚେଷ୍ଟା କରନ୍ତି । ଯନ୍ତ୍ର ଏବଂ ଯନ୍ତ୍ରବିଶେଷଜ୍ଞମାନଙ୍କର ଦର୍ପଗୁଡ଼ାକରୁ ସେମାନେ କଦାପି ବିଜ୍ଞାନକୁ ପରଖି ଦେଖିବାକୁ ଯାଆନ୍ତି ନାହିଁ । ସେମାନେ ବିଜ୍ଞାନକୁ ମୂଳତଃ ଭକ୍ତିର ଏକ ପଥ ବୋଲି ଗ୍ରହଣ କରିଥାନ୍ତି । ଯେଉଁଠି ବୈଜ୍ଞାନିକମାନେ ଗୋଟାଏ ଗୋଟାଏ ଶେଠଙ୍କ ପରି ଦିଶନ୍ତି, ଶେଠଙ୍କ ପରି ଅର୍ଥ ଜମା କରନ୍ତି ଓ ଶେଠଙ୍କ ପରି ଅର୍ଥ ଭିତରେ ହିଁ ମରନ୍ତି, ସେଠି ଭକ୍ତମାନେ କୁଆଡ଼େ ଗଲେ ବୋଲି ଯବନ ପଚାରିବାରେ ଲାଗିଥାଏ, ଭଗବାନ ବି କୁଆଡ଼େ ଗଲେ ବୋଲି ବଡ଼ ବିସ୍ମିତ ହୋଇ ଆପଣାକୁ ପଚାରିବାରେ ଲାଗିଥାଏ ।

ତା୧୧ ।୦୯ ।୧୯୭୬ରିଖ



# ଷୋହଳ

ସାହିତ୍ୟର ଅନ୍ୟ କୌଣସି ବିଭାଗରେ ନହେଲେ ନାହିଁ ପଛକେ, ଉପନ୍ୟାସ କ୍ଷେତ୍ରରେ ଆମ ସାହିତ୍ୟ ଯେ ପଡ଼ୋଶୀ ଅନ୍ୟ ଯେ-କୌଣସି ସାହିତ୍ୟ ସହିତ ତୁଳନୀୟ ସମକକ୍ଷତା ଅର୍ଜନ କରି ପାରିଛି, ଅନେକ ସମୟରେ ଆମ ଭିତରୁ ଏପରି ମନ୍ତବ୍ୟମାନ ପ୍ରକାଶ ପାଇଥାଏ । ଆମ ସାହିତ୍ୟ ଅର୍ଥାତ୍ ଆମ ଓଡ଼ିଆ ସାହିତ୍ୟ । ଓଡ଼ିଆ ସାହିତ୍ୟ ଅର୍ଥାତ୍ ଓଡ଼ିଆ ଭାଷାରେ ଲେଖା ହେଉଥିବା ସାହିତ୍ୟ । ଏପରିକି ଯେଉଁମାନେ ସାହିତ୍ୟର ସମୀକ୍ଷା କରନ୍ତି, ସାହିତ୍ୟର ଅଧ୍ୟାପନା କରନ୍ତି ଏବଂ ସାହିତ୍ୟ ବିଷୟରେ କିଛି ବିଚାର କରନ୍ତି, ସେମାନେ ମଧ୍ୟ ଆମ ସମସ୍ତଙ୍କର ମନକୁ ସମ୍ଭବତଃ ଉତ୍ସାହିତ କରିବା ଲାଗି ଏହିଭଳି ମନ୍ତବ୍ୟମାନ ଦେଇଥାନ୍ତି । ଆମ ମନକୁ ଉତ୍ସାହ ଦାନ କରି ସେମାନେ ହୁଏତ ନିଜେ ବି ଭାରି ଉତ୍ସାହିତ ହୋଇଥାନ୍ତି । ଅଥବା ଆପେ ଉତ୍ସାହିତ ଅନୁଭବ କରିବେ ବୋଲି ଆମ ସମସ୍ତଙ୍କୁ ଉତ୍ସାହିତ କରିବା ସକାଶେ ଚେଷ୍ଟା କରିଥାନ୍ତି ।

ଯାବତୀୟ ସଭା ମଧ୍ୟରେ ଠିଆ ହୋଇ ବି ଆମେ ଠୋ' କରି କହିଦେଇ ପାରିବା ଯେ, ଓଡ଼ିଆ ଉପନ୍ୟାସର ଏକ ସମଗ୍ର ସମାଲୋଚନା ଏପର୍ଯ୍ୟନ୍ତ ବି କରା ହୋଇ ନାହିଁ । ଆମ ପିଲାଏ ମନେ ରଖି ପରୀକ୍ଷାରେ ପାଶ୍ କରିବେ ବୋଲି ସେମାନଙ୍କୁ ଉପନ୍ୟାସର ଇତିହାସରୁ କେତେଟା ସନ ଓ କେତେଟା ନାମ କହି ଦିଆଯାଇଛି ସତ, ମାତ୍ର ଉପନ୍ୟାସର ବିଚାର କରିବାର ଏକ ସମଗ୍ର ପରିପ୍ରେକ୍ଷୀରୁ ଆମର ଏଠି ଏବେ ମଧ୍ୟ ଉପନ୍ୟାସର ବିଚାର କରାଯାଇ ନାହିଁ । ଏକଥା ସତ ଯେ ଆମର ସାହିତ୍ୟରେ ଗତ କେତୋଟି ଦଶକ ମଧ୍ୟରେ କବିତା, ନାଟକ ଓ ପ୍ରବନ୍ଧ ଯେତେ ବାହାରିଛି, ଉପନ୍ୟାସ ତା'ଠାରୁ ଯଥେଷ୍ଟ ଅଧିକ ସଂଖ୍ୟାରେ ବାହାରିଛି । ସବୁ ସାହିତ୍ୟରେ ମୋଟାମୋଟି ଠିକ୍ ସେହି କଥା ହୋଇଛି । ଓଡ଼ିଆ ଭାଷାରେ ପ୍ରକାଶ ପାଉଥିବା ଯେ କୌଣସି ପତ୍ରିକାରେ ବି ଆମେ ଠିକ୍ ସେହି କଥାଟିର ପ୍ରମାଣ ପାଇଯିବା । ଆମ ପତ୍ରିକାମାନଙ୍କରେ ଗପ ଓ ଉପନ୍ୟାସର ସଂଖ୍ୟା ହେଉଛି ସବୁଠାରୁ ବେଶୀ । ଗପ ଓ ଉପନ୍ୟାସ ପରେ ଯାଇ

କବିତା, ନାଟକ କିମ୍ବା ପ୍ରବନ୍ଧ । ସମ୍ପାଦକଙ୍କ ସମେତ ଆମେ ସମସ୍ତେ ଏହାକୁ ଏକ ଏଡ଼େ ସ୍ୱାଭାବିକ କଥା ବୋଲି ଧରି ନେଇଥାଉ ଯେ ସେହି ବିଷୟରେ କେବେହେଲେ ଏକ କାରଣ ଖୋଜିଯିବା ଲାଗି ଆମର ହୁଏତ ଆଦୌ କୌଣସି ଆବଶ୍ୟକତା ନଥାଏ ।

ଉପନ୍ୟାସ କେବଳ ଗପ ନୁହେଁ, କେବଳ କାହାଣୀ ନୁହେଁ; ଉପନ୍ୟାସ ହେଉଛି ଆଧୁନିକ ଜୀବନର ଗାଥା । ଆଧୁନିକ ଜୀବନର ଗଦ୍ୟ–ଗାଥା, ଆକାଂକ୍ଷାର ଗାଥା, ଆକୂତିର ଗାଥା, ଆଲୋଡ଼ନର ଗାଥା । କେବଳ ଗପ ଅଥବା କେବଳ କାହାଣୀ ଦ୍ୱାରା ଯଦି ଆଧୁନିକ ଜୀବନ-ବିଚରଣର ଆଗ୍ରହ ଗୁଡ଼ାକୁ ସନ୍ତୁଷ୍ଟ କରି ଦିଆଯାଇ ପାରୁଥାନ୍ତା, ତେବେ ଆମ ପୁରାଣ ଗୁଡ଼ାକରେ ଯେତେ ଯେତେ କାହାଣୀ ଭର୍ତ୍ତି ହୋଇ ରହିଛି, ହୁଏତ ସେଇଥିରେ ହିଁ ବଡ଼ ଚମତ୍କାର ଭାବରେ ଆମର କାମ ଚଳି ଯାଉଥାନ୍ତା । ଆମ ପୁରାଣଗୁଡ଼ାକରେ କ'ଣ ପ୍ରକୃତରେ କମ୍ କାହାଣୀ ରହିଛି ? ସେ ସବୁଥିରେ ଭଗବାନଙ୍କୁ ଆଗ ଦେବତାସ୍ତରକୁ ଉତୁରାଇ ଅଣା ଯାଇଛି ଓ ତା'ପରେ ଉତ୍ତମ ପରିପାଟୀ ସହିତ ପୁନର୍ବାର ଦେବତାମାନଙ୍କୁ ମଣିଷଙ୍କର ସ୍ତରକୁ ଉତୁରାଇ ଅଣା ଯାଇଛି ଏବଂ ତା'ପରେ, କଳ୍ପନା-ବିଳାସର ଚଉଷଠି ମସଲା ପକାଇ କେଡ଼େ ରସାଳ ଭାବରେ କେତେ କ'ଣ କରାଯାଇଛି । ଆମ ମର୍ତ୍ତ୍ୟବାସୀଙ୍କୁ ସ୍ୱର୍ଗଧାମର ମହିମ୍ନ-ବିବରଣଗୁଡ଼ାକ ଦେବାକୁ ଯାଇ ସ୍ୱର୍ଗବାସୀମାନଙ୍କୁ ମର୍ତ୍ତ୍ୟଧାମର ସବୁ ସୁଆଦଗୁଡ଼ାକୁ ଚଖାଇ ଦିଆଯାଇଛି । ପୁରାଣ ପଢ଼ୁ ପଢ଼ୁ ଆମେ ସମସ୍ତେ କେତେ ଲୁହ ଗଡ଼ାଇଥିବା, କେତେ ପ୍ରକାର ରସରେ ଗୋଟାସୁଦ୍ଧା ବୁଡ଼ୁବୁଡ଼ୁ ହୋଇ ପଡ଼ିଥିବା–ତଥାପି ଏହି କଥାଟି ଏକାନ୍ତ ସତ୍ୟ ଯେ ଆଧୁନିକ ମଣିଷ ଲାଗି ଉପନ୍ୟାସ ଯେଉଁସବୁ ଆବଶ୍ୟକତା ପୂରଣ କରୁଛି ବା କରିବା ଲାଗି ଅଭିପ୍ରେତ ହୋଇ ରହିଛି, ପୁରାଣର ବର୍ଣ୍ଣାଢ଼୍ୟ ବିବରଣଗୁଡ଼ାକ କଦାପି ସେହିସବୁ ଆବଶ୍ୟକତାର ପୂରଣ କରି ନାହିଁ । ଲୋକ-ଗଳ୍ପ ଏବଂ ଲୋକ-ଗାଥାମାନ ମଧ୍ୟ ତାହା କଦାପି ପୂରଣ କରି ପାରନ୍ତେ ନାହିଁ । ଯେତେବେଳେ ମଣିଷ ଜୀବନ ବିଷୟରେ ପ୍ରାୟ ଅସଚେତନ ହୋଇ ରହିଥିଲା, ସେତେବେଳେ ତା'ର ସମସ୍ତ ଭବିତବ୍ୟ ସତେ ଅବା ତା'ର କୌଣସି ଅଖ୍ତିଆର ନଥିବା କେତେଟା ଅଦୃଶ୍ୟ ହାତ ଅର୍ଥାତ୍ ଅଦୃଶ୍ୟ ବରାଦ ଦ୍ୱାରା ପରିଚାଳିତ ହେଉଥିଲା, ଅର୍ଥାତ୍ ନାଚିବାରେ ଲାଗିଥିଲା, ସେଡ଼ିକିବେଳେ ଲୋକଗଳ୍ପ ଗୁଡ଼ାକ ହିଁ ତତ୍କାଳୀନ ଜୀବନ ଲାଗି ଯଥେଷ୍ଟ ପ୍ରସାର ଯୋଗାଇ ଦେଇ ପାରୁଥିଲା ।

ସେତେବେଳେ କେତେଟା ଉଦ୍‌ଭଟତା ଓ କେତେଟା ଶକୁନ ସାହାଯ୍ୟରେ ହିଁ ମଣିଷର ଜୀବନ ଆତଯାତ ହେଉଥିଲା । ଯାହା ଉଦ୍‌ଭଟ, ସେତେବେଳର ମଣିଷଙ୍କୁ ସମ୍ଭବତଃ ସେଗୁଡ଼ାକ ହିଁ ଭଲ ଲାଗୁଥିଲା । ଆପଣା ଜୀବନର ନିତ୍ୟନୈମିତ୍ତିକତା

ଗୁଡ଼ାକୁ ସତେଅବା କିଞ୍ଚିତ୍ ପରିମାଣରେ ଚିତ୍ରଯୁକ୍ତ କରି ରଖିବା ଲାଗି ସେତେବେଳେ କାହାଣୀ ମାତ୍ରକେ ହିଁ ସେ ଏହିପରି କେତେଟା ଉଦ୍‌ଭଟତାକୁ ବୁଝୁଥିଲା । ଉଦ୍‌ଭଟତା ଭିତରେ ଘଡ଼ିଏ ବିଚରଣ କରିଆସି ସିଏ ସତେଅବା ଭାରି ଖୁସି ପାଉଥିଲା । ଏବଂ ଶକୁନ-ଗୁଡ଼ାକ ମଧ୍ୟ ପ୍ରାୟ ଗୋଟାସୁଦ୍ଧା ତା'ର ଜୀବନକୁ ନିର୍ଣ୍ଣୟ କରିବାରେ ଲାଗିଥିଲେ । ମଣିଷ ଶକୁନରୁ ହିଁ ଶୁଭର ସୂଚନା ପାଉଥିଲା, ଅଶୁଭର ବି ସୂଚନା ପାଉଥିଲା । କ'ଣ ହେବ ବା କ'ଣ ନହେବ, ସିଏ ସବୁଗୁଡ଼ାକର ସୂଚନା ପାଇ ଯାଉଥିଲା । ପତରଟିଏ ହଲିଲେ, ଚଢ଼େଇଟିଏ ଉଡ଼ିଆସି ଚାଳରେ ବସିପଡ଼ିଲେ ସିଏ ତାହାରି ଭିତରେ ଅର୍ଥ ଖୋଜି ବାହାରୁଥିଲା । ସତେ ଯେପରି ତାକୁ କୌଣସି କଥା ଜଣାଇବାକୁ ହିଁ ବିଧାତା ଏଗୁଡ଼ାକ କରୁଛି ବୋଲି ସେ ମୂଳରୁ ଧରି ନେଉଥିଲା । ଏହି ପ୍ରବୃତ୍ତିଟାକୁ କୌଣସି ପ୍ରକାରେ ଆତ୍ମକୈନ୍ଦ୍ରିକତା ବୋଲି ନକହି ହୁଏତ ଏକ ପ୍ରକାର ଅଚେତନତା ଅଥବା ଅସଚେତନତା ବୋଲି କୁହାଯାଇ ପାରିବ । ଅଜ୍ଞତାକୁ ଯଦି ସରଳତା ବୋଲି କୁହାଯାଏ, ତେବେ ଏହି ଲୋକମାନଙ୍କର ଜୀବନକୁ ନିଶ୍ଚୟ ସରଳ ଜୀବନ ବୋଲି କୁହାଯାଇ ପାରିବ । ଗୋଟାସୁଦ୍ଧା ପୋଲା ହୋଇ ରହିବାକୁ ଯଦି ସ୍ୱଚ୍ଛ ହେବା ବୋଲି କହିବାଲାଗି ଆମେ କେତେବେଳେ ସରାଗ କରି ବସୁ, ତେବେ ଏହିସବୁ ଜୀବନକୁ ସ୍ୱଚ୍ଛ ଜୀବନ ବୋଲି କୁହାଯାଇ ପାରିବ । ଯଦି ଆହ୍ୱାନହୀନ ଜୀବନକୁ ସହଜ ଏବଂ ଶାନ୍ତିମୟ ଜୀବନ ବୋଲି କହିବା ସକାଶେ ଆମର ପ୍ରାୟ ଏକ ଲୋଭ ବି ହୁଏ, ତେବେ ସେହିସବୁ ଲୋକଗଳ୍ପ ଓ ଲୋକଗାଥା ଦ୍ୱାରା ସୁପାତି ହୋଇ ରହିଥିବା ଜୀବନକୁ ଆମେ ଅବଶ୍ୟ ସହଜ ଓ ଶାନ୍ତିମୟ ଜୀବନର ସମବାଚୀ ବୋଲି କହି ପାରିବା ଓ ସେଥିରୁ ଏକ ପ୍ରକାରର ପୁଲକ ବି ବେଶ ଅନୁଭବ କରି ପାରିବା । ପଛକୁ ଅନାଇ ବେଶ୍ ଉଲ୍ଲସିତ ବି ହୋଇ ଉଠି ପାରିବା । ନିୟମଗୁଡ଼ାକୁ ମାନୁ ମାନୁ ଯନ୍ତ୍ରର ବି କ୍ରମଶଃ ଗୋଟାଏ ପ୍ରକାରର ସ୍ୱାଭାବିକତା ଆସି ଯାଉଥିବ । ମାତ୍ର ତା' ବୋଲି ଯନ୍ତ୍ରର ଯେ ଗୋଟାଏ ସଚେତନ ସ୍ୱଭାବ ରହିଛି, ସେହି ସ୍ୱଭାବଟିକୁ ସିଏ ସ୍ୱୟଂ ନିର୍ବାଚିତ କରି ନେଇଛି ଓ ତେଣୁ ତାହାରି ଆଚରଣ କରୁଛି ବୋଲି ଯଦି କଥା ମାଜି କେହି କେବେ କହିବା ଲାଗି ମନ କରେ, ତେବେ ଅନେକ ସମୟରେ ତାହାକୁ ହୁଏତ ପ୍ରାୟ ଅଭ୍ୟାସରେ ପଡ଼ି ଯାଇଥିବା ଏକ ଚାପଲ୍ୟ ବୋଲି ହିଁ କୁହାଯାଇ ପାରିବ ।

ମନୁଷ୍ୟ ତା'ର ଇତିହାସରେ ଆଗ ନିଜେ ନିଜକୁ ଆବିଷ୍କାର କଲା, ଅଥବା, ଅଧିକ ନିର୍ଭୁଲ ଭାବରେ କହିଲେ, ସେ ନିଜେ ନିଜକୁ ଆବିଷ୍କାର କରି ବାହାରିଲା– ଏବଂ ତା'ପରେ ଯାଇ ସାହିତ୍ୟରେ ଉପନ୍ୟାସ-ଯୁଗର ଉନ୍ମେଷ ହେଲା । ଉପନ୍ୟାସର ଆଲୋଚନା କଲାବେଳେ ଆଲୋଚକମାନେ ଅନେକ ସମୟରେ ଲୋକଗଳ୍ପ ଓ

ଲୋକଗାଥାଗୁଡ଼ିକ ଭିତରେ ତାହାର ପ୍ରଥମ ଜନ୍ମଲକ୍ଷଣଗୁଡ଼ିକୁ ସୂଚିତ କରାଇ ଦେବାକୁ ଇଚ୍ଛା କରିଥାନ୍ତି । ୟୁରୋପୀୟ ଉପନ୍ୟାସର ଉତ୍ସଟିକୁ ଖୋଜି ବାହାର କଲାବେଳେ ସେମାନେ ହୁଏତ ଆମକୁ ଆଇରିଶ୍ ଓ ଆଇସ୍‌ଲାଣ୍ଡିକ୍ ଲୋକଗାଥାଗୁଡ଼ିକର ଖିଅ ଧରାଇ ଦେବାକୁ ବାହାରି ଥାଆନ୍ତି । ଉପନ୍ୟାସକୁ ପ୍ରଧାନତଃ କାହାଣୀ ବୋଲି ମାନିନେଇ ଥିବାରୁ ସେମାନେ ହୁଏତ ଏହିଭଳି କରିଥାନ୍ତି । ପୁନଶ୍ଚ, ଉପନ୍ୟାସ ଧର୍ମତଃ ଏକ କାହାଣୀ ନୁହେଁ ବୋଲି କହିବା ମାତ୍ରକେ ସେମାନେ ସତେଅବା ଏକ ବଡ଼ ଆଘାତ ଅନୁଭବ କରୁଥିବା ପରି ପ୍ରତିକ୍ରିୟା ଦେଖାନ୍ତି । ଜୀବନକୁ ଅବଲୋକନ କରିବାର ଯେଉଁ ମେଦିନୀଦୃଷ୍ଟି ଦିନେ ଲୋକଗଳ୍ପ ଓ ଲୋକଗାଥାଗୁଡ଼ିକୁ ବେଶ ପିନ୍ଧାଇ ଜନ୍ମ ଦେଇଥିଲା, ଉପନ୍ୟାସର ଆବଶ୍ୟକତା ଆସି ପହଞ୍ଚିବା ବେଳକୁ ସେହି ଦୃଷ୍ଟି ଓ ସେହି ଭୂମିଟି ବିଲ୍‌କୁଲ୍ ବଦଳି ଯାଇଥିଲା । ତାକୁ ଗଢୁଥିବା ଧାତୁଗୁଡ଼ାକ ଓ ତା'ର ଭାଗମାପଗୁଡ଼ାକୁ କଳନା କରି କହୁଥିବା ନାଡ଼ୀଗୁଡ଼ାକ ମଧ୍ୟ ଏକାବେଳେକେ ବଦଳି ଯାଇଥିଲା । ଜୀବନର ଆଧୁନିକ କାବ୍ୟବାହନ ରୂପେ ଗଦ୍ୟର ଆବିର୍ଭାବ ହୋଇଥିଲା । ତା' ଜୀବନର ସମ୍ବନ୍ଧଗୁଡ଼ାକ ଓ ତା'ର ସେହିସବୁ ସମ୍ବନ୍ଧକୁ ନାନା ଠୂଳ ପ୍ରତୀତି ଦେଇ ଗୁରାଇ ତୁରାଇ ଧରିଥିବା ଜାଲଗୁଡ଼ାକ ସତେଅବା କେବଳ ଗଦ୍ୟର ହିଁ ବୋଲ ମାନିବ ବୋଲି ଅପେକ୍ଷା କରି ରହିଥିଲା । ଆଗର ସେହି ଅଳଙ୍କାରଗୁଡ଼ାକ କୁଆଡ଼େ ଗଲା, ପାଦରେ ପାହୁଞ୍ଚ ଲଗାଇ ଗଛଅଗରୁ ଗଛଅଗକୁ ଡ଼େଇଁ ବୁଲିବାର ସେଇ ରୀତିଗୁଡ଼ାକ କୁଆଡ଼େ ଗଲା– ମଣିଷଗୁଡ଼ାକ ସୂତ୍ର ଛିଣ୍ଡାଇ ବାହାରି ଆସିଲେ, ଆପଣା ବିବରର କେନ୍ଦ୍ରଟିକୁ ଖୋଜି ବାହାର କଲେ, ଆପଣାକୁ ଏକ ସମ୍ପୂର୍ଣ୍ଣ ବିଶ୍ୱର କେନ୍ଦ୍ର ରୂପେ ଚିହ୍ନିବା ଲାଗି ସାହସ କଲେ । ପୁରୁଣା କାବ୍ୟ ଓ ପଦ୍ୟ ଭିତରେ ଏହି ସାହସ ଆଦୌ ନ ଥିଲା । ସେଠି ତ କେବଳ ବୋଲଗୁଡ଼ାକ ଅନୁସାରେ ପାଦ ପଡୁଥିଲା, ଗୁରୁମନ୍ତ୍ର ଅନୁସାରେ ହିଁ ନାଦ ଶୁଭୁଥିଲା । ଭାବଗୁଡ଼ାକ ଖାଲି କଲ୍ଲୋଳପ୍ରାୟ ମସ୍ତକ ଉତ୍ତୋଳନ କରି ପୁଣି ସେହି କଲ୍ଲୋଳପ୍ରାୟ ଲୀନ ହୋଇ ଯାଉଥିଲେ । ଡଙ୍ଗାଟା ନିଜ ଡଙ୍ଗା ହୋଇ ଜନ୍ମଲାଭ କରି ନଥିଲା, ଭବଡଙ୍ଗା ହୋଇ ରହିଥିଲା ଏବଂ ହାତରେ ଗୋଟିଏ ବୋଲି କାତ ନଥିଲା । ଆହୁରି ଅନେକ ବାଟ ଆଗକୁ ଯାଇ ଓ ଆପଣା ଜୀବନର ଆହୁରି ଅନେକ ପ୍ରସ୍ତର ପ୍ରେରଣା ପାଇ ମଣିଷ ଜୀବନଟାକୁ କ୍ରମଶଃ ଆପଣାର ଜୀବନ ବୋଲି ଚିହ୍ନିଲା, ଭାବଗୁଡ଼ାକୁ ମଧ୍ୟ ଆପଣାର ଭାବ ବୋଲି ଚିହ୍ନିଲା । ଡଙ୍ଗାଟିକୁ ସେ ନିଜର ବୋଲି ଠାବ କଲା, ଏହି ଯାବତୀୟ ଜାଲ ଭିତରେ ନିଜ ଭିତରେ ଗୋଟିଏ କେନ୍ଦ୍ର ଖୋଜି ବୁଲିଲା । ସେହି କେନ୍ଦ୍ରଟିକୁ ଗବାକ୍ଷ କରି ସମଗ୍ରଟିକୁ ମଧ୍ୟ ନିଜର ବୋଲି ଚିହ୍ନି ବାହାରିଲା । ଭାବଗୁଡ଼ାକ ଭୂଇଁ ଧରିଲେ, ଚେର ହୋଇ ଭୂଇଁରେ ଚରି ଶିଖିଲେ । ତା'ପରେ ଯାଇ କୋଉଠି

ଗୋଟାଏ ମୂଳ ରହିଛି ବୋଲି ଅନ୍ଦାଜ ହେବାକୁ ଲାଗିଲା । ସାହିତ୍ୟରେ ଗଦ୍ୟ ଜରିଆରେ ହିଁ ଏହି ମୂଳ ଖୋଜା ଆରମ୍ଭ ହେଲା ଏବଂ ଉପନ୍ୟାସ ହିଁ ସେହି ଗଦ୍ୟକୁ ଏକ ପ୍ରତିଷ୍ଠା ଆଣି ଦେଲା, ଏକ ସମଗ୍ର ଆଲୋକନର ପ୍ରତିଷ୍ଠା ଆଣିଦେଲା ।

ମଣିଷ ଆପଣାକୁ ଆପେ ଆବିଷ୍କାର କରିବାକୁ ମନ କଲା– ଏକକ ତଥା ସମଗ୍ର ଉଭୟ ରୂପରେ ଆପଣାକୁ ଆବିଷ୍କାର କରିବା ଲାଗି ସେ ମନ କଲା, ତା' ଚାରିପାଖରେ ତାକୁ ବେଢ଼ି ରହିଥିବା ସମଗ୍ରଟିକୁ ମଧ୍ୟ ସେ ଆବିଷ୍କାର କରି ବାହାରିଲା ଏବଂ ତା'ପରେ ଯାଇ ସାହିତ୍ୟର କ୍ଷେତ୍ରରେ ଉପନ୍ୟାସର ଜନ୍ମ ହେଲା । ବର୍ତ୍ତମାନ ମଧ୍ୟ ଆମ ପୃଥିବୀରେ ଏଭଳି ଏକାଧିକ ସମାଜ ଓ ଗୋଷ୍ଠୀଜୀବନ ରହିଛି, ଯେଉଁଠାରେ କି ମଣିଷର ଏହି ଆବିଷ୍କାର–ପର୍ବଟି ତଥାପି ଆରମ୍ଭ ହୋଇନାହିଁ, ଯେଉଁଠାରେ ମଣିଷ ତଥାପି ଅବଚେତନ ପ୍ରାୟ ହୋଇ ରହିଛି । ଆପଣାକୁ ସେଠାରେ ସିଏ କେବଳ କେତେଟା ନିୟମ ଓ ଶକୁନର ଦାସ ବୋଲି ପ୍ରାୟ ପରମ୍ପରାକ୍ରମେ ମାନିନେଇଛି, ସେଠାରେ କେତେ ଅଳପରେ ଜୀବନ ଚଳିଯାଉଛି । ଏବଂ, ସେହିସବୁ ସମାଜ ଏବେ ମଧ୍ୟ କାହାଣୀର ଯୁଗରେ ରହିଛି, ଲୋକଗାଥାଗୁଡ଼ାକର ଯୁଗରେ ରହିଛି । ସେଠାରେ ଉପନ୍ୟାସ ଲାଗି ଏବେ ମଧ୍ୟ ବେଳ ଆସି ପହଞ୍ଚି ନାହିଁ । ଆଧୁନିକ ମଣିଷର ଯୁଗ ହେଉଛି ସାହିତ୍ୟରେ ଉପନ୍ୟାସର ଯୁଗ, ଜୀବନର ଗଦ୍ୟଟି ମଧ୍ୟଦେଇ ଆପଣାକୁ ଅନ୍ୱେଷଣ କରି ବାହାରିବାର ଯୁଗ । କେବଳ ନୃତତ୍ତ୍ୱବିଜ୍ଞାନର ଇତିହାସରେ ନୁହେଁ, ଆଧ୍ୟାତ୍ମିକତାର ଇତିହାସରେ ମଧ୍ୟ ଏହା ଏକ ନୂତନ ଆବିଷ୍କାର ଓ ନୂତନ ପ୍ରେରଣାର ଯୁଗ । ଏକ ନୂତନ ମୂଲ୍ୟବୋଧ ଓ ତେଣୁ ନୂତନ ମୂଲ୍ୟାୟନର ଯୁଗ । ଏହି ନୂତନ ମୂଲ୍ୟାୟନ ମନୁଷ୍ୟକୁ କେତେ ନୂଆ ସାହସ ଦେଇ ଯାଇଛି, କେତେ କେତେ ନୂଆ ଶ୍ରଦ୍ଧା ଦେଇଯାଇଛି । କେତେ ନୂତନ ଗହନକୁ ହାତବଢ଼ାଇ ନିଜର କରିବା ଲାଗି ତାକୁ ପ୍ରତ୍ୟୟ ଯୋଗାଇ ଦେଇ ଯାଇଛି । ପୂର୍ବବର୍ତ୍ତୀ ଯୁଗର ମଣିଷ ଶାସ୍ତ୍ର ଉପରେ ପ୍ରତ୍ୟୟ ରଖିଥିଲା, ନାନା ଅଦୃଷ୍ଟବାଦିତା ଓ ଅଦୃଶ୍ୟବାଦିତା ଉପରେ ପ୍ରତ୍ୟୟ ରଖିଥିଲା, ନିରାପଦ ହୋଇ ରହିଥିଲା । ଯେଉଁ ନୂଆ ପ୍ରତ୍ୟୟଟିକୁ ନେଇ ଆଧୁନିକ ମଣିଷ ଜୀବନର ଭୂମିଗୁଡ଼ିକୁ ସ୍ପର୍ଶ କରିବାକୁ ଗଲା, ସେଥିରେ ଏକ ନୂତନ ଶ୍ରଦ୍ଧା ହିଁ ସର୍ବମୂଳ ସାଧନ ହୋଇ ରହିଲା । ଏହି ଶ୍ରଦ୍ଧାର ମଧ୍ୟଦେଇ ସିଏ ଆପଣାକୁ ଚିହ୍ନି ବାହାରିଲା, ଆପଣାକୁ ଚିହ୍ନିବା ବାଟରେ ସଭିଙ୍କୁ ଚିହ୍ନି ବାହାରିଲା । ତା'ର ବିଶ୍ୱ ଅନେକ ବଡ଼ ହୋଇଗଲା, ଅର୍ଥାତ୍ ସିଏ ବି ଅନେକ ବଡ଼ ହୋଇଗଲା । ତା'ର ଆଖିଗୁଡ଼ାକ ଅନେକ ନୂତନ ଯୋଗ୍ୟତା ହାସଲ କଲେ । ସାହିତ୍ୟରେ ବି ସେ ଆପଣାକୁ ଏହିପରି ଏକ ନୂତନ ଭାବରେ ଅବଧାରଣ କରି ପାରିବାର ସାଧନଟିଏ ଖୋଜିଲା ଏବଂ ସେହି ଖୋଜିବାରୁ ହିଁ ସାହିତ୍ୟରେ ଆଧୁନିକ ଉପନ୍ୟାସର ଜନ୍ମ ହେଲା ।

ତେଣୁ ଆଧୁନିକ ଉପନ୍ୟାସ ଗୋଟାଏ କାହାଣୀ ନୁହେଁ, ଗୋଟାଏ ନିୟମସିଦ୍ଧ ଗାଥା ବି ନୁହେଁ । ଆମର ଏଠି ଅନେକ ଉପନ୍ୟାସକାର ଉପନ୍ୟାସ ଲେଖିଗଲା ବେଳକୁ କୁଆଡ଼େ ଆଗ କାହାଣୀ ଖୋଜି ବାହାରନ୍ତି; ବଜାରକୁ ଚାଉଳ ଡ଼ାଲି କିଣି ଗଲାଭଳି ସେମାନେ କାହାଣୀ ଖୋଜି ବାହାରନ୍ତି । ଯୋଉଠି ଥାଆନ୍ତି, ଅର୍ଥାତ୍ ଯେଉଁଠାରେ ବିଚରଣ କରୁଥାନ୍ତି, ସେଠାରେ ସତେଅବା କିଛି ନଥିବା ପରି ସେମାନେ କାହାଣୀ ଖୋଜି ଆଉ କେଉଁଠାକୁ ଯାଆନ୍ତି । ବଜାରରେ କାହାଣୀ ମିଳେ ସତ, ଘେରାଏ ବୁଲି ଆସିଲେ ଗପଟାଏ ମିଳିଯାଏ ସତ–କିନ୍ତୁ ଆକାଂକ୍ଷା ମିଳେ ନାହିଁ, ଆଖି ମିଳେ ନାହିଁ, ଅର୍ଥାତ୍ ଶ୍ରଦ୍ଧା ମିଳେ ନାହିଁ । ଶ୍ରଦ୍ଧାଟି ଲାଗି ସ୍ୱତନ୍ତ୍ର ଭାବରେ ଜନ୍ମଗ୍ରହଣ କରିବାକୁ ହୁଏ, ଆଧୁନିକ ଆକାଂକ୍ଷା, ଆଧୁନିକ ଆଖି ଏବଂ ଆଧୁନିକ ବିଶ୍ୱାସ–ସବୁଟି ଭିତରେ ଅତି ସଚେତନ ଭାବରେ ଜନ୍ମଗ୍ରହଣ କରି ଶିଖିବାକୁ ହୁଏ । ସେଥିପାଇଁ ଯୋଗ୍ୟ ହେବାକୁ ହୁଏ, ବିକଶିତ ହୋଇ ଆସିବାକୁ ହୁଏ, ଉନ୍ମୋଚିତ ହୋଇ ଆସିବାକୁ ହୁଏ; ତା' ନ ହେଲେ, ଦେଖିଲେ ମଧ୍ୟ ତଥାପି ସବୁ ଦେଖି ହୁଏନାହିଁ । ଗୋଟାସୁଦ୍ଧା ଆଖି ଫାଡ଼ି ଅନାଇ ରହିଥିଲେ ମଧ୍ୟ ତଥାପି ଅସଲଗୁଡ଼ାକୁ ଦେଖିହୁଏ ନାହିଁ । ତରଙ୍ଗଗୁଡ଼ାକୁ ଦେଖି ହୁଏ, ଫେଣଗୁଡ଼ାକୁ ଦେଖିହୁଏ, କୂଳରେ ଆସି ଗଦାହୋଇ ରହିଥିବା ମଳାଗେଣ୍ଡା ଓ ସାମୁକାଗୁଡ଼ାକୁ ବେଶ୍ ଦେଖିହୁଏ ଓ ବେଶ୍ ଗୋଟାଇ ହୁଏ । ତଥାପି ଦେଖା ହୋଇପାରେ ନାହିଁ । ତେଣୁ ଉପନ୍ୟାସଗୁଡ଼ାକ ଲେଖା ହେଉଥିଲେ ମଧ୍ୟ ତଥାପି ଲେଖାହୋଇ ପାରନ୍ତି ନାହିଁ । କାହାଣୀ ପରେ କାହାଣୀ ଛାପା ହୁଏ, ଦୋକାନର କାହାଣୀଥାଳିଗୁଡ଼ାକ ନିମେଷକ ଭିତରେ ଖାଲିହୋଇ ଯିବାରେ ଲାଗିଥାଏ– ଏବଂ ଠିକ୍ ସେହିପରି ନିମେଷକ ଭିତରେ ଭୁଲି ବି ହୋଇ ଯାଉଥାଏ । ଅସଲ ଦେଖାର ଆକାଂକ୍ଷା ରହିଥିଲେ ଯାଇ ଅସଲ ଦେଖା ସମ୍ଭବ ହୁଏ, ଆମ ଆଖିଗୁଡ଼ାକ ସମଗ୍ର ଭାବରେ ଦେଖିବାର ଯୋଗ୍ୟତା ହାସଲ କରିଥିଲେ ଯାଇ ସମଗ୍ର ଅର୍ଥାତ୍ ଅସଲ ଭାବରେ ଦେଖିହୁଏ । ଗୋଟିକୁ ଦେଖୁଥିଲେ ମଧ୍ୟ ସବୁଟିକୁ ଦେଖିବାର ରୀତିଟି ଉପଲବ୍ଧ ହୋଇଯାଏ, କାହାଣୀଗୁଡ଼ାକ ଉପନ୍ୟାସ ହୋଇ ଦିଶନ୍ତି । ସେତେବେଳେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁଟିକୁ ଗୋଟିଏ ଅନୁଭୂତିରେ ହିଁ ବେଶ୍ ସ୍ପର୍ଶ କରିହୁଏ । ତେଣୁ ଆଉ ଫଟୋଗ୍ରାଫର୍ ବନିବାର ଅପକର୍ମ କରିବାକୁ ପଡ଼େ ନାହିଁ ।

ଆମର ଏହି ଜୀବନ–ଏହା ପଛରେ ଏକ ଅତୀତ ଅଛି, ଏହାକୁ ପରିବେଷ୍ଟିତ କରି ଏକ ବର୍ତ୍ତମାନ ବିଦ୍ୟମାନ ରହିଛି ଓ ଆକାଶ-ତଳର ଦିଗ୍‌ବଳୟ ରୂପେ ଆହୁରି ଅଜସ୍ର ଆକାଶର ଘୋଷଣା କରି ଏକ ଭବିଷ୍ୟ ମଧ୍ୟ ରହିଛି । ଏହି ଅତୀତ, ବର୍ତ୍ତମାନ ଓ ଭବିଷ୍ୟ କହିଲେ ଆମେ ପ୍ରକୃତରେ କ'ଣ ବୋଲି ବୁଝିବା, ଏହି ଅତୀତ, ବର୍ତ୍ତମାନ ଓ

ଭବିଷ୍ୟକୁ ଆମେ ନିଜ ଭିତରେ ପ୍ରକୃତରେ କିପରି ଭାବରେ ଅନୁଭବ କରିବା ? ଆମେ ଏଗୁଡ଼ାକୁ କ'ଣ କେବଳ କେତେଟା ଘଟଣା ବା କେତେଟା କାହାଣୀର ଏକ ସମାହାର ପରି ଗ୍ରହଣ କରିବା, ପରସ୍ପରଠାରୁ ଏକାନ୍ତ ବିଚ୍ଛିନ୍ନ କେତେଟା ଉଠାପକା ଆକସ୍ମିକତାର ଏକ ଉଦ୍ଦେଶ୍ୟହୀନ ସମାରୋହ ବୋଲି ହିଁ ଜାଣିବା ? ଏଗୁଡ଼ାକର କାହାଣୀ କ'ଣ ଖାଲି ଏକ କ୍ରୀଡ଼ନକ-ସଭାର କାହାଣୀ, ଯେଉଁଠି କ୍ରୀଡ଼ନକଗୁଡ଼ାକ ଆକୁଳ ହୁଅନ୍ତି, ଉଲ୍ଲସିତ ହୁଅନ୍ତି, ବିହ୍ୱଳ ହୁଅନ୍ତି, ବିମର୍ଷ ହୁଅନ୍ତି—ଉଠନ୍ତି, ପଡ଼ନ୍ତି ଓ ସେହିଗୁଡ଼ାକୁ ହିଁ ଜୀବନ ବୋଲି କହନ୍ତି ? ଯେଉଁସବୁ ସମ୍ବନ୍ଧ ଆମ ସମସ୍ତଙ୍କୁ ଆପଣା ସହିତ, ପରସ୍ପର ସହିତ ଓ ବୃହତ୍ତର ଏହି ଦୃଷ୍ଟ ଅଦୃଷ୍ଟ ସମଗ୍ରଟି ସହିତ ବାନ୍ଧି ରଖିଛି, ସମଗ୍ରଟି ସହିତ ଏକାଠି ପରିଚାଳିତ କରି ନେଉଛି, ସତେଅବା ନିତ୍ୟ ନୂତନ ଭାବରେ ଆବିଷ୍କୃତ ହେଉଥିବା ଏକ ସମଗ୍ର ସଦନ ଆଡ଼କୁ ମୁହାଁଇ ନେଉଛି, ସେହି ସମ୍ବନ୍ଧଗୁଡ଼ାକ କ'ଣ କେବଳ କେତେଟା ମୁହୂର୍ତ୍ତର, କେବଳ ବଜାରର, କେବଳ କେତେଟା ପ୍ରୟୋଜନର ? ଯେଉଁସବୁ ସ୍ୱପ୍ନ ଆମର ଆଜି ସକାଳଟିକୁ କାଲିର ସକାଳଠାରୁ ଏଡ଼େ ଅଭିନବ କରି ଅବତୀର୍ଣ୍ଣ କରାଇ ଆଣୁଛି, ଯେଉଁସବୁ ସ୍ୱପ୍ନ ଆମରି ବ୍ୟକ୍ତିଗତ ଓ ସାମୂହିକ ଯାବତୀୟ ଅସ୍ତିତ୍ୱ ଏବଂ ଅସ୍ମିତାଗୁଡ଼ାକୁ କେତେ କ'ଣ ରସାୟନ ଦେଇ ନିତ୍ୟ ନୂତନ ଭାବରେ ନୂତନ ଓ ତରୁଣ କରି ରଖୁଛି, ଆମକୁ ଏକାବେଳେକେ ଅନେକ ମୁହୂର୍ତ୍ତରେ, ଅନେକ ହୃଦୟରେ ଓ ଅନେକ ଅନୁରାଗରେ ବିଚରଣ କରି ପାରିବାର ସାହସ ଆଣି ଦେଇ ଯାଉଛି, ସେଗୁଡ଼ାକ କଣ କେବଳ ମାୟା, କେବଳ ଭାନୁମତୀର ଦେଶ, କେବଳ କେତେଟା ସୁଆଙ୍ଗ, ଯେଉଁଥିରେ କି ଆମେ କେତେବେଳେ ହୀରୋ ବନି ଆଉ କାହାକୁ ଚିତ୍ କରି ଦେବାରେ ଲାଗିଥାଉ ଓ ପୁଣି ଆଉ କେତେବେଳେ ଶିଶୁପାଳ ବି ବନି ଆଉ କାହାର ପରାକ୍ରମଶାଳିତା ତଳେ ଚିତ୍‌ହୋଇ ପଡ଼ିଥାଉ; ଏବଂ ଏହି ଦୁଇଟାଯାକ 'ନେଡି'କୁ ହିଁ ଭାଗ୍ୟ ଆଉ ଦୁର୍ଭାଗ୍ୟ ବୋଲି କହିବାରେ ଲାଗିଥାଉ ? ଏହିସବୁ ପ୍ରଶ୍ନର କୌଣସି ମୁନିଭଣିତ ଉତ୍ତର ପ୍ରସ୍ତୁତ ହୋଇ ରହି ନାହିଁ; ଏହିସବୁ ଉତ୍ତରକୁ ଆବିଷ୍କାର କରିବାକୁ ପଡ଼େ, ଆପଣାର ଆଖିଗୁଡ଼ାକୁ ଆହୁରି ବଢ଼ାଇ ଓ ଆହୁରି ଭେଦାଇ ଏକ ଆବିଷ୍କାର-ଯାତ୍ରାରେ ଦ୍ୱାର ପରେ ଦ୍ୱାର ଅତିକ୍ରମ କରିଯିବାକୁ ପଡ଼େ, ଏବଂ ସେହି ଅତିକ୍ରମ କରିବାର କାହାଣୀଟି ହିଁ ଆମର କାନ୍‌ଭାସ ଉପରେ ଆମର ଜୀବନ ବୋଲି ଲେଖା ହୋଇ ରହି ଯାଉଥାଏ । ଉପନ୍ୟାସକାର କେବଳ ନିଜର କାନ୍‌ଭାସଟିକୁ ନୁହେଁ, ତା' ବିରଚନାର ପରିସର ମଧ୍ୟରେ ରହିଥିବା ସମୁଦାୟ କାନ୍‌ଭାସଟିକୁ ପଢ଼ି ପାରିବା ଲାଗି ସମର୍ଥ ହେବା ଉଚିତ ଅର୍ଥାତ୍ ସମୁଦାୟ ଜୀବନଗୁଡ଼ାକୁ ପଢ଼ିବାଲାଗି ସମର୍ଥ ହେବା ଉଚିତ ।

ଯେଉଁ ଉପନ୍ୟାସକାର ଜୀବନକୁ କେବଳ କେତେଟା ଦୈନନ୍ଦିନତା ଓ ଆକସ୍ମିକତା ବ୍ୟତୀତ ଆଉ କିଛି ଅଧିକ ବୋଲି ଜାଣେ ନାହିଁ, ସ୍ୱପ୍ନ କହିଲେ ସିଏ କେବଳ କେତେଟା ପ୍ରୟୋଜନହୀନ ନିର୍ବୋଧତା ଓ ଭ୍ରମ ବ୍ୟତୀତ ଆଉ ଅଧିକ କିଛି ବୋଲି ଘେନେ ନାହିଁ, ସିଏ ବି ଉପନ୍ୟାସ ଲେଖିପାରେ, ସିଏ ବି ରଜ ଆଉ ଦଶହରା ଫରମାସ ଅନୁସାରେ ବରଷକୁ ଚାରି ଥର ଗଭା ସଜାଡ଼ି ବାହାରେ । ପୃଥିବୀର ସବୁ ଭାଷାର ସାହିତ୍ୟରେ ଏକଥା ହୁଏ । କିନ୍ତୁ ସେହିସବୁ ଉପନ୍ୟାସ ଆମକୁ କେବଳ କାହାଣୀଟାଏ କହିଦେଇ ଚୁପ୍ ହୋଇ ରହିଯାଆନ୍ତି । ସେମାନେ ଚମତ୍କୃତ କରନ୍ତି, ଚହଲାଇ ଦିଅନ୍ତି, ଲୋମହର୍ଷଣ କରାନ୍ତି, ହୁଏତ ଅଶ୍ରୁ-ବର୍ଷଣ ବି କରାନ୍ତି । ଆମକୁ ଭାରି ଚମତ୍କାର ଭାବରେ ମଜାଇ ରଖନ୍ତି, ଆମରି ହାତପାଆନ୍ତା ଭିତରେ ଭାରି ଚମତ୍କାର ଭାବରେ ରଞ୍ଜାଇ ରଖିଥାନ୍ତି । କିନ୍ତୁ ସେତିକି ବ୍ୟତୀତ ଆଉ କିଛି ହେଲେ କରି ପାରନ୍ତି ନାହିଁ । ସେହିଭଳି ଗୋଟିଏ ଉପନ୍ୟାସ ପଢ଼ିଲାବେଳେ ସତେ ଅବା କୌଣସି କଳାକୁଞ୍ଜ ଭିତରେ ପଶି ରୂପଗୁଡ଼ାକୁ ଦେଖୁଥିବା ପରି ମନେ ହେଉଥାଏ । ଏ ପାଖରେ ପଶି ସେ ପାଖରେ ବାହାରି ଗଲା ବେଳକୁ ପଇସା ବି ସରି ଯାଇଥାଏ । କିନ୍ତୁ ଆହୁରି ବି କେତେକ ଉପନ୍ୟାସକାର ଅଛନ୍ତି, ସବୁ ସାହିତ୍ୟରେ ଓ ସବୁ ଜଳବାୟୁରେ ରହିଛନ୍ତି, ଯେଉଁମାନେ କି ଜୀବନର ଭଳି ଭଳି ସମ୍ବନ୍ଧଗୁଡ଼ାକୁ ନେଇ ଆମ ଆଗରେ ଚିତ୍ର ବାଢ଼ନ୍ତି, ଜୀବନର ସ୍ୱପ୍ନଗୁଡ଼ାକୁ ନେଇ ଭାଷାର ମାଧ୍ୟମରେ ମୂର୍ତ୍ତି ଗଢ଼ି ନିଅନ୍ତି । ସେମାନେ ଆମକୁ ସତେଅବା ସାଥୀ କରି ନିଅନ୍ତି । ଗୋଟାଏ ଦର୍ପଣ ଭିତରେ ଆମେ ସତେଅବା ଏକାବେଳେକେ କେତେ କେତେ ଭୁବନକୁ ଏକ ସମଗ୍ର ରୂପେ ଦେଖିବାକୁ ପାଉ; ତାହାରି ଭିତରେ ଉପନ୍ୟାସକାରକୁ ଦେଖୁ, ଆପଣାକୁ ମଧ୍ୟ ଦେଖୁ । ତାତ୍କାଳିକତା ମଧ୍ୟରେ ସର୍ବକାଳିକତାକୁ ଦେଖିବାର ବାଟ ପାଇଯାଉ ଏବଂ ସେହିସବୁ ଉପନ୍ୟାସ ହିଁ ବଞ୍ଚି ରହେ । ସେହି ଉପନ୍ୟାସକାର ଆମ ପାଖରୁ ଚାଲିଯିବା ପରେ ମଧ୍ୟ ତାହା ବଞ୍ଚି ରହେ । କାରଣ ନିଜର କୃତିଟି ଦ୍ୱାରା ସିଏ ଯେଉଁ ଆଲୋଡ଼ନଟିକୁ ଆରମ୍ଭ କରି ଦେଇଥାଏ, ସେହି ଆଲୋଡ଼ନ ତଥାପି ଲାଗି ରହିଥାଏ । ସିଏ ପଚାରିଥିବା ପ୍ରଶ୍ନଗୁଡ଼ାକ ତଥାପି ପଚରା ହେଉଥାଏ, ସେହି ଖୋଜାଗୁଡ଼ାକ ତଥାପି ଚାଲିଥାଏ । ଚାଲନ୍ତୁ ଆମେ ରୋମାଁ ରୋଲାଁଙ୍କର Jean Christophe ପଢ଼ିବା, ଟମାସ୍ ମାନ୍‌ଙ୍କର Death in Venice ପଢ଼ିବା, Knut Hamsun ଙ୍କର Growth of the Soil ପଢ଼ିବା, କିମ୍ବା ଏପରିକି ତୁର୍ଗେନିଫ୍‌ଙ୍କର Rudinପଢ଼ିବା, ଇରଭିଙ୍ଗ ଷ୍ଟୋନ୍‌ଙ୍କର Lust for Life ବା ମାର୍ଟିନ୍ ଆନରସନ୍ ନେକ୍‌ସିଉଙ୍କର Ditte, Menneskebarn ବି ପଢ଼ିବା । ଏଗୁଡ଼ାକ ପ୍ରଥମେ କେଉଁ ଭାଷାରେ ଲେଖା ହୋଇଥିଲା, ଆମର ହୁଏତ ସେକଥା ଆଉ ମନେ ନଥିବ–କିନ୍ତୁ ସେହିସବୁ

ଉପନ୍ୟାସରେ ପଚରା ହୋଇଥିବା ପ୍ରଶ୍ନଗୁଡ଼ାକୁ ଆମେ ବି, ଆମେ ଯିଏ ଯୋଉଠି ରହିଛୁ, ସେଠି ପଚାରିବାରେ ଲାଗିଥିବା । ନିଜକୁ ଜାଁ କ୍ରିଷ୍ଟଫ୍ ପରି ଭାବୁଥିବା, ରୁଡ଼ିନ୍ ପରି ଭାବୁଥିବା, ଡ଼ିଟ୍ଅ ପରି ମଧ ଭାବୁଥିବା, ଆମ ଜୀବନର ଉଦାତ୍ତତମ ଓ ନୀରବତମ ମୁହୂର୍ତ୍ତଗୁଡ଼ିକରେ ଆମେ ଏହିସବୁ ଏକାତ୍ମକତା ଲାଗି ସଂସାରରେ ଭିକାରୀ ହୋଇ ବୁଲୁଥିବା, ବିରହୀ ହୋଇ ବୁଲୁଥିବା, ବାନ୍ଧବ ହୋଇ ବୁଲୁଥିବା ।

ଆମ ସଂସାରରେ ଏହି ଯେଉଁସବୁ ସମ୍ବନ୍ଧ, ନିଜର ଆପଣା ସହିତ, ନିଜର ଆଉ ସମସ୍ତଙ୍କ ସହିତ ଓ ମନୁଷ୍ୟର ପ୍ରକୃତି ସହିତ ଯେତେ ଯେତେ ସମ୍ବନ୍ଧ, ଏଗୁଡ଼ାକ ଭିତରେ କ'ଣ ପ୍ରକୃତରେ କୌଣସି ଅନ୍ତର୍ନିହିତ ଅଭିପ୍ରାୟ ରହିଛି, ଏସବୁ ଭିତରେ କ'ଣ ପ୍ରକୃତରେ କୌଣସି ସତ୍ୟ ଆପଣାକୁ ଉନ୍ମୋଚିତ କରି ଦେବାରେ ଲାଗିଛି ? ଆମ ଜୀବନର ଏହି ଯେଉଁ ନାନା ଅବସରର ନାନାବିଧ ସ୍ୱପ୍ନ ଅହରହ ଏକାଠି ଘଟେଅବା ଗୋଟିଏ ମୂଳ ଅନୁରାଗର ଚାରିପାଖରେ ବଳି ହୋଇ ରହିଲା ପରି ରହିଛି, ଯେଉଁଗୁଡ଼ିକୁ ଆମେ ପ୍ରକାର-ଭେଦରେ ଓ ନିମିତ୍ତ-ଭେଦରେ ବାସନା ବୋଲି କହୁଛୁ, କାମନା ବୋଲି କହୁଛୁ, ତପସ୍ୟା ବୋଲି କହୁଛୁ ଅଥବା ଶ୍ରଦ୍ଧା ବୋଲି କହୁଛୁ, ଏଗୁଡ଼ିକର ଅସଲ ଗଭୀରତାର ସ୍ତରରେ ଏହିଗୁଡ଼ିକୁ ହିଁ କେତେଦୂର ଆମର ଅସଲ ବୃତ୍ତି ଓ ଅସଲ ଗୃହ ବୋଲି କୁହାଯାଇ ପାରିବ ? ଆଧୁନିକ ଉପନ୍ୟାସକାର ଆଧୁନିକ ଜୀବନକୁ ନେଇ କିଛି ରଚନା କରିବାକୁ ଯିବା ମାତ୍ରକେ ହିଁ ତାକୁ ଏହି ପ୍ରଶ୍ନଗୁଡ଼ିକୁ ପଚାରି ଆସନ-ପ୍ରତିଷ୍ଠା କରିବାକୁ ପଡ଼ିବ । ତା'ର ଭାଷାଟି ଅଥବା ବାହ୍ୟ ଭୂମିଟି ଯେତେ ସ୍ଥାନୀୟ ହୋଇ ରହିଥିଲେ ମଧ ଏହି ଜିଜ୍ଞାସାଟିରୁ ହିଁ ତାକୁ ଆପଣାର ଆକାଶଚିହ୍ନା ଆରମ୍ଭ କରିବାକୁ ପଡ଼ିବ । ମାତ୍ର ନିଜେ ସେହି ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜୁଥିଲେ ସିନା ସିଏ ଆମ ଲାଗି ମଧ୍ୟ ତା'ର ଉପନ୍ୟାସଗୁଡ଼ିକ ମଧଦେଇ ସେଗୁଡ଼ିକର ଅବତାରଣା କରି ପାରିବ । ନିଜ ଭିତରେ ସେହି ପ୍ରଶ୍ନଗୁଡ଼ିକୁ ପଚାରୁଥିଲେ ସିନା ସିଏ ଆମକୁ ମଧ ସେହି ପ୍ରଶ୍ନଗୁଡ଼ିକ ଲାଗି ଉଦ୍ୟତ କରାଇ ପାରିବ ? ଜନନୀକୁ କୁଆଡ଼େ ତା'ର ନିଜ ସନ୍ତାନଟି ସହିତ ସ୍ୱୟଂ ବଢ଼ିବାକୁ ପଡ଼େ । ତାହା ନ ହେଲେ ସେ ଜନନୀ ହୋଇପାରେ ନାହିଁ । ଠିକ୍ ସେହିପରି ପ୍ରତ୍ୟେକ ସାହିତ୍ୟିକକୁ ମଧ ତା'ର ରଚନା ଗୁଡ଼ିକ ସହିତ ସ୍ୱୟଂ ବଢ଼ିବାକୁ ପଡ଼େ ଏବଂ ସାହିତ୍ୟ ଭିତରେ ଆମ ଉପନ୍ୟାସକାରଙ୍କୁ ମଧ ଏହି ଅସଲ ଆହ୍ୱାନଟିରୁ କଦାପି ମୁକ୍ତ ରଖାଯାଇ ପାରିବ ନାହିଁ । ସେହି ଆହ୍ୱାନଟିକୁ ଉପନ୍ୟାସକାର ଅସ୍ୱୀକାର କରିପାରେ, ସେଇଟି ପାଖରୁ ଖସିଯାଇ ଆଉ କେଉଁଠି ଶଙ୍କାସିନ୍ଦୂର ହୋଇ ବସି ରହିବାକୁ ବି ମନ କରିପାରେ । ମାତ୍ର ତଥାପି ଆହ୍ୱାନଟି ଅବଶ୍ୟ ରହିଥିବ—ଉପନ୍ୟାସକାରର ଚେତନା ଲାଗି ତାହା ଏକ ଆକର୍ଷଣକାରୀ ଦିଗ୍‌ବଳୟ ହୋଇ ରହିଥିବ । ଉପନ୍ୟାସକାର ଇଚ୍ଛା

କଲେ ଆମକୁ ରଙ୍ଗରସ ଯୋଗାଇ ଦେଇ ପାରିବ; ସିଏ ନିଜେ ଆପଣାର ଚେତନାଟି ସହିତ ଯେଉଁ କୁଣ୍ଡ ଭିତରେ ପଡ଼ି ନସର ପସର ହେଉଛି, ବର୍ଣ୍ଣାଢ଼୍ୟ ହାତଗୁଡ଼ାକୁ ବାହାର କରି ସିଏ ସେତେବେଳେ ଆମକୁ ସେହି କୁଣ୍ଡଟି ଭିତରେ ଯାଇ ପଶିବା ଲାଗି କେତେ ପ୍ରକାରେ ଡାକିବାରେ ଲାଗିଥିବ । ଯୁଗଗୁଡ଼ାକୁ ଅର୍ଥାତ୍ ସତ୍ୟଗୁଡ଼ାକୁ ଅଣଲେଉଟା କରି ରଖିବାରେ ସିଏ କେତେ ସାହାଯ୍ୟ କରୁଥିବ । ତଥାପି ସିଏ ସତେଅବା ସାହିତ୍ୟର ବାହାରେ ବାହାରେ ହିଁ ରହିଥିବ, ଜୀବନର ତୋଟା ମୂଳ କରୁଥିବ ସିନା, ମାତ୍ର ତୋଟା ଭିତରେ ମୋଟେ ପ୍ରବେଶ କରି ପାରୁ ନ ଥିବ ଏବଂ ସବୁଠାରୁ ମଜା କଥା ହେଉଛି, ଏହି ଦେଶରେ ବା ଏହି ଖଣ୍ଡଟାରେ କେହି ହେଲେ ସାହିତ୍ୟକୁ ଚିହ୍ନିଲେ ନାହିଁ ଓ ଜାତି ମଧ୍ୟ ତା'ର ସାହିତ୍ୟିକମାନଙ୍କୁ ଚିହ୍ନିଲା ନାହିଁ ବୋଲି ସିଏ ସଂକୀର୍ତ୍ତନ କରିବାରେ ଲାଗିଥିବ ।

ମନୁଷ୍ୟ-ସମ୍ବନ୍ଧର ଯେଉଁ ପରିବେଶଟି ସକାଶେ ଆମେ ବଞ୍ଚି ରହିଛୁ, ଯେଉଁ ସକାଶେ ଆମର ଏହି ଅହରହ ଯାବତୀୟ ଦିଆନିଆ ସବୁ କିଛି ଚାଲିଛି, ଯେଉଁଟିର ଦର୍ପଣ ଉପରେ ଆମେ ସରିତ ଓ ସମୁଦ୍ର ଉଭୟଙ୍କୁ ଚିହ୍ନୁଛୁ, ଆମେ ତାହାକୁ ହିଁ ଆମର ସମାଜ ବୋଲି କହିବା । ଏହି ସମାଜର କାନ୍ଥ ଅଛି, ତଥାପି କାନ୍ଥ ନାହିଁ; ଚଉହଦୀ ଅଛି, ତଥାପି ଚଉହଦୀ ନାହିଁ । ତାହାର ଭୂଗୋଳ ଅଛି, ତଥାପି ଭୂଗୋଳ ନାହିଁ । ଏଠି କେତେ ଚେର ଆହୁରି କେତେ ଚେର ସହିତ ଦୃଶ୍ୟ ଓ ଅଦୃଶ୍ୟ ନାନା ଭାବରେ ଗୁଡ଼ାଇ ହୋଇ ରହିଛି ଏବଂ ଏହି ପରିବେଶଟିକୁ ମଣିଷ ଆପେ ଗଢ଼ିଛି । ଆପଣାର ସମ୍ମୁଖରେ ସର୍ବଦା ଏକ ମଡ଼େଲ୍ ରଖି ମଣିଷ ଏଇଟିକୁ ଗଢ଼ିଛି, ଗଢ଼ିବାରେ ଲାଗିଛି । ମଣିଷ ନିଜେ ନିଜକୁ ଯେଉଁ ଆଖିରେ ଦେଖୁଛି ବା ଯେଉଁ ମର୍ଯ୍ୟାଦା ଓ ପ୍ରସ୍ଥଗୁଡ଼ାକୁ ଦେଇ ନିଜର କଳନା କରୁଛି ଏବଂ ମଣିଷମାନେ ପରସ୍ପରକୁ ମଧ୍ୟ ଯେଉଁ ଆଖିରେ ଦେଖୁଛନ୍ତି, ବା ଯେଉଁ ମର୍ଯ୍ୟାଦା ଓ ପ୍ରସ୍ଥଗୁଡ଼ାକ ଦେଇ ସେମାନେ ପରସ୍ପରର କଳନା କରୁଛନ୍ତି, ତାହାରି ଅନୁସାରେ ତା'ର ସେହି ମଡ଼େଲ୍‌ଗୁଡ଼ାକ ମଧ୍ୟ ବଦଳିଯାଉଛି । ଅନ୍ୟ ଅନେକଙ୍କ ସହିତ ସାହିତ୍ୟିକ ମଧ୍ୟ ଏହି ମଡ଼େଲ୍ ଗୁଡ଼ିକର ଗଢ଼ା ହେବାରେ ସହଯୋଗ କରୁଛି । ଅନ୍ୟମାନଙ୍କ ସହିତ ଉପନ୍ୟାସକାର ହୁଏତ ଅଧିକ ଘନିଷ୍ଠ ଭାବରେ ତାହା କରୁଛି । ପୁରୁଣା ମଡ଼େଲ୍‌ଗୁଡ଼ାକୁ ଭାଙ୍ଗି ଦେବାରେ ଓ ନୂଆ ମଡ଼େଲ୍ ଗୁଡ଼ାକୁ ଗଢ଼ିବାରେ ସହଯୋଗ କରୁଛି । ଯଦି ଏହି ମଡ଼େଲ୍‌ଗୁଡ଼ାକ ଆମର ଚେତନା ଓ ଆମର ଶ୍ରଦ୍ଧାଟି ଉପରେ ନିର୍ଭର କରୁଥାଏ, ତେବେ ଜଣେ ପୁରୋଗାମୀ ଭାବରେ ସାହିତ୍ୟିକର ମଧ୍ୟ ସେହି ଚେତନା ଓ ସେହି ଶ୍ରଦ୍ଧାକୁ ଚିହ୍ନି ସମସ୍ତଙ୍କ ଲାଗି ତାହାକୁ ଉପଲବ୍ଧ କରାଇ ଆଣିବାରେ ଅବଶ୍ୟ ଏକ ଦାୟିତ୍ୱ ରହିଛି । ଆମ ଉପନ୍ୟାସକାର ଆମ ସମାଜଟିକୁ କେତେ ବେଶୀ ଚିହ୍ନିଛି ?

କେତେ ଅନ୍ତରଙ୍ଗ ଭାବରେ ଚିହ୍ନିଛି ? କେତେ ସହାନୁଭୂତି ସହିତ ଚିହ୍ନିଛି ଓ କେତେ ପୁରୋଦୃଷ୍ଟି ସହିତ ଚିହ୍ନିଛି ? ନା ବଜାରକୁ ସଉଦା କରି ଗଲାପରି ସମାଜକୁ ମଧ ସିଏ ସଉଦା କରି ଯାଇଛି ଓ ନିଜର କାହାଣୀଟା ପାଇଁ ଯେତିକି ଲୋଡ଼ା, କେବଳ ସେତିକି ଦୁହିଁଆଣି ତା'ର ଉପନ୍ୟାସଟି ମଧରେ ଗଚ୍ଛାଇ ରଖିଛି ? ଆମ ଉପନ୍ୟାସକାର ସମାଜ କହିଲେ ସମାଜରେ ବାସ କରୁଥିବା ସମସ୍ତଙ୍କୁ ଚିହ୍ନିଛି ନା କେବଳ ତା' ଗୋଷ୍ଠୀଟିକୁ ଚିହ୍ନିଛି, କେବଳ ତାହାରି ଗୋହରୀଗୁଡ଼ିକୁ ଚିହ୍ନିଛି ? ଫୁଲରୁ ଫୁଲକୁ ଉଡ଼ି ମହୁ ଶୋଷି କୋଟର ଭର୍ତ୍ତି କରୁଥିବା ମହୁମାଛିଗୁଡ଼ାକ ଯେପରି କେବଳ ନିଜର ସମଜାତୀୟମାନଙ୍କୁ ହିଁ ଚିହ୍ନିଥାନ୍ତି, ଆମ ଉପନ୍ୟାସକାର କ'ଣ ସେହିପରି କେବଳ ଆଖଡ଼ାଟିର ଅନ୍ୟ ନାଟୁଆମାନଙ୍କୁ ଚିହ୍ନିଛି ? ଆମ ଉପନ୍ୟାସଗୁଡ଼ାକର ଯାବତୀୟ ମୂଲ୍ୟାୟନ ଓ ମାନ-ନିରୂପଣ ପ୍ରଧାନତଃ ଏହି ପ୍ରଶ୍ନଗୁଡ଼ାକ ଉପରେ ନିର୍ଭର କରୁଛି । ଯେଉଁ ସମାଜର-ଆକର୍ଷଣ-ବିକର୍ଷଣ, କ୍ଷମା-ଅକ୍ଷମା ଏବଂ ପ୍ରେମ ଓ ଅପ୍ରେମଗୁଡ଼ାକୁ ନେଇ ଆମ ଉପନ୍ୟାସ-ଲେଖକ ତା' କାହାଣୀର ଭରଣା କରୁଛି, ସେଗୁଡ଼ାକୁ ସେ କେତେ ସଂକୀର୍ଣ୍ଣ ଅଥବା କେତେ ପ୍ରଶସ୍ତ ଏକ ପରିବେଶ ମଧରେ ଦେଖିବାକୁ ସମର୍ଥ ହେଉଛି ? ସ୍ଥାନୀୟଗୁଡ଼ାକୁ ଏକ ସାର୍ବଜନୀନ ରୂପ ଦେବାରେ ତା'ର ପ୍ରକୃତରେ କି ମତଲବ ରହିଛି ଅଥବା ଆଦୌ କୌଣସି ମତଲବ ରହିଛି କି ନାହିଁ ? କାମନାଗୁଡ଼ାକୁ ପ୍ରେମ ବୋଲି କହିବାର, ତୁଚ୍ଛା ଆସକ୍ତିଗୁଡ଼ାକୁ ଅନୁରକ୍ତି ବୋଲି କହିବାର ଓ ଜ୍ୱାଳାଗୁଡ଼ାକୁହିଁ ଦୁଃଖ ବୋଲି କହିବାର ଅଧିକାରଟିକୁ ସେ ପ୍ରକୃତରେ କେଉଁଠାରୁ ପାଇଛି ? ବଜାରରୁ ପାଇଛି, ତା' ଆପଣା ଭିତରୁ ପାଇଛି ନା ଆଉ କେଉଁଠାରୁ ପାଇଛି ? ଅଥବା, ଯୁଗର ରୁଚି ବର୍ତ୍ତମାନ କେବଳ ଏହି ଗୁଡ଼ାକୁ ହିଁ ଚାହୁଛି ବୋଲି ଯଦି ସିଏ କହୁଥାଏ, ତେବେ ସିଏ ବି କ'ଣ ସେହି ତଥାକଥିତ ଯୁଗଟି ସହିତ ନିଜକୁ ନିତାନ୍ତ ଏକାତ୍ମକ କରି ପକାଇଛି କି ? ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ଭାଷାର ଭାଗ୍ୟ ଭିତରେ କୌଣସି ଉପନ୍ୟାସକାରର ସ୍ଥାନ ନିର୍ଦ୍ଧାରଣ କରିବାକୁ ବସିବା ମାତ୍ରକେ ହିଁ ଆମକୁ ଏହି ପ୍ରଶ୍ନଗୁଡ଼ିକର ସମ୍ମୁଖୀନ ହେବାକୁ ହିଁ ପଡ଼ିବ ।

ଆମ ଉପନ୍ୟାସଗୁଡ଼ିକୁ ଆମେ ଅନେକେ ଗୋଟିଏ ଗୋଟିଏ ପ୍ରେମକାହାଣୀ ବୋଲି ହିଁ ଭାବିଥାଉ । ଏହି ପ୍ରେମର ଅନେକ ସଂଜ୍ଞା ରହିଛି, କାରଣ ଏହାର ଅନେକ ସୋପାନ ମଧ ରହିଛି । "ଯଦି ପାଇଥାନ୍ତି ଚନ୍ଦ୍ରବଦନୀକୁ କରିଥାନ୍ତି ଗଳାମାଳା"ରେ ଯେଉଁ ପ୍ରେମ-ରାଗର ଅଭିବ୍ୟକ୍ତି ହୋଇଛି ବା ଯେଉଁ ପ୍ରେମ-ଚେତନାର ଅବତାରଣା କରାଯାଇଛି, ଥମାସ୍ ହାର୍ଡ଼ିଙ୍କର Tess ଉପନ୍ୟାସରେ ଆମେ ସେହି ଚେତନାର ପରମିଟ୍‌ଟି ନେଇ ପଶିବାକୁ ଚେଷ୍ଟା କଲେ ଆମକୁ ନିଶ୍ଚୟ ହତାଶ ହେବାକୁ ପଡ଼ିଥାଏ । ଆପଣାକୁ ସମ୍ପୂର୍ଣ୍ଣ ରୂପେ ଦେଇଦେବାରେ ଯେଉଁ ପ୍ରେମ ପ୍ରକଟ କରାଯାଏ, ଦେଖିଲା ମାତ୍ରକେ

ଗଳାମାଳା କରିବାକୁ ଇଚ୍ଛା କରୁଥିବା ପ୍ରେମ ତାହାକୁ କଦାପି ପ୍ରେମ ବୋଲି ହିଁ କହିବ ନାହିଁ । ଗୁଡ଼ାଏ ଆବୋରି ବସିବା ବି ଗୋଟାଏ ପ୍ରକାରର ପ୍ରେମ, ଗିଳି ପକାଇବା ବି ଗୋଟାଏ ପ୍ରେମ, ଆଉ କିଛି କରିବା ଲାଗି ବାଟ ନପାଇ ମୁଣ୍ଡା ଆଙ୍ଗୁଠିଟାକୁ ପାଟି ଭିତରେ ପୂରାଇ ଅତି ସରାଗରେ ନଖ କାମୁଡ଼ିବା ବି ସେହିପରି ଆଉଗୋଟାଏ ପ୍ରକାରର ପ୍ରେମ । ଆତୁର ହେବା ବି ଗୋଟାଏ ପ୍ରକାରର ପ୍ରେମର ନିଦର୍ଶନ; ମୁଖା ପିନ୍ଧି, ମୋତେ କେହି ହେଲେ ଦେଖିପାରୁ ନାହାନ୍ତି ବୋଲି ଭିତରେ ଭାରି ଉଲ୍ଲସିତ ହୋଇ ନାଚିବାଟା ବି କ'ଣ ପ୍ରେମ ? ଏହି ସବୁଗୁଡ଼ାକ ହେଉଛି ପ୍ରେମ, ଆପଣା ଆପଣା ସ୍ତରର ପ୍ରେମ, ଏକ ନିର୍ଦ୍ଦିଷ୍ଟ ପ୍ରେମ-ଚେତନାର ବା ବିଶ୍ୱ-ଚେତନାର ଦ୍ୟୋତକ ହୋଇ ରହିଥିବା ପ୍ରେମ । ପ୍ରେମର ଏହି ଅପାର ଗହନ ଭିତରେ ପଶି ଉପନ୍ୟାସକାର କ'ଣ ଆମ ପାଇଁ ଜଣେ ଫଟୋଗ୍ରାଫର୍ ପରି କାମ କରିବ ଓ ତାହାକୁ ଏକ ବାସ୍ତବଧର୍ମୀ ବୃତ୍ତି ବୋଲି କହିବ ? ଉପନ୍ୟାସକାର ତ ନିଜେ ବି କୋଉଠି ପ୍ରେମ କରିଥିବ, କୋଉଠି ମହକ ବାରିଥିବ, କୋଉଠି ଅନ୍ଧାର ଭିତରେ କେତେ କ'ଣ ଫରଚା ହୋଇଯିବା ପରି ଓ ଆନତ ହୋଇ ଆସିବା ପରି ଅନୁଭବ କରିଥିବ । କୋଉଠି ତ ସେ ଗୋଟାସୁଦ୍ଧା ସତେଅବା କାହାରି ହୋଇ ଆସୁଥିବା ପରି ଅନୁଭବ କରିଥିବ;– କୋଉଠି ହଠାତ୍ ପହଞ୍ଚିଯାଇ ତାକୁ ସବୁକିଛି ସତେ ଅବା ଭାରି ଭଲ ଲାଗିଥିବ, ସମସ୍ତେ ଭାରି ଆପଣାର ବୋଲି ଲାଗିଥିବେ, ସବୁ କିଛି ସବୁବେଳେ ରହିଆସିଥିବା ପରି ବି ମନେ ହୋଇଥିବ, ତେଣୁ ସଂସାରରେ ପ୍ରେମ ବୋଲି ସିଏ ଯେଉଁଠି ଯାହା ଦେଖୁ ପଛକେ, ଆପଣାର ନିଜସ୍ୱ ଅନୁଭବଗୁଡ଼ିକୁ ଦେଇ ହିଁ ସିଏ ସବୁ ଦେଖିବ । ସିଏ ନିଜେ ଚେତନାର ଯେଉଁ ସ୍ତରରେ ଥିବ, ସେହି ସ୍ତରରେ ହିଁ ସବୁ କିଛିକୁ ଚିହ୍ନିବ । ଚିହ୍ନିବାର ଏବଂ ଚିହ୍ନା ପଡ଼ିବାର ଆଉ ଅନ୍ୟ କୌଣସି ପ୍ରକାର ବାଟ ନାହିଁ । ଜଣେ ଉପନ୍ୟାସକାର ବି ଠିକ୍ ସେହି ରୀତିରେ ଚିହ୍ନିବ, ଠିକ୍ ସେହି ରୀତିରେ ଚିହ୍ନା ଦେବ । ସିଏ ଠିକ୍ ଏହି ରୀତିରେ ମୂଲ୍ୟ ଦେବ ।

ଆମେ ଯବନକୁ ସବୁଠାରେ ଦେଖିବାକୁ ପାଇବା; ଲେଖକ ଭିତରେ ବି ଦେଖିବାକୁ ପାଇବା । ପାଠକ ଭିତରେ ବି ଦେଖିବାକୁ ପାଇବା । ଯବନ ଆତୁରତାଗୁଡ଼ାକୁ କଦାପି ପ୍ରେମ ବୋଲି ଭୁଲ୍ କରୁ ନଥିବ । ସିଏ ମୁଖାଗୁଡ଼ାକୁ ମୁହଁ ବୋଲି ସ୍ୱୀକାର କରୁ ନଥିବ । ଯେକୌଣସି ଉପନ୍ୟାସ ଦେଇ ଯବନ ଉପନ୍ୟାସକାରକୁ ହିଁ ଚିହ୍ନିବା ଲାଗି ପ୍ରୟାସ କରୁଥିବ, ତା'ର ପ୍ରସ୍ଥଗୁଡ଼ିକରୁ ହିଁ ସିଏ ତା'ର କଳନା କରୁଥିବ ତାର ବିସ୍ତାରଗୁଡ଼ିକରୁ ହିଁ ତା'ର ଅସଲ ରଙ୍ଗଟିର ନିରୂପଣ କରୁଥିବ । ମୋ ଭାଷାରେ ଅମୁକ ଉପନ୍ୟାସକାର ସବୁଠାରୁ ଅଧିକ ମୋଟା ଉପନ୍ୟାସ ଲେଖିଛନ୍ତି ବୋଲି ସିଏ ସେଇଥିରେ ହିଁ ଆଦୌ ବିଗଳିତ ହୋଇ ପଡ଼ିବ ନାହିଁ । ପଡ଼ିଶା ଅମୁକ ଭାଷାର ତୁଳନାରେ ମୋ

ଭାଷାରେ ଅଧିକ ସଂଖ୍ୟାରେ ଉପନ୍ୟାସ ଲେଖା ହୋଇଛି ବୋଲି ମଧ୍ୟ ସିଏ ଉତ୍‌ଫୁଲ୍ଲ ହୋଇ ଉଠିବ ନାହିଁ । ଉପନ୍ୟାସଗୁଡ଼ାକୁ ବି ଏବେ ଅନେକ ସମୟରେ ତୁଚ୍ଛା ଶୈଳୀ ଦେଇ ବିଚାର କରାଗଲାଣି । ପ୍ରୟୋଗବାଦକୁ ପ୍ରବେଶ-ଶ୍ରଦ୍ଧାର ଏକ ସ୍ଥାନାପନ୍ନ ରୂପେ ଗ୍ରହଣ କରାଗଲାଣି । ଏହିସବୁ ଧନ୍ଦାରେ ପଶିବାକୁ ଯବନ ଏବେ ବି ରାଜି ହେବନାହିଁ । ସେ ଏହି ସବୁ ପଂକ୍ତିରୁ ଅଲଗା ହୋଇ ରହିବ, ଏସବୁ ଘରେ ସେ ତଥାପି ଯବନ ହୋଇ ରହିବ । ନିଜର ଭାଷା ହୋଇଥିଲେ ବି ସିଏ ସେଠି ଯବନ ହୋଇ ରହିବ, ନିଜର ଦେଶ ହେଲେ ବି ଯବନ ହୋଇ ରହିବ, ନିଜର ଖାସ୍ ଅଗଣାଟା ହେଲେ ବି ଯବନ ହୋଇ ରହିବ ।

ଏହି ଯୁଗ ଗଦ୍ୟର ଯୁଗ, ଏହି କଥାଟିକୁ ଯବନ ଭଲ କରି ଜାଣିଛି । ଏହି ଯୁଗ ଉପନ୍ୟାସର ଯୁଗ, ଏକଥା ବି ଯବନ ଭଲ କରି ଜାଣିଛି । ଏହି ଯୁଗରେ ପଦ୍ୟ ଅପେକ୍ଷା ଅଧିକ ଗଦ୍ୟ ଲେଖା ହେଉଛି ବୋଲି ଯବନ ଏହାକୁ ଗଦ୍ୟର ଯୁଗ ବୋଲି କହେ ନାହିଁ । ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ଏହି ଯୁଗରେ ଉପନ୍ୟାସ ହିଁ ଅଧିକ ସଂଖ୍ୟାରେ ଲେଖା ହେଉଛି ବୋଲି ଯବନ ଏହାକୁ ଉପନ୍ୟାସର ଯୁଗ ବୋଲି କହେ ନାହିଁ । ଯେଉଁ ଅନ୍ୟ ବିଶ୍ୱାସ, ଅନ୍ୟ ଭୂମି ଓ ଅନ୍ୟ ସମଗ୍ରତା ଅଥବା ବାସ୍ତବତା ଭିତରେ ଜୀବନର ଆବିଷ୍କାର କରିବାକୁ ଯାଇ ଏହି ଯୁଗ ପଦ୍ୟକୁ ଛାଡ଼ି ଗଦ୍ୟକୁ ଧରିଛି, ଆଳଙ୍କାରିକତାକୁ ଛାଡ଼ି ସତ୍ୟକୁ ହିଁ ଅଧିକ ମନ କରିଛି, ସେହି ବିଶ୍ୱାସ, ଭୂମି ଓ ସମଗ୍ରତାଟି ପାଇଁ ଯବନ ଏହି ଯୁଗକୁ ଗଦ୍ୟର ଯୁଗ ବୋଲି କହେ । ଆପଣାର ଏକ ସ୍ୱତନ୍ତ୍ର ପ୍ରକୋଷ୍ଠକୁ ଛାଡ଼ି ଯେତେବେଳେ କାବ୍ୟଦୃଷ୍ଟି ଏହି ସମୁଦାୟ ଜୀବନଟାକୁ ହିଁ ଘର ବୋଲି ଆବୋରି ନିଏ, ସେତିକିବେଳେ ହିଁ ପଦ୍ୟ ଗଦ୍ୟ ହେବାର ଶ୍ରଦ୍ଧା ଅର୍ଜନ କରେ । ଠିକ୍ ସେହିପରି, ଯେତେବେଳେ କାହାଣୀ ଗୁଡ଼ାକ ସମୁଦାୟ ଜୀବନର ସମଗ୍ର ବର୍ଣ୍ଣରେ ଉକୁଟି ଉଠନ୍ତି, ଯେତେବେଳେ ବାସ୍ତବଗୁଡ଼ାକ କେତେ ଆକାର ଓ କେତେ ପ୍ରସ୍ଥ ଧାରଣ କରି ଓ ଆଗକୁ ବାଟ କଢ଼ାଇ ନେବାର ସାହସ ନେଇ ଅବତୀର୍ଣ୍ଣ ହୋଇ ଆସନ୍ତି, ଯବନ ସେତିକିବେଳେ ଯୁଗଟିକୁ ଉପନ୍ୟାସର ଯୁଗ ବୋଲି କହେ । ଉପନ୍ୟାସ ଭିତରେ ସିଏ କେବଳ ଏକ ବର୍ଣ୍ଣନା ଖୋଜିବାକୁ ଯାଏ ନାହିଁ, କେବଳ ବିଶ୍ଳେଷଣ ବି ଖୋଜିବାକୁ ଯାଏ ନାହିଁ,– ଉପନ୍ୟାସକାରର ବିଶ୍ୱାସରୁ ହିଁ ସିଏ ତା'ର ଉପନ୍ୟାସକୁ ବିଚାର କରେ । ଶ୍ରଦ୍ଧାର କେଉଁ ସୋପାନରେ ଜୀବନ ସହିତ କେତେ ଅନ୍ତରଙ୍ଗତା ଅର୍ଜନ କରି ଉପନ୍ୟାସକାର ତା'ର ଉପନ୍ୟାସଟିକୁ ଲେଖି ପାରିଛି, ଯବନ ସେଇଥିରୁ ହିଁ କୌଣସି ଉପନ୍ୟାସର ବିଚାର କରିବାକୁ ପ୍ରବୃତ୍ତ ହୁଏ । ଅନେକ ସମୟରେ କୌଣସି ବିଶ୍ୱାସ ନ ଥାଇ ମଧ୍ୟ ଉପନ୍ୟାସ ଲେଖାଯାଇପାରେ, ଘଡ଼ିଏ ମାତି ବା ଘଡ଼ିଏ ତାତି ଘଡ଼ିଏ ଭୁଲି ଯିବାକୁ ମଧ୍ୟ

ଉପନ୍ୟାସର ପାଠ ସମ୍ଭବ ହୋଇ ପାରେ । ଏସବୁ ସବୁ ଯୁଗରେ ଥିଲା–ଏପରି ଉପନ୍ୟାସ ଥିଲା, ଏଭଳି ପାଠକମାନେ ମଧ୍ୟ ରହିଥିଲେ; ମାତ୍ର ଏଗୁଡ଼ାକୁ ନେଇ ବାହାଦୁରୀ କରିବା ପାଇଁ ଯବନ ଆଦୌ କୌଣସି କାରଣ ଦେଖିପାରେ ନାହିଁ । କଳାଶକ୍ତିକୁ କାଳିସୀ-ଶକ୍ତି ବୋଲି ମାନୁଥିବା କଥାକାରମାନେ ଋତୁ ଅନୁସାରେ ଉପନ୍ୟାସ ବାଢ଼ି ଥୋଇ ଦେଇ ପାରନ୍ତି;– ଥରଥରକେ ଭଳି ଭଳି ଭୂତର ବଶ ହୋଇ ସେମାନେ ଅନୁର୍ବର କେତେ ପ୍ରହରକୁ ଉର୍ବର କରି ଦେଖାଇ ଦିଅନ୍ତି । କିନ୍ତୁ ଯବନ ଏକ ମନ୍ଦିରଚୂଡ଼ା ଉପରେ ନିଘା ରଖିଥାଏ, ସିଏ ଅନ୍ୟ ପାହାଚଗୁଡ଼ାକରେ ବାଟ ଚାଲିବ ବୋଲି ଆଣ୍ଠ କରି ବାହାରିଥାଏ । ସେହି ବାଟରେ ଯାଉଥିବା ବେଳେ ଯେଉଁ ଉପନ୍ୟାସକାରମାନଙ୍କ ସହିତ ତା'ର ଭେଟ ହୁଏ, ସେହି ସମଧର୍ମୀମାନଙ୍କୁ ହିଁ ସେ ଚିହ୍ନେ । ସଫଳମାନଙ୍କୁ ନ ଚିହ୍ନି ସମଧର୍ମୀମାନଙ୍କୁ ଚିହ୍ନେ । ଯାହାର କୌଣସି ଏକ ଧର୍ମ ଅଛି, ସିଏ ହିଁ ଚିହ୍ନେ ।

ତା୦୭ ।୧୦ ।୧୯୭୬ରିଖ



# ସତର

ଆମେ ଅଛୁ, ଅଥଚ ଆମକୁ କେହି ଜାଣିଲେ ନାହିଁ । ଆମର ପ୍ରତିଭା ଅଛି ଅଥଚ ଆମର ପ୍ରତିଭାକୁ କେହି ଚିହ୍ନିଲେ ନାହିଁ । ଅର୍ଥାତ୍, ଆହୁରି ଫିଟାଇ କହିଲେ, ଆମେ ଆମର ପ୍ରତିଭାଗୁଡ଼ାକୁ ଯଥାର୍ଥ ଭାବରେ ଚିହ୍ନାଇ ପାରିଲୁ ନାହିଁ । ଫୁଲଗୁଡ଼ାକ ସତେଅବା ବଣରେ ଫୁଟି ସେହି ବଣରେ ହିଁ ଝରିପଡ଼ିଲା । ସେଗୁଡ଼ାକର ବାସକୁ କେହିହେଲେ ଜାଣିଲେ ନାହିଁ । ଓଡ଼ିଶା କହିଲେ ଅନେକେ ପ୍ରାୟ ଏହିପରି ଏକ ବଣର କଳ୍ପନା କରିଥାନ୍ତି । ଓଡ଼ିଶାରେ ଗୁଣ ଅଛି, ମାତ୍ର ଗୁଣ ଚିହ୍ନିବାଲାଗି ଗୁଣିଆ ନାହାନ୍ତି । ଓଡ଼ିଶାରେ ହାଟ ହାଟ ଗୋରୁ ଅଛନ୍ତି, ମାତ୍ର ସେମାନଙ୍କୁ କିଣି ନେବାର ଲୋକ ନାହାନ୍ତି । ଓଡ଼ିଶାରେ ମାଲ୍ୟାଣୀ ଅଛନ୍ତି, ମାତ୍ର ଗରହାକ ନାହାନ୍ତି । ମାଲ୍ ଅଛି, କିନ୍ତୁ ବଜାର ନାହିଁ । ତେଣୁ ମାଲ୍‌ଗୁଡ଼ାକ ଖାଲି ଖତରା ହୋଇ ଯାଉଛି । ଏଠି ଚଢ଼େଇମାନେ ମେଳା ମେଳା ହେଉଛନ୍ତି, ମାତ୍ର ସେମାନଙ୍କୁ ନଳ ଖଞ୍ଜି ଧରିବାଲାଗି ଚିହ୍ନରା କେଳା କେହି ନାହାନ୍ତି ।

ଏସବୁ କଥା ଅନେକ ସମୟରେ ଆମରି ଭିତରେ ଶୁଣିବାକୁ ମିଳିଥାଏ । ଆମେ ଯେଉଁମାନେ ଅଭିଯୋଗ କରିବାକୁ ଏକ ଅତ୍ୟନ୍ତ ଲାଭଦାୟକ ଗୁଣ ବୋଲି ବିଶ୍ୱାସ କରି ଶିଖିଥାଉ, ଏହି ଅଭିଯୋଗ ଗୁଡ଼ାକର ଆବରଣ ତଳେହିଁ ଆମେ ଯେଉଁମାନେ ଆମର ଅଯୋଗ୍ୟତା, ଅତୃପ୍ତି ଓ ତା'ସହିତ ହୁଏତ ଆମର ସ୍ଥୂଳ ଆଗ୍ରହଗୁଡ଼ାକୁ ଢ଼ାଙ୍କିକରି ରଖିବାକୁ ଯେକୌଣସି କାରଣରୁ ଗୋଟାଏ ଫେଶନ ବୋଲି ଧରି ନେଇଥାଉ, ଆମେ ଯେଉଁମାନେ କମ୍ ଦେଉ ଓ ଅଧିକ ଇଚ୍ଛା କରୁ, ସେହିମାନେ ହିଁ ଅଧିକାଂଶ ସମୟରେ ନିଜ ଭିତରେ ଏହିସବୁ କଥା ପକାଇଥାଉ । ଦୁଃଖସୁଖ କହିଲେ ଆମେ ସାଧାରଣ ଜୀବନରେ ପ୍ରାୟ ଏହି କଥାଗୁଡ଼ାକୁ ହିଁ ବୁଝୁ ଏବଂ ଏହାଦ୍ୱାରା ନିଜକୁ ହିଁ ସବୁଠାରୁ ଅଧିକ ପରିମାଣରେ ଧରା ପକାଇ ଦେଇଥାଉ ।

ସମ୍ଭବତଃ ସାହିତ୍ୟିକ ଓ ଶିକ୍ଷୀମାନେ ହିଁ ଓଡ଼ିଶାରେ ସବୁଠାରୁ ଅଧିକ ପରିମାଣରେ ଏହି ଅଭିଯୋଗଗୁଡ଼ାକୁ କରିଥାନ୍ତି । ଅଭିଯୋଗର ଆବରଣ ତଳେ ଆପଣାର ଅତୃପ୍ତି

ଗୁଡ଼ାକୁ ସତେଅବା ସବୁଠାରୁ ଅଧିକ ପରିମାଣରେ ଢ଼ାଙ୍କି ରଖିବାର ପ୍ରୟାସ କରୁଥାନ୍ତି । ଏହି ସାହିତ୍ୟିକ ଓ ଶିଳ୍ପୀମାନେ ହିଁ ସବୁଠାରୁ ଅଧିକ ଅଭିଯୋଗ କରନ୍ତି, ସବୁଠାରୁ ଅଧିକ ମୁଣ୍ଡ କୋଡ଼ନ୍ତି ଓ ଆପଣାର ଭାଗ୍ୟଟାକୁ ସବୁଠାରୁ ଅଧିକ ପରିମାଣରେ ନିନ୍ଦିବାରେ ଲାଗିଥାନ୍ତି । ଆମେ ଭଲ ପାଇଲୁ, ଅଥଚ ଆମ ଭଲ ପାଇବାଟାକୁ କେହି ସ୍ୱୀକୃତି ଦେଲେ ନାହିଁ – ଆମ ଆଡ଼କୁ କେହି ଅନାଇଲେ ବି ନାହିଁ; ଆମେ ଏତେ ସଜବାଜ ହୋଇ ଗୋଡ଼ରେ ନୂପୁର ଓ ମୁଣ୍ଡରେ ଗଭା ଲଗାଇ ଆମ ନିକାଞ୍ଚନ ପଥରେ ବାହାରିଲୁ, ଅଥଚ ଆମକୁ କେହି ହେଲେ ଦେଖିବାକୁ ଆସିଲେ ନାହିଁ । ଅଥବା, ଯେଉଁ କେତେଜଣ ଦେଖିବାକୁ ଆସିଲେ, ସେମାନଙ୍କ ହାତରେ ଫଟା ପାହୁଲାଟାଏ ବି ନଥିଲା । ଆମେ କଳସ ସଜାଇଲୁ, ପୀଢ଼ା ଉପରେ ବସିଲୁ; ମାତ୍ର ଆମର ବନ୍ଦାପନା କରିବାଲାଗି ଆମର ଏଠି କାହାରି ପାଦ ପଡ଼ିଲା ନାହିଁ । ଆମେ ସାହିତ୍ୟ ଲେଖିଲୁ, ଛବି ଆଙ୍କିଲୁ; ମାତ୍ର କେହି ଆଁମକୁ କବି ବୋଲି କହିଲେ ନାହିଁ ଅଥବା ଶିଳ୍ପୀ ବୋଲି ସ୍ୱୀକୃତି ଦେଲେ ନାହିଁ । ଏଭଳି ଏକ ପରିସ୍ଥିତିରେ ଏହି ଭୂଇଁରେ ସାହିତ୍ୟ ଏବଂ କଳାର ପ୍ରକୃତରେ ଯେ କି ଦଶା ହେବ, ସେକଥା ସମସ୍ତେ ବେଶ୍ ଅନୁମାନ କରି ପାରିବେ । ଏହି ଓଡ଼ିଶା କାଳେ କାଳେ ଶିଳ୍ପୀମାନଙ୍କର ଦେଶ ହୋଇ ରହି ଆସିଥିଲା, କାବ୍ୟ ଓ ଶାସ୍ତ୍ରର ଦେଶ ହୋଇ ରହିଥିଲା; ଏହି ଦେଶର ସାହିତ୍ୟିକ ଓ ଶିଳ୍ପୀମାନେ ସାଧବ ହୋଇ କେତେ କୁଆଡ଼େ ଯାଉଥିଲେ ଓ କେତେ କୁଆଡୁ ସତେଅବା ବୋଇତ ବୋଝାଇ ସ୍ୱୀକୃତି ଓ ଶିରିପାମାନ ନେଇ ଆସୁଥିଲେ । ସେହି ଦେଶରେ ପୁଣି ଏଭଳି ଦଶା ହେଲା – ସାହିତ୍ୟ ଏବଂ ଚାରୁକଳାର ସନ୍ତାନମାନଙ୍କୁ ସେଠାରେ ପୁଣି ଏତେ ଦଶା ଭୋଗିବାକୁ ପଡ଼ିଲା ।

ତେଣୁ ଶିଳ୍ପ ଥାଉ, ସାହିତ୍ୟ ଥାଉ । ଚାଲ ଡିଣ୍ଡିମ ପିଟିବା । ଡିଣ୍ଡିମ ପିଟିଲେ ଆମ ପାଖରେ ସାହିତ୍ୟ ବା ଶିଳ୍ପ ବୋଲି କିଛି ନ ଥିଲେ ମଧ୍ୟ ଆମକୁ ସମସ୍ତେ ତଥାପି ସାହିତ୍ୟିକ ବୋଲି କହିବେ, ଶିଳ୍ପୀ ବୋଲି କହିବେ । କିନ୍ତୁ ଡିଣ୍ଡିମ ପିଟା ନ ହେଲେ ଆମେ ଯେତେ ଯାହା କଲେ ମଧ୍ୟ ଆମକୁ କେହି ପଚାରି ମଧ୍ୟ ଆସିବେ ନାହିଁ । ସବୁ ସଭାତକ ସିଆଡ଼େ ହେଉଥିବ, ସବୁ ପ୍ରଦର୍ଶନୀଗୁଡ଼ାକ ସିଆଡ଼େ ହୋଇ ସିଆଡ଼େ ସରି ଯାଉଥିବ ଏବଂ ଏଣେ ଆମେ ଆପଣା ଘର ଭିତରେ ରହି ସାହିତ୍ୟ ତଥା ଶିଳ୍ପ ନାମରେ ହରିଙ୍କୁ ଭଜିବାରେ ଲାଗିଥିବା । ତେଣୁ, ଚାଲ ଡିଣ୍ଡିମ ପିଟିବା । ଡିଣ୍ଡିମ ପିଟିବା ଲାଗି ଯେଉଁ ସଂଗଠନଗୁଡ଼ାକ ଆଗ ଦରକାର, ଆମେ ଏଥର ସେହି ସଂଗଠନଗୁଡ଼ାକୁ ମନ କରିବା । ଯେଉଁମାନଙ୍କ ଦ୍ୱାରା କାମ ହୋଇ ପାରିବ, ଆଗ ସେହିମାନଙ୍କ ପାଖକୁ ଯିବା, ସେହିମାନଙ୍କର ସାଥୁଆ ହେବା ଏବଂ ସେମାନଙ୍କର ଚିତ୍ତ ପ୍ରସନ୍ନ କରିବା । ଅର୍ଥାତ୍, ଅନ୍ୟ ଭାଷାରେ କହିଲେ, ଚାଲ, ଆମେ ସେହିମାନଙ୍କ ପରି ପାଜି ହେବା, ନେଇ ଆଣି

ଥୋଇ ଜାଣିବା । ଆମ ସଂଗଠନଗୁଡ଼ାକରେ ଗୋଟିଏ ଗୋଟିଏ ସାହିତ୍ୟିକ ସଂଗଠନ ବୋଲାଇବା ଲାଗି ପ୍ରାୟ କିଛିହେଲେ ନଥାଉ ପଛକେ, ମାତ୍ର ଡିଣ୍ଡିମ ପିଟାଯାଇ ପାରିବାର ଯାବତୀୟ ସରଞ୍ଜାମ ସେଥିରେ ମହଜୁଦ ରହିଥିବା ଏକାନ୍ତ ଆବଶ୍ୟକ । ଅର୍ଥାତ୍ ସେଥିରେ ଡିଣ୍ଡିମ ରହିଥିବ, ସେଗୁଡ଼ାକୁ ରଖି ବଜାଇବା ଲାଗି ଏଡ଼େ ଏଡ଼େ ଭାଡ଼ି ବା ମଞ୍ଚ ତିଆରି ହୋଇଥିବ, କହି ଜାଣିବା-ବାଲାମାନେ ରହିଥିବେ । ସେହି ଘରେ ମାଳ ମାଳ ଫଟୋ ଟଙ୍ଗା ହୋଇ ରହିଥିବ । ସେହି ଘରର ଗମ୍ବୁଜ ଉପରେ ମାଳ ମାଳ ଆଲୁଅ ଘଡ଼ିଏ ରାତି ପର୍ଯ୍ୟନ୍ତ ଜଳୁଥିବ । ଆମେ ସମସ୍ତେ ଯଥାବିଧି ଅଭ୍ୟର୍ଥନା କରି ଜାଣିଥିବା, କେଉଁମାନଙ୍କୁ ଡ଼ାକିଲେ ଅଭ୍ୟର୍ଥନା ଓ ଆପ୍ୟାୟନ ଗୁଡ଼ାକ ଅତ୍ୟନ୍ତ ଉର୍ବର ବୋଲି ପ୍ରମାଣିତ ହେବ, ଆମକୁ ସେହି ବିଦ୍ୟାଗୁଡ଼ାକ ମଧ୍ୟ ନିଖୁଣ ଭାବରେ ଜଣାଥିବ । ଯେଉଁମାନେ ଚାଟୁବାକ୍ୟ ଶୁଣନ୍ତି ଚାରୁ ବାକ୍ୟ ଦ୍ୱାରା ଆପ୍ୟାୟିତ ହୋଇ ପାରନ୍ତି, ସିଧା ସେମାନଙ୍କ ପାଖରେ ଯାଇ ପହଞ୍ଚି ପାରିବାକୁ ଆବଶ୍ୟକ ବାଟଗୁଡ଼ାକ ଆମକୁ ପୂରାପୂରି ମାଲୁମ ଥିବ—ତେବେ ଯାଇ ହେବ ।

ଓଡ଼ିଶାରେ ଯାହା କିଛି ହେଉଛି, ସବୁ କେବଳ ଭୁବନେଶ୍ୱରଠାରେ ହେଉଛି । ଅର୍ଥାତ୍ ଭୁବନେଶ୍ୱରରୁ ହିଁ ସବୁକିଛି ହେଉଛି । ଭୁବନେଶ୍ୱରରୁ ବରାଦ ହେଲେ ଯାଇ ପାନପୋଷ ଅଥବା ପାପଡ଼ାହାଣ୍ଡିରେ ସାହିତ୍ୟସଭା ହୋଇ ପାରୁଛି । ଭୁବନେଶ୍ୱରରୁ ଆଜ୍ଞାପତ୍ର ଗଲେ ଯାଇ ଆଉ କେଉଁଠାରେ କଳା, ସାହିତ୍ୟ ଅଥବା ସଂସ୍କୃତି ଲାଗି ଖଣ୍ଡେ ପ୍ଲଟ୍ ମିଳି ପାରୁଛି । ତେଣୁ ଚାଲ, ନିଶ୍ଚିତ ଭାବରେ ଭୁବନେଶ୍ୱର ଚାଲ, ନିଶ୍ଚିନ୍ତ ହୋଇ ଭୁବନେଶ୍ୱର ଚାଲ । ତୁମର ସାଧନା ଫାଧନା ଛାଡ଼ିଦିଅ, ସେଠି ତୁମର ସାଧନା ବୁଝିବା ଲୋକ କେହି ନାହାନ୍ତି । ସାଧନା ନ କରି ଯଦି ସାଧନାର ଗଛରେ ବାଇଗଣ, ଗୋଲଆଳୁ ଓ ସାରୁ ସବୁ କିଛି ଫଳି ପାରିଲା ଓ ତରାଟ ଆଉ ଟଗର ସବୁ ଫୁଟି ପାରିଲା, ତେବେ ତୁମେ ସାଧନା ପାଖରେ ତଥାପି ପଡ଼ି ରହିଥିବ କାହିଁକି ? ଆଉ ବୋକା ବନି ରହିଥିବ କାହିଁକି ? ଏବଂ ଏମିତି ରହୁ ରହୁ ତୁମର ଅବସ୍ଥା ଆଖର ଦିନେ ଏପରି ହୋଇଯିବ ଯେ ସେତେବେଳେ ତୁମ ଲାଗି ମୁହଁ ଦେଖାଇବା ସକାଶେ ମଧ୍ୟ ଆଉ ରାହା ରହିବ ନାହିଁ । ତେଣୁ ଆମର ଏହି ଭୂମିରେ ବର୍ତ୍ତମାନ କେତେ ସାହିତ୍ୟିକ, ସୁଲେଖକ, ଶିଳ୍ପୀ ଓ କଳାକାର ରହିଛନ୍ତି ସତ, ମାତ୍ର ସେମାନଙ୍କର ମୁହଁ ନାହିଁ ବୋଲି, ଅର୍ଥାତ୍ ସେମାନେ ସଭାଘର ଅଥବା ଭୁବନେଶ୍ୱର ଯାଏ ଆସି ନାହାନ୍ତି ବୋଲି ସେମାନଙ୍କର ଗୁଣ, ଯୋଗ୍ୟତା ଓ ପ୍ରତିଭାଗୁଡ଼ାକ ଖାଲି ଡ଼ୋରବନ୍ଧା ପୋଥି ପରି ହୋଇ ରହିଯାଉଛି ଏବଂ, ଆହୁରି କେତେକଙ୍କ ପାଖରେ ପୋଥି ବୋଲି କହିବା ଲାଗି ହୁଏତ ଆଦୌ କିଛି ନଥିଲେ ମଧ୍ୟ ଋଦ୍ଧିମନ୍ତ ମୁହଁଟାଏ ରହିଛି ବୋଲି ସେମାନେ ତଥାପି କେତେ ଦରବାରରେ ଥାନ ପାଇ

ଯାଉଛନ୍ତି, କେତେ ଉଚ୍ଚ ମଥାନରୁ ଡ଼ାକରା ପାଉଛନ୍ତି, ସଙ୍ଖୁଳାଇ ହୋଇ ପାରୁଛନ୍ତି; ସେମାନେ ପ୍ରକୃତରେ ଯାହା ନୁହନ୍ତି ତାହାରି ଅଧିକାର-ପତ୍ର ଲାଭକରି ପାରୁଛନ୍ତି । ସଭାରେ ବସିଥିବା ସମସ୍ତେ ଖାଲି ଦାନ୍ତ ନିକୁଟି ଅବଲୋକନ କରିବାରେ ଲାଗିଛନ୍ତି, ମୋଟେ କିଛି ବୁଝୁନଥିଲେ ମଧ୍ୟ ତଥାପି ସବୁକିଛି ବୁଝିଗଲା ପରି ଅଭିନୟ କରୁଛନ୍ତି ଏବଂ ଏଇଟାକୁ ହିଁ ଯୁଗ ବୋଲି ଜାଣି ଘରକୁ ଯାଉଛନ୍ତି । ଯୋଉଟା ଯୁଗ ହୋଇ ରହିବ ବୋଲି ସେମାନେ ବହିରେ ପଢ଼ିଥିଲେ, ସେଗୁଡ଼ାକୁ ଆପାତତଃ ବର୍ତ୍ତମାନ ସକାଶେ ନିତାନ୍ତ ଅଦରକାରୀ ବୋଲି ଜାଣି ଲୁଚାଇ ରଖୁଛନ୍ତି, ଏକ କରୁଣ ଅଥଚ ଜଘନ୍ୟ ହାସ୍ୟାସ୍ପଦତାକୁ ହିଁ ପରମ ଆନନ୍ଦରସ ମଣି ପାନ କରୁଛନ୍ତି ଓ ଭାରି ଭଲ ଲାଗିଲା ବୋଲି କହିବାରେ ଲାଗିଛନ୍ତି । ତେଣୁ ଆପଣାର ସାଧନା, ଅର୍ଥାତ୍ ଆପଣାର ପ୍ରେମଟାକୁ ଗଣ୍ଠିକରି ପଡ଼ି ରହିଥିଲେ ଆମକୁ ଆଉ ଏ ଯୁଗରେ କିଏ ଚିହ୍ନିବ, କିଏ ଆମକୁ ସ୍ୱୀକାର କରିବ ? ଆମେ ଯୋଉଠି ସେଠି ପଡ଼ିରହିଥିବା, ତେଣେ ବଜାରରେ ଅସଲ ଦଣ୍ଡଧାରୀମାନଙ୍କର ତତ୍ତ୍ୱାବଧାନରେ ସରସ୍ୱତୀମାନଙ୍କର ମେଳଣ ହେଉଥିବ, ବୀରବାଦ୍ୟ ବାଜୁଥିବ, ସେଠି ବୀରର ପୋଷାକ ପିନ୍ଧି ବୁଦ୍ଧିମାନ ଭୀରୁମାନେ ବୀରଙ୍କ ପରି ଦିଶୁଥିବେ, ବେକରେ ଫୁଲହାର ଲମ୍ବାଇ ତୁଚ୍ଛା ଅରସିକମାନେ ରସିକ ହୋଇ ବାହାରି ଥିବେ ।

ଭୁବନେଶ୍ୱର ଯାଉ ଯାଉ ଚାଲ ଆମେ ଦିଲ୍ଲୀଯାଏ ଯିବା । କାରଣ, ସତ କଥା ହେଉଛି ଯେ, "ଖ୍ୟାତି ପାଇଁ ଦିଲ୍ଲୀକୁ କେନ୍ଦ୍ର କରିବାକୁ ହେବ । କାଳିଦାସ ଉଜ୍ଜୟିନୀରେ ନ ଥିଲେ ତାଙ୍କର କବିତା କେଜାଣେ କଅଣ ହୋଇଥାନ୍ତା । କବି ମଧ୍ୟ କେଜାଣି କେଉଁ ସ୍ତରରେ ଥାଆନ୍ତେ ! ରାଜଧାନୀରୁ ଯାହା କୁହାଯାଏ, ସମସ୍ତେ ଶୁଣନ୍ତି । ଫୁଲ ଯେଉଁଠି ଫୁଟେ, ମହୁମାଛି ସେଠାକୁ ଧାଇଁ ଆସେ, ସେଇଟା ପୁରୁଣା କଥା । ଆଜି ଫୁଲକୁ ମହୁମାଛି ଥିବା ଥାନରେ ଯାଇ ଫୁଟିବାକୁ ହେବ ।" ଭାରି ଚମତ୍କାର ଯୁକ୍ତି, ଭାରି ସଂସାରଯୋଗ୍ୟ କଥା—ସମ୍ପୂର୍ଣ୍ଣ ବାସ୍ତବଧର୍ମୀ କଥା । ଆମ ବହିରେ ଯୋଉ କଥା ଗୁଡ଼ାକ ରହିଛି ଅଥବା ଆମ ହୃଦୟ ଉପରେ ଯୁଗ ଯୁଗ ଧରି ଯୋଉ କଥା ଗୁଡ଼ାକ ଲେଖା ହୋଇ ରହିଛି, ସେଇଟା ସହିତ ଆଦୌ କୌଣସି ମେଳ ନଖାଉଥିଲେ ମଧ୍ୟ ଏଇଟାହିଁ ଖାଣ୍ଟି କଥା । କାରଣ ଏଇଟା ହେଉଛି ଯୁଗେ ଯୁଗେ ସଫଳ ମଣିଷମାନଙ୍କର କଥା, ଯୁଗର ନାକରେ କଡ଼ା ଗଳାଇ ଯୁଗକୁ ଚଳାଇ ଆଣିଥିବା ବୀରମାନଙ୍କର କଥା । ଭାଗ୍ୟକୁ ଆମର ଏ ଯୁଗରେ ଏମିତି ଏକ ନୂଆ ଧରଣର ସଫଳ ବୀର ଓ କୋଦଣ୍ଡଧାରୀମାନେ ଅଛନ୍ତି, ଯେଉଁମାନେ କି ସାହିତ୍ୟର ନାକରେ ବି କଡ଼ା ଗଳାଇ ସାହିତ୍ୟକୁ ଯୁଆଡ଼େ ମନ ସିଆଡ଼େ ଟାଣି ନେଇ ପାରୁଛନ୍ତି । ତାକୁ ନିକାଞ୍ଚନରୁ ଅର୍ଥାତ୍ ଏକ ଅନ୍ତଃନୀରବ ପରିପୂର୍ଣ୍ଣତା ଭିତରୁ ସହରୀ ସଭାଘରର ସୁରମ୍ୟ ଶୂନ୍ୟତା ଯାଏ ଟାଣି ନେଇ ପାରୁଛନ୍ତି, ଆମର ଏହି

ନାନା ଆତ୍ମୀୟତାମୟ କଞ୍ଚା ଜୀବନଟା ମଧ୍ୟରୁ ଅନେକ କୋଳାହଳମୟ କେତେ ବୁଦ୍ଧିସମୁଜ୍ଜଳ କୃତ୍ରିମତାର ମେଞ୍ଚା ମେଞ୍ଚା ଅଭିନୟ ଆଡ଼କୁ ପରିଚାଳିତ କରିନେଇ ପାରୁଛନ୍ତି । ପ୍ରେମ ପାଖରୁ ନେଇ ଏକ ଅହଙ୍କାରୀ ଜ୍ୱରର ହାଟ ଭିତରେ ପୂରାଇ ଦେଇ ପାରୁଛନ୍ତି । ଯେଉଁ ଜୀବନଟାକୁ ମଣିଷ ଯୁଗ ଯୁଗ ଧରି ବଞ୍ଚିଆସିଛି ଓ ଯାହାକୁ ହିଁ ଅଧିକ ସାନ୍ନିଧ୍ୟଯୁକ୍ତ କରି ଗଢ଼ିବା ଲାଗି ସିଏ ସତେଅବା ଅମର ହୋଇ ରହିଥିବା ପରି ବାରବାର ଏହି ଜଗତକୁ ଆସିଛି, ସେହି ଜୀବନଟି ସହିତ ଲାଗିଥିବା ତାର ଯାବତୀୟ ଡ଼ୋରକୁ ବଡ଼ ନିର୍ମମ ଭାବରେ କାଟି ପକାଉଥିବା ଏବଂ ତାହାରି ଭିତରେ ଆପଣାକୁ ସତେଅବା କେଡ଼େ ଦର୍ପିତ ବୋଲି ଅନୁଭବ କରୁଥିବା ପ୍ରହସନଟା ଭିତରକୁ ଟାଳିନେଇ ପାରୁଛନ୍ତି । ଏହି ବିଚିତ୍ର ଉତ୍ସବଟି ମଧ୍ୟରେ କେତେ କେତେ ସଫଳଙ୍କ ଗୋଡ଼ରେ ମୁଦି ଲଗା ହୋଇଛି, କାନରେ ଫାସିଆ ଓ ମୁଣ୍ଡରେ ମୁକୁଟ ପିନ୍ଧାଇ ଦିଆହୋଇଛି ଏବଂ ଏହିସବୁ ଦୃଷ୍ଟିରୁ ନିଜକୁ ଅନ୍ୟମାନଙ୍କଠାରୁ ଅଧିକ ଭାଗ୍ୟବାନ୍ ବୋଲି ମନେ କରୁଥିବା ହେତୁ ସେମାନେ କେଡ଼େ କୌତୁକପୂର୍ଣ୍ଣ ଭାବରେ ନିଜ ନାକରେ ଗଳା ହୋଇଥିବା କଡ଼ାଟାକୁ ଏକାବେଳେକେ ଭୁଲିକରି ରହିଛନ୍ତି । ସେହି କଡ଼ାଗୁଡ଼ାକ ସେମାନଙ୍କୁ ସତେଅବା କେଉଁ ହୃଦୟବଲ୍ଲଭଙ୍କର ପ୍ରଣୟ-ମୁଦ୍ରିକା ପରି ମନେ ହେଉଛି, ଏହି ଯୁଗଟାକୁ ଜିତି ଥିବାର ଏକ ନିଃସନ୍ଦେହ ସନ୍ତକ ପରି ଦେଖାଯାଉଛି ।

ହଁ, ଏମାନେ ପ୍ରକୃତରେ ଜିତିଗଲେ । ଏ ଯୁଗକୁ ଜିତିଗଲେ, ଆମ ସମସ୍ତଙ୍କୁ ଜିତିଗଲେ; ଯେଉଁ ଅଭିପ୍ରାୟ ଗୁଡ଼ାକ ଦ୍ୱାରା ପ୍ରେରିତ ହୋଇ ସେମାନେ ଜଗତକୁ ଆସିଥିଲେ ଓ ଜଗତ ମଧ୍ୟରେ ପ୍ରବେଶ କରିଥିଲେ, ସେହି ଅଭିପ୍ରାୟ ଗୁଡ଼ାକୁ ହିଁ ଜିତିଗଲେ । ନିଜର ସବୁ ଅକଲକୁ ସେମାନେ ଜିତିଗଲେ । ଯେଉଁଠାରେ ମହୁମାଛି ଅଛନ୍ତି, ସେହିଠାରେ ହିଁ ଫୁଟିବାର ବ୍ୟବସ୍ଥା କଲେ । ଏମାନେ ରାଜଧାନୀକୁ ଗଲେ, ଏମାନେ ଏସା କଲେ, ତେସା କଲେ । ପୁରସ୍କାର ଗୁଡ଼ାକୁ ସବୁ ନିଜ ନାମରେ ଲେଖାଇ ଆଣିବା ସକାଶେ ଏମାନେ ଏକାବେଳକେ ସବା ଉପର ମଞ୍ଚାରେ ଠିକଣା ଲୋକଟି ପାଖରେ ଠିକଣା ସମୟରେ ଯାଇ ପହଞ୍ଚି ପାରିଲେ । ଠିକଣା ବ୍ରାହ୍ମଣକୁ ଦକ୍ଷିଣା ଦେଇ ସେଇଠି କଳସକାଛା ହୋଇ ଆସିଲେ । ଏଇଟା ବି କିଛି କମ ସାଧନା ନୁହେଁ । ଏଥିଲାଗି ବି କମ୍ ଛାଡ଼ିବାକୁ ପଡ଼େ ନାହିଁ । କମ୍ ହୁଡ଼ିବାକୁ ପଡ଼େନାହିଁ ବା କମ୍ ଆତ୍ମଘାତୀ ହେବାକୁ ପଡ଼େନାହିଁ । ନିଜର ଅସଲ ଭାଷା ଓ ତା'ର ଅସଲ ଉତ୍ସଗୁଡ଼ାକୁ ଭୁଲି ଏକାବେଳେକେ ଅନ୍ୟ ଭାଷାରେ ମନ୍ତୁରା ହୋଇଥିବା ଶୁକଚରିତଗୁଡ଼ାକୁ ଆୟତ୍ତ କରି ରଖିବାକୁ ହେଲେ ଆପଣାକୁ ଆଦୌ କମ୍ ଅକିଞ୍ଚନ ଓ ଅରକ୍ଷିତ କରି ରଖିବାକୁ ପଡ଼େ ନାହିଁ । ସେମାନେ ଆଗ ଏତେ ସବୁ ଛାଡ଼ି ପାରିଲେ, ତା'ପରେ ଯାଇ ସ୍ୱୀକୃତି ପାଇଲେ, ପରିଚିତ ହେଲେ ଏହି "ଅସାରେ

ଖଲୁ ସଂସାରେ" ସାର ବୋଲି କିଛି ପାଇ ପାରିଲେ ଏବଂ ସଂସାରଟାକୁ ପାଇବା ସକାଶେ ସେମାନେ ଆପଣାକୁ ହରାଇ ଦେଇ ଆସିଲେ ।

ସେମାନେ ରୀତିଗୁଡ଼ାକୁ ବଦଳାଇ ଦେଲେ; –ରୂପଗୁଡ଼ାକୁ ବି ପ୍ରାୟ ବଦଳାଇ ଦେଲେ । ଖାଲି ସାହିତ୍ୟରେ ହିଁ ଏହି ନୂଆ ରୀତିଟା ଆପଣାକୁ ପ୍ରକଟ କଲାନାହିଁ, ଜୀବନର ଆହୁରି ନାନା କ୍ଷେତ୍ରରେ କ୍ରମେ ଆପଣାକୁ ସତେଅବା ଏକମାତ୍ର ପରାକ୍ରମୀ ରୂପେ ସାବ୍ୟସ୍ତ କରିବାକୁ ଲାଗିଲା । ଭାରତବର୍ଷ ସ୍ୱାଧୀନ ହେବାପରେ ଆମର ଏହି ନୂତନ ରୀତିରେ ପ୍ରୀତି ଅତିରିକ୍ତ ପରିମାଣରେ ବଢ଼ିଗଲା । ସାହିତ୍ୟର କ୍ଷେତ୍ରଟି ସମେତ ନାନାବିଧ କ୍ଷେତ୍ରକୁ ସଂକ୍ରମିତ ହୋଇ ଆସିଲା । ବିଦ୍ୟାଳୟ ଠାରୁ ଆରମ୍ଭ କରି ଆମ ଦେବାଳୟ ଗୁଡ଼ାକ ପର୍ଯ୍ୟନ୍ତ ସିଏ କୌଣସି ଗୋଟିଏ ବିଗ୍ରହକୁ ବି ଛାଡ଼ିଲା ନାହିଁ । ଫୁଟି ଉଠିବାର ଧନ୍ଦାଟିକୁ ଛାଡ଼ି ଆମେ ସମସ୍ତେ ମହୁମାଛିମାନଙ୍କର ସନ୍ଧାନରେ ବାହାରିଲୁ । ଯେଉଁଠାରେ ମହୁମାଛିମାନଙ୍କର ଚଳପ୍ରଚଳ ଥିବ, ଯେଉଁଠି ବରଗଛର ଡାଳରେ ସେହିମାନଙ୍କର ଫେଣାଟିଏ ବାନ୍ଧିହୋଇ ରହିଥିବ, ସେଇଠି ତାହାରି ତଳେ, ସମ୍ଭବ ହେଲେ ଆମେ ଠିକ୍ ତାହାରି ଛାଇ ତଳେ ଯାଇ ଫୁଟିବା ବୋଲି ବାହାରି ପଡ଼ିଲେ । ହଁ, ଆମେ ଠିକ୍ ତାହାରି ତଳେ ଫୁଟିବା, ଯେତେ ଶେତା ଦେଖାଗଲେ ବି କେବଳ ସେହିଠାରେ ଯାଇ ଫୁଟିବା, ତେବେ ଯାଇ ଫୁଲ ବୋଲି ସ୍ୱୀକୃତ ହେବା, ଆମର ଫୁଲପଣକୁ ଚରିତାର୍ଥ କରିପାରିବା । ଆମକୁ ଯେ ଫୁଟି ଆସେ, ଆମେ ତାହାରି ପ୍ରମାଣ ଦେଇ ପାରିବା । ଯେଉଁଠାରେ ଅନ୍ୟମାନେ ବି ଫୁଟି ଉଠିଥାନ୍ତି, ସେଇଠାରେ ସିନା କୌଣସି ଫୁଲ ତା' ନିଜ ଫୁଟି ଉଠିବାର ମଧ୍ୟ ସର୍ବଶ୍ରେଷ୍ଠ ପରଖ ଦେଇପାରେ ଓ ତେଣୁ ଆପଣାର ସର୍ବଶ୍ରେଷ୍ଠ ସ୍ୱୀକୃତି ପାଏ । ମାତ୍ର ଫୁଲମାନଙ୍କର ମେଳକୁ ଛାଡ଼ି ଯିଏ ତୁଚ୍ଛା ମହୁମାଛିଙ୍କ ଆଗରେ ଯାଇ ଫୁଟିବାକୁ ମନ କରେ, ବାସର ଟହଟହ ଗୁଡ଼ାକୁ ସେଇଠି ଲମ୍ୱାଇ ଦେଇ ସିଏ ମହୁମାଛିମାନଙ୍କୁ ସେଇ କୋଠା ଉପରୁ ହିଁ ତା' ନିଜ ଆଡ଼କୁ ଆକୃଷ୍ଟ କରି ଆଣିଥାଏ । ଏକଥା କହିଲାବେଳକୁ ଯେତେ ବିଚିତ୍ର ଲାଗୁଥିଲେ ମଧ୍ୟ ତାହା ଯେ ଆମ ପୃଥିବୀରେ ତଥାପି ସମ୍ଭବ ହୋଇପାରେ, ସେଥିରେ ଆମେ ଆଦୌ ସନ୍ଦେହ କରିବା ନାହିଁ । ଏଇଟାକୁ ସତ ବୋଲି ମାନି ନେଲେ ଯାଇ ଆମେ ଏହି ପୃଥିବୀରେ ସ୍ଥଳ ପାଇବା, ଏହି ରୀତି ଭିତରେ ଗଣ୍ୟ ହେବା ଓ ମହୁମାଛିମାନଙ୍କ ଦ୍ୱାରା ଫୁଲ ବୋଲି ସ୍ୱୀକୃତ ହେବା । ଯେ-କୌଣସି ଦେଶରେ ଓ ଯେକୌଣସି ଯୁଗରେ ସାହିତ୍ୟିକ ଓ କଳାକାରମାନେ ହିଁ ଅସଲ କଥାଗୁଡ଼ାକୁ କହି ପାରନ୍ତି । ଯାହାକୁ ଅନ୍ୟମାନେ କହି ପାରନ୍ତି ନାହିଁ, ନିତ୍ୟନୈମିତ୍ତିକତାର ଯାବତୀୟ ଝଳମଳ ଦ୍ୱାରା ଯେଉଁଗୁଡ଼ାକ ଅନୁଭବର ବାହାରେ ରହି ଯାଉଥାଏ, କଳାକାର ଓ ସାହିତ୍ୟିକ ହିଁ ତାହାକୁ ପ୍ରକଟ କରିପାରେ; ଆମର ଅନୁଭୂତ ଅନେକ କିଛିକୁ ସିଏ

ଆମର ଦୁଆର ପାଖରେ ଆଣି ପହଞ୍ଚାଇ ଦିଏ ଏବଂ ଆମର ଦୁଆରଟି ଦିନେ ନା ଦିନେ ଖୋଲିବ ବୋଲି ଅପେକ୍ଷା କରି ରହିଥାଏ । ଭଲ ପାଇବା ଭିତରେ ଯେତିକି ଧୈର୍ଯ୍ୟ ଥାଏ, ଯେତିକି ବିଶ୍ୱାସ ସମ୍ଭବ ହେଲେ ଆମର ସାନବଡ଼ ସମ୍ବନ୍ଧ ଗୁଡ଼ିକ ସତେଅବା କେଉଁ ଆତ୍ମୀୟତା ମଧ୍ୟକୁ ରୂପାନ୍ତରିତ ହୋଇ ଗଲାପରି ଲାଗେ, ସିଏ ସେତିକି ଧୈର୍ଯ୍ୟ ଓ ସେତିକି ବିଶ୍ୱାସ ସହିତ ଅପେକ୍ଷା କରି ରହିଥାଏ ।

ରାଜନୀତି ଏସବୁ କଥା କରିପାରେ ନାହିଁ । ପ୍ରତାପୀ ପଣ୍ଡିତମାନେ ବି ସେକଥା କରି ପାରନ୍ତି ନାହିଁ । ପ୍ରଚାରକମାନେ ଏସବୁ ଗହନ ଭିତରେ କେବେହେଲେ ପଶି ପାରନ୍ତି ନାହିଁ । ଆମର ଏହି ସଂସାରକୁ ସତେଅବା ଗୋଟାଏ ସଭାଘର ପରି ମନେ କରି ଯେଉଁମାନେ ଏଠାରେ କ୍ଷମତା, ଚାଟୁକାରିତା ଏବଂ ଶବ୍ଦବହୁଳତାର ଏକ ପ୍ରଦର୍ଶନ କରିବାରେ ଲାଗିଥାନ୍ତି ଓ ତାହାରି ଦ୍ୱାରାହିଁ ସବୁଠାରୁ ଅଧିକ ସହଜରେ ଲକ୍ଷ୍ମୀ ମିଳିପାରିବେ ବୋଲି ନିଷ୍ଠାପର ଭାବରେ ବିଶ୍ୱାସ କରୁଥାନ୍ତି, ସେମାନେ ସେକଥା କଦାପି କରି ପାରନ୍ତି ନାହିଁ । ସେମାନେ ପୁରସ୍କାର ଦିଅନ୍ତି ଓ ପୁରସ୍କାର ଗ୍ରହଣ କରୁଥାନ୍ତି, ଭଣ୍ଡାର ଗୋଟାକଯାକର ସବୁଯାକ ତହବିଲ ହୁଏତ ସେହିମାନଙ୍କ ହାତରେ ଥାଏ ସତ; ମାତ୍ର ତଥାପି ସେମାନେ ସେହି କଥାଟିକୁ କରି ପାରନ୍ତି ନାହିଁ ଏବଂ ଯେଉଁଠାରେ ସ୍ୱୟଂ କବି, ସାହିତ୍ୟିକ ଏବଂ କଳାକାରମାନେ ସଭାଘରକୁ ପୀରତି ବଳାନ୍ତି, ସଭାଘରକୁ ପ୍ରୀତି କରି ସାହିତ୍ୟ ଓ କଳା ଭିତରେ ବୈରାଗୀ ହୁଅନ୍ତି, ଯେଉଁଠି ଏମାନେ ଆଗ ଫୁଟି ଉଠିବାର ଧନ୍ଦାଟିକୁ ନଲୋଡ଼ି, ଯେଉଁଠି ମହୁମାଛି ଅଛନ୍ତି ସେହି ସବୁ ଥାନର ତଲାସ କରିବାରେ ଲାଗିଥାନ୍ତି, ମହୁମାଛିମାନଙ୍କର ସଙ୍ଗ, ସ୍ୱୀକୃତି ଓ ଅନୁଗ୍ରହଗୁଡ଼ାକୁ ଲୋଡ଼ିବାରେ ଲାଗିଥାନ୍ତି, ଆମେ ସେଠିକାର ବ୍ୟବସ୍ଥାଟିକୁ ପୁଣି କ'ଣ ବୋଲି କହିବା ? ଫୁଲ ଯେଉଁଠି ଫୁଟେ, ସେଠାକୁ ମହୁମାଛି ଧାଇଁଆସେ ବୋଲି ରହିଥିବା ସନାତନ କଥାଟିକୁ ପୁରୁଣା କଥା ବୋଲି କହି, ତାହାକୁ ଏଣିକି ଅବିଶ୍ୱାସ କରିବାଲାଗି ଆମକୁ ଯାବତୀୟ ପ୍ରେରଣା ଯୋଗାଇ ଦେଇ ଯେଉଁ କଳାକାର ଆମକୁ ମହୁମାଛି ଥିବା ସ୍ଥାନରେ ଯାଇ ଫୁଟିବାକୁ ହିଁ କର୍ତ୍ତବ୍ୟ ବୋଲି କହୁଥାଏ, ସେହି କଳାକାରକୁ ମଧ୍ୟ ଆମେ କ'ଣ ବୋଲି କହିବା ? ଆପଣାର ଅନ୍ତର ଭିତରେ ଯଦି ଆମେ ଫୁଲଟିଏ ହୋଇ ଫୁଟି ଉଠିବାକୁ ହିଁ ଇଚ୍ଛା କରୁଥିବା, ତେବେ ଏଭଳି ଗୋଟିଏ ଉକ୍ତିରେ ଆମେ ପ୍ରକୃତରେ କିଭଳି ପ୍ରତିକ୍ରିୟା ଦେଖାଇବା ? ହୁଏତ ଅତୀତର କୌଣସି ଯୁଗରେ ମଧ୍ୟ ଏହିଭଳି ଗୋଟିଏ ପ୍ରଶ୍ନ ପଚାରିବା ଲାଗି କୌଣସି ଆବଶ୍ୟକତା ହିଁ ପଡ଼ିନଥିବ । ଜୀବନର ବୃତ୍ତି ଏବଂ ଅନୁବୃତ୍ତି ଗୁଡ଼ାକ ଯେଉଁ ଯୁଗରେ ଅତିରିକ୍ତ ପରିମାଣରେ ବାଣିଜ୍ୟିକ ହୋଇପଡ଼େ, ଯେଉଁ ଯୁଗରେ ସ୍ୱୀକୃତି କହିଲେ ବଜାରରେ କିଏ କେତେ ବେଶୀ ପଇସାରେ ବିକା ହେଲା ବୋଲି ବୁଝାଏ, ସାହିତ୍ୟ ଓ

କଳା ବୋଲି ବୋଲାଉଥିବା ବିଭାବଗୁଡ଼ାକ ମଧ୍ୟ ଯେଉଁ ଯୁଗରେ ସର୍ବ ପ୍ରଥମେ ହିଁ ସଉଦା କରିଯିବାର ଗୋଟାଏ ଫନ୍ଦାକୁ ବୁଝାଉଥାଏ, ସମ୍ଭବତଃ ଖାସ୍ ସେହିସବୁ ଯୁଗରେ ଏଭଳି ଉକ୍ତିମାନ ଶୁଣିବାକୁ ମିଳେ ଓ ଏସବୁ ପ୍ରତି ଆମେ କେଉଁଭଳି ପ୍ରତିକ୍ରିୟା ଦେଖାଇବା, ଏପରି ଗୋଟିଏ ପ୍ରଶ୍ନ ପଚାରିବାର ଅବସର ମଧ୍ୟ ଆସି ପହଞ୍ଚୁଥାଏ । ହୁଏତ ଏପରି ହୁଏ ଯେ, ଯେଉଁମାନେ କଳା ଓ ସାହିତ୍ୟ ଭିତରୁ ପ୍ରକୃତରେ କୌଣସି ସରାଗ ଅଥବା ସାର୍ଥକତା ପାଇ ନଥାନ୍ତି, କଳା ଓ ସାହିତ୍ୟ ଭିତରେ ଆସି ପଶି ଯାଇଥିଲେ ମଧ୍ୟ ଯେଉଁମାନେ ମୂଳତଃ ଆଉ ଅନ୍ୟ କିଛି ଚାହୁଁଥାନ୍ତି, ସଂସାରରେ ଭଲ ପାଇବେ ବୋଲି ବାହାରି ଥିଲେ ମଧ୍ୟ ଯେଉଁମାନେ ଆପଣାର ଅନ୍ତରମର୍ମ ଭିତରେ ଦୁଇଟା ଭୀମ ବାହୁ ବିସ୍ତାର କରି ସଂସାରର ସବୁକିଛିକୁ ଭାରି ଉଗ୍ର ଭାବରେ ଜାବୁଡ଼ି ଧରିବାକୁ ଇଚ୍ଛା କରୁଥାନ୍ତି, ଏହିପରି ନାନା ଭାବେ ଗ୍ରାସ କରିବାର ଆପଣା କାମନାଗୁଡ଼ାକୁ ହିଁ ଯେଉଁମାନେ ଭଲ ପାଇବା ବୋଲି କହିବାରେ ଲାଗିଥାନ୍ତି, ସେହିମାନେ ହିଁ ସବା ଆଗ ସ୍ୱୀକୃତିର କଥା ଉଠାନ୍ତି । ଆପଣାକୁ କେଉଁଠି ହେଲେ ଦେଇ ପାରନ୍ତି ନାହିଁ ବୋଲି ସେମାନେ ସଂସାରରେ ସବୁ କିଛିକୁ ଖାଲି ଗ୍ରାସ କରି ପକାଇବାକୁ ମନ କରୁଥାନ୍ତି । ସେମାନେ କ୍ଷମତାକୁ ମନ କରୁଥାନ୍ତି, ଆସନକୁ ମନ କରୁଥାନ୍ତି, ବଡ଼ପଣକୁ ମନ କରୁଥାନ୍ତି । ଅର୍ଥାତ୍ ସେମାନେ ନିଜ ଲାଗି ହିଁ ସବୁକିଛିକୁ ମନ କରୁଥାନ୍ତି, କଳା ଲାଗି ବା ସାହିତ୍ୟ ଲାଗି ହୁଏତ କିଛିହେଲେ ଚାହୁଁ ନଥାନ୍ତି । ଏଗୁଡ଼ିକର ଜରିଆରେ ସେମାନେ ଆପଣା ମଧ୍ୟରେ କୌଣସି ଦ୍ୱାରୋନ୍ମୋଚନ ଚାହୁଁ ନ ଥାନ୍ତି । ଯେଉଁଠାରେ ବଡ଼ ହୋଇ ଦିଶିବାଟାହିଁ ସବୁଠାରୁ ବଡ଼ ଧର୍ମ ହୋଇ ଚଳୁଥାଏ, ଏମାନେ ସେହି ଚଳଣିର ବିଷଗୁଡ଼ାକୁ ହିଁ ସାହିତ୍ୟ ଆଉ କଳା ଭିତରେ ଆଣି ଭର୍ତ୍ତି କରି ଦେଉଥାନ୍ତି । କଳା ଓ ସାହିତ୍ୟ ଏପରି ଏକ ସମାଜ ଓ ଏପରି ଏକ ଚଳଣିକୁ ପ୍ରକୃତରେ ଅସ୍ୱୀକାର ହିଁ କରୁଥାନ୍ତା; ମାତ୍ର ଏମାନେ ନିମିତ୍ତ ବନି କଳା ଏବଂ ସାହିତ୍ୟକୁ ଏହି ଅଚଳଣିଟି ମଧ୍ୟକୁ ପ୍ରାୟ ବାଧ କରି ନେଇ ଆସନ୍ତି । ଆମର ଏହି ବାଣିଜ୍ୟିକ ଯୁଗରେ ବର୍ତ୍ତମାନ ସେହି ଅଚଳଣିଟିକୁ ହିଁ ଚଳଣି ବୋଲି କୁହାଗଲାଣି । ଯାବତୀୟ ବାଣିଜ୍ୟିକତା ଓ କାମୁକତା ଗୁଡ଼ାକୁ କାଟି ଆଧୁନିକ କଳା ଓ ସାହିତ୍ୟ ଆମକୁ ସିନା ଅଧିକ କଳାତ୍ମକତା ଅର୍ଥାତ୍ ଆତ୍ମୀୟତା ଏବଂ ସଂପ୍ରସାରଣ ଲାଗି ଉଦ୍‌ବୋଧନ ଦେଉଥାନ୍ତା; ମାତ୍ର ଆଧୁନିକତା ନାମରେ ତାହା ଆମ ଭିତରେ ସେହି କାମୁକତା ଓ ବାଣିଜ୍ୟିକତା ଗୁଡ଼ାକୁ ଆଣି ଭର୍ତ୍ତି କରିଦେବା ଦିଗରେ ହିଁ ପ୍ରାୟ ଏକ ଚକ୍ରାନ୍ତ ପରି ହୋଇ ରହିଛି । ଆମକୁ ବାଟବଣା କରିଦେବା ଲାଗି ଆମ ଯୁଗ କଦାପି ଏଗୁଡ଼ାକର ଭିଆଣ କରି ନାହିଁ, ଆମେ ନିଜେ ଆପଣାର କାମୁକତା ଓ ଲୋଲୁପତା ଗୁଡ଼ାକୁ ଚରିତାର୍ଥ କରିବା ଲାଗି ହିଁ ବାଟ ଛାଡ଼ି ଦେଇଛୁ । ଆମେ ନିଜେ ଏଗୁଡ଼ାକୁ ଭିଆଇ ରଖିଛୁ, କଳା ଓ

ସାହିତ୍ୟକୁ ସତେଅବା ଅଙ୍ଗରକ୍ଷା ପରି ବ୍ୟବହାର କରି ଆମେ ଆମ ଅସଲ ଭିତରେ ଯେଉଁ ଚରିତାର୍ଥତା ଗୁଡ଼ାକୁ ଇଚ୍ଛା କରୁଛୁ, ସେହିଗୁଡ଼ାକ ଲାଗି ହିଁ କଳା ଓ ସାହିତ୍ୟକୁ ବ୍ୟବହାର କରିବାରେ ଲାଗିଛୁ ।

ଅର୍ଥାତ୍ ଆମେ କଳାକୁ ଲୋଡୁ ନାହୁଁ, ସାହିତ୍ୟକୁ ବି ଲୋଡୁ ନାହୁଁ । ଆମେ କବିତା ଲେଖୁଛୁ, ଗଳ୍ପ ଲେଖୁଛୁ ଅଥବା ଉପନ୍ୟାସ ଲେଖୁଛୁ ସତ; ମାତ୍ର ସାହିତ୍ୟକୁ ଲୋଡୁ ନାହୁଁ । ସାହିତ୍ୟର ଯେ ଏକ ବିଶେଷ ଦୃଷ୍ଟି ରହିଛି, ଆମର ସେହି ସାହିତ୍ୟ-ଦୃଷ୍ଟି ଯେ ଆମକୁ ଏକ ସ୍ୱତନ୍ତ୍ର ଅନୁରାଗରେ ଏବଂ ଆତ୍ମୀୟତାରେ ଜୀବନ ଆଡ଼କୁ ଆନତ କରି ଆଣିବାର ସାମର୍ଥ୍ୟ ରଖିଥାଏ, ଆମକୁ ଧନ୍ୟ କରେ, ଆତ୍ମୀୟତା ଭିତରେ ବାନ୍ଧି ରଖେ, ସାହିତ୍ୟକୁ ଯଥାର୍ଥ ଭାବରେ ଲୋଡ଼ି ପାରିଲେ ଯାଇ ଆମେ ଆପଣା ଭିତରେ ସେହି ଆହ୍ୱାନ ଗୁଡ଼ିକୁ ସତ୍ୟ ରୂପେ ଅନୁଭବ କରିଥାଉ । ଅନେକ ସଂଖ୍ୟାରେ ଏପରି କଳାବିତ୍‌ମାନେ ବି ଅଛନ୍ତି, ଯେଉଁମାନେ କି କେଡ଼େ ନିପୁଣତାରେ ଚିତ୍ର ଆଙ୍କନ୍ତି, କେତେ କେତେ ଶୈଳୀର ପ୍ରୟୋଗ କରନ୍ତି, ପଦ ଓ ସ୍ୱୀକୃତିର ଅନ୍ୱେଷଣରେ ପାହାଚକୁ ପାହାଚ ଉଠି ଚାଲି ଯାଉଥାନ୍ତି, ଆପଣା ଚିତ୍ରଗୁଡ଼ାକର ତୁହାକୁ ତୁହା ପ୍ରଦର୍ଶନୀମାନ କରୁଥାନ୍ତି, ମାତ୍ର ତଥାପି କଳାକୁ ଲୋଡୁ ନଥାନ୍ତି । ସେମାନଙ୍କ ଭିତରେ ତଥାପି କଳାପ୍ରାଣ ମଣିଷଟିର ଜନ୍ମ ହୋଇ ନଥାଏ, କଳାଦୃଷ୍ଟି ବୋଲି ପ୍ରାୟ କିଛି ହେଲେ ନଥାଏ, ସମ୍ଭବତଃ କେଉଁଠି ଗୋଟାଏ ଲୋଲୁପତା ଅଥବା ଯେକୌଣସି ପ୍ରକାରେ ଡିଣ୍ଡିମ ବଜାଇ ପାରିବାର ଗୋଟାଏ ଇଚ୍ଛା ଆପଣାକୁ କଳାକାରିତା ରୂପେ ଜାହିର କରି ରଖି ମୁହଁ ଲୁଚାଇ ରହିବାକୁ ଇଚ୍ଛା କରୁଥାଏ । ଯିଏ ସାହିତ୍ୟକୁ ଲୋଡ଼େ, ସାହିତ୍ୟର ପ୍ରାଣପ୍ରବେଶ କରିବାକୁ ସିଏ ନିଜର ଧର୍ମ ବୋଲି ଗ୍ରହଣ କରିଥାଏ, ଅର୍ଥାତ୍ ଏକ ଅମଳିନ ଜୀବନାନୁରାଗର ଯୋଗ୍ୟ ହେବା ଲାଗି ସେ ଆପଣାର ଯାବତୀୟ ଦ୍ୱାରକୁ ମୁକୁଳା ରଖିବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ନେଇଥାଏ । କେବଳ ଶୈଳୀଗୁଡ଼ାକୁ ଭୁଞ୍ଜି ଓ ଭୁଞ୍ଜାଇ ସେ କୃତକୃତ୍ୟ ହୋଇ ଯାଏ ନାହିଁ । ତା'ର ସାହିତ୍ୟ ତା' ଜୀବନକୁ ନିର୍ମଳ କରେ, ଉଜ୍ଜ୍ୱଳ କରେ, ନିର୍ଭୀକ କରି ଆଣେ, ଅଧିକରୁ ଅଧିକ ଆତ୍ମୀୟତା ଲାଗି ତାକୁ ଯୋଗ୍ୟ କରି ଆଣେ । ଅଧିକ ନିରସ୍ତ୍ର କରେ, ଅଧିକ ଅହଂମୁକ୍ତ କରେ । ଅର୍ଥାତ୍ ସାହିତ୍ୟକୁ ଲୋଡୁଥିବା ମଣିଷର ଚେତନାକୁ ତାହା ଅଧିକ ସମଗ୍ର କରେ, ସମ୍ପ୍ରସାରିତ କରି ଦେବାରେ ଲାଗିଥାଏ । ଏପରି ଅନେକ ସାହିତ୍ୟିକ ବି ଥାଆନ୍ତି, ଯେଉଁମାନଙ୍କ ଜୀବନରେ ଏସବୁ କିଛି ହେଲେ ଘଟି ନଥାଏ; ଅନେକ ଗୁଣୀ କଳାକାର ଥାଆନ୍ତି, ଯେଉଁମାନଙ୍କ ଜୀବନରେ ଏସବୁ କିଛି ଘଟି ନଥାଏ । ଆପଣାର ଅନ୍ତଃପଥରେ ସେମାନେ ହୁଏତ କାହାରିକୁ ବି ଭେଟି ନଥାନ୍ତି, କିଛି ହେଲେ ପାଇ ନଥାନ୍ତି । ଏବଂ ସମ୍ଭବତଃ ସେଇଥିଲାଗି ବାହାରେ କ'ଣ ମନ କ'ଣ

ପାଇବେ ବୋଲି ବଜାରରେ ବୁଲୁଥାନ୍ତି । ଆପଣାକୁ ମୂଲ କରିବାରେ ଲାଗିଥାନ୍ତି ଏବଂ ମୂଲ ହୋଇ ଯିବାଟାକୁ ହିଁ ସ୍ୱୀକୃତି ବୋଲି କହୁଥାନ୍ତି । ଅନ୍ତଃସ୍ୱୀକୃତି ହେଉଛି ସାହିତ୍ୟ ଆଉ କଳାର କ୍ଷେତ୍ରରେ ଅସଲ ସ୍ୱୀକୃତି । ଭଲ ପାଇବାର ଯାବତୀୟ କ୍ଷେତ୍ରରେ ଅସଲ ସ୍ୱୀକୃତି ହେଉଛି ଏହି ଅନ୍ତଃସ୍ୱୀକୃତି । ସେହି ସ୍ୱୀକୃତିଟି ନଥିଲେ ଆମେ ଭଲ ପାଇବା ନାଆଁରେ କେଡ଼େ ଉଗ୍ର ଭାବରେ କେତେ କେତେ ବାହ୍ୟ ସ୍ୱୀକୃତି ଖୋଜି ବୁଲୁଥାଉ, କେତେ ଈର୍ଷା କରିବାରେ ଲାଗିଥାଉ, କେତେ କ୍ଷୁଦ୍ର ହୋଇ ପଡୁ । ଅନେକ ସମୟରେ ନିଜର ଏହି ଭଲ ପାଇବାର ଗୁଣଟିକୁ ମଧ୍ୟ ଆମେ ଈର୍ଷା କରିବାକୁ ଆରମ୍ଭ କରୁ । ସୁପରିଚିତ କାହାଣୀଟିରେ ଥିବା ସେହି ମଣିଷଟି ଈର୍ଷାପରବଶ ହୋଇ ସବୁଯାକ ସୁନା ଅଣ୍ଡାକୁ ଏକାଥରକେ ପାଇଯିବ ବୋଲି ଯେପରି ନିଜ କୁକୁଡ଼ାଟିର ବେକ ମୋଡ଼ି ଦେଲା, ଠିକ୍ ସେହିପରି । ସ୍ୱୀକୃତି ପାଇବା ନାମରେ, ପ୍ରଦର୍ଶନୀରେ ସ୍ଥାନ ପାଇବା ନାମରେ ଆମେ ଆପଣା ଭିତରେ ଥିବା ସୁନା ଅଣ୍ଡାଗୁଡ଼ିକୁ ଏକାବେଳେକେ ପାଇଯିବୁ ବୋଲି ହୁଏତ ଆପଣାର ବି ବେକ ମୋଡ଼ିବାରେ ଲାଗିଛୁ । ତେଣୁ ଫୁଲଟିଏ ହୋଇ ଫୁଟି ଉଠିପାରିବା ଲାଗି ଯେଉଁ ଆଲୋକ ଓ ଯେଉଁ ଆନନ୍ଦ ସବା ଆଗ ଦରକାର ଏବଂ ଯେଉଁ ଆଲୋକ, ଆନନ୍ଦ ତଥା ମୁକ୍ତ ପବନର ଯୋଗ୍ୟ ହୋଇ ପାରିବା ଦରକାର, ସେଇଟିକୁ ନ ଲୋଡ଼ି ଆମେ ଆଗ ମହୁମାଛିମାନେ କେଉଁଠାରେ ରହିଛନ୍ତି ବୋଲି ଖବର ନେବାରେ ଲାଗିଛୁ । ଏହା ଏକ ଲଜ୍ଜା; ଉପନିଷଦରେ ଯାହାକୁ ଜୁଗୁପ୍‌ସା ବୋଲି କୁହାଯାଇଛି, ଏହା ସେହିଭଳି ଗୋଟିଏ ଜୁଗୁପ୍‌ସା । ଆତ୍ମୀୟତା ହରାଇ ବସିବା ହିଁ ଜୁଗୁପ୍‌ସା, ଆପଣାର ଧର୍ମଟି ସହିତ ଅସଲ ଖିଅଟିକୁ ହରାଇ ବସିବାର ଦୁର୍ଭାଗ୍ୟ ହେଉଛି ଜୁଗୁପ୍‌ସା ।

ଫୁଲ ଯେଉଁଠାରେ ନ ଫୁଟେ, ସେଠାକୁ ମହୁମାଛି ପ୍ରକୃତରେ କାହିଁକି ଯାଏ, ସେଠାରେ ସେ କ'ଣ କରିବାକୁ ଯାଏ, କ'ଣ ବା କରୁଥାଏ ? ମହୁମାଛି ମାତ୍ରକେ ତ ମଧୁ-ସଂଗ୍ରହକାରୀ । ମାତ୍ର, ଆମ କଳାକାର ଓ ସାହିତ୍ୟିକମାନେ ଫୁଲଟିଏ ହୋଇ ଫୁଟି ଉଠିବା ଆଗରୁ ଯେଉଁ ମହୁମାଛିମାନଙ୍କର ରହିବା ସ୍ଥାନଟିକୁ ଡୁଙ୍ଗିବାରେ ଲାଗିଥାନ୍ତି, ସେହି ମହୁମାଛିମାନେ ହୁଏତ ପ୍ରକୃତରେ କୌଣସି ମଧୁସଂଗ୍ରହ କରୁ ନ ଥାନ୍ତି । ଆମ ସମାଜରେ ଏପରି ଅନେକ ମଣିଷ ଅଛନ୍ତି, ଯେଉଁମାନେ କି ସମ୍ଭବତଃ ଆଦୌ କୌଣସି ମଧୁ ସଂଗ୍ରହ କରନ୍ତି ନାହିଁ, ଅଥଚ ସବୁଯାକ ମଧୁ-ସଂଗ୍ରହକୁ ଆଗ ଯାଇ ମାଡ଼ି ବସିବାକୁ ହିଁ ଜୀବନର ପରମ ସାର୍ଥକତା ବୋଲି ମଣୁଥାନ୍ତି । ସେମାନେ ଅଧିକାର ଲୋଡୁଥାଆନ୍ତି– ଅଧିକାର କରିବା ଓ ଆତ୍ମସାତ୍ କରି ନେବାକୁ ହିଁ ସେମାନେ ଜୀବନ ବୋଲି ଜାଣିଥାନ୍ତି । ଆପଣାର ସମ୍ପତ୍ତିଗୁଡ଼ାକ ଜରିଆରେ ହିଁ ସେମାନେ ମୋଟା ହୋଇ ଦିଶିବାକୁ ଚାହୁଥାନ୍ତି, ଆପଣାର କ୍ଷମତାଗୁଡ଼ାକ ଜରିଆରେ ହିଁ ବଡ଼ ହୋଇ ଦିଶିବାକୁ ଚାହୁଥାନ୍ତି । ଆଗ ମହୁମାଛି

ଖୋଜି ବାହାରିଥିବା କଳାକାର ପ୍ରାୟ ସବୁବେଳେ ଏହିମାନଙ୍କ ପାଖରେ ଯାଇ ପହଞ୍ଚେ, ସେ ଏଇମାନଙ୍କ ପାଖରେ ମୂଲ ହେବାକୁ ଯାଏ । ସେଠାରେ ସବୁକିଛିର ମୂଲ ହୁଏ; ଖ୍ୟାତି, ଯଶ, ସୁନାମ ଓ ସୁକୀର୍ତ୍ତି ସବୁକିଛିର ମୂଲ ହୁଏ, କଳା ଓ ସାହିତ୍ୟକୁ ମଧ୍ୟ ସତେଅବା ଗୋଟାଏ ଗୋଟାଏ ସମ୍ପତ୍ତି ପରି ମୂଲ କରାଯାଏ । ସେଗୁଡ଼ାକୁ ଆଗ ଗୋଟାଏ ଗୋଟାଏ ସମ୍ପତ୍ତିର ସ୍ତରକୁ ଟାଣିଆଣି ତା'ପରେ ସେଗୁଡ଼ାକର ମୂଲ କରାଯାଏ । କଳା ଓ ସାହିତ୍ୟ ଯେ ମର୍ମତଃ ଏକ ଉପଲବ୍ଧିକୁ ବୁଝାଏ, ଏକ ପରିଚୟକୁ ବୁଝାଏ, ଏଠି ମୂଲ କଲାବେଳେ ସେହି କଥାଟିକୁ କେହି ବିଚାରକୁ ଆଣନ୍ତି ନାହିଁ । ତେଣୁ ନିଜର କଳା ଓ ସାହିତ୍ୟର ସବାଆଗ ଏକ ପ୍ରଦର୍ଶନ ହୋଇ ପାରିବା ଉଚିତ ବୋଲି ଭ୍ରମରେ ପଡ଼ି ଯେଉଁମାନେ ପ୍ରଦର୍ଶନୀ ମଧ୍ୟକୁ ଦଉଡ଼ନ୍ତି, ପ୍ରଦର୍ଶିତ ହୁଅନ୍ତି ଓ ସେହିଠାରୁ ସମ୍ପତ୍ତି-ଅଧିକାରୀମାନଙ୍କଠାରୁ ସ୍ୱୀକୃତି ନେଇ ଫେରନ୍ତି, ସେହି ଅଧିକାରୀମାନଙ୍କର ଅନୁଗ୍ରହରୁ ସେମାନେ କେତେ କେତେ ଆସନରେ ଯାଇ ବସନ୍ତି ସତ, ତୋଟା ଭିତରେ ପଶି କେତେ ନା କେତେ ମାମଲତ କରିବାର ଅନୁମତି ପାଇଯାଆନ୍ତି ସତ, କେତେ ପାଲା ଓ ପାଟିଲା କଦଳୀ ଚକଟାର ଆୟୋଜନ କରାଇ ପାରନ୍ତି ସତ, ମାତ୍ର ଏପାଖରୁ ବିଦାୟ ନେଇ ଯାଆନ୍ତି । ସେମାନେ କଳା ଓ ସାହିତ୍ୟ ମଧ୍ୟରେ ରହିପାରନ୍ତି ନାହିଁ, ଅର୍ଥାତ୍ ଆଉ କଳା ଓ ସାହିତ୍ୟର ହୋଇ ରହିପାରନ୍ତି ନାହିଁ । ସେମାନେ ତା'ପରେ ଆଉ କାହାର ହୋଇ ରହନ୍ତି । ଦେଶର ହୁଅନ୍ତି, ଜାତିର ହୁଅନ୍ତି, କ୍ଷମତାର ହୁଅନ୍ତି ବା ରାଜାର ହୁଅନ୍ତି ସିନା, ମାତ୍ର ସବାଆଗ ଯାହାର ବା ଯେଉଁ ଆସ୍ଥାନଟିର ହୋଇ ରହି ପାରୁଥିଲେ ସେମାନେ କଳାକାର ଓ ସାହିତ୍ୟିକ ହେଉଥାନ୍ତେ, ସେଇଟିର ହୋଇ ପାରନ୍ତି ନାହିଁ । ସେମାନେ ବନ୍ଧ୍ୟା ହୋଇ ରହନ୍ତି ।

ଯବନ କହେ ଯେ, ମଣିଷ ଧର୍ମତଃ ଫୁଲଟିଏ ହୋଇ ଫୁଟି ପାରିବା ଲାଗି ହିଁ ଜନ୍ମଗ୍ରହଣ କରିଛି । ସିଏ ମହୁମାଛି ହୋଇ ଜନ୍ମ ହୋଇନାହିଁ । ଜୀବନର ଯାବତୀୟ ଅର୍ଜନ ଏବଂ ସଂଗ୍ରହକୁ ଗୋଟିଏ ଫୁଲ ରୂପେ ଫୁଟାଇ ଦେବାକୁ ହିଁ ଯବନ ଆମ ସମସ୍ତଙ୍କର ଅସଲ ଉଦ୍ଦେଶ୍ୟ ବୋଲି ଜାଣିଛି । ଯେଉଁମାନେ ଅର୍ଜନଗୁଡ଼ାକୁ କେବଳ ଆହୁରି ଅଧିକ ଅର୍ଜନରେ ପରିଣତ କରିବାକୁ ହିଁ ବୃହତ୍ତମ ଧନ୍ଦା ରୂପେ ଧରି ନେଇଥାନ୍ତି, ଅଧିକରୁ ଅଧିକ ସଂଗ୍ରହ ଦ୍ୱାରା ଯଥାସମ୍ଭବ ଅଧିକ ପୃଥୁଳ ହୋଇ ବସିବାକୁ ହିଁ ଯେଉଁମାନେ ଧର୍ମ ବୋଲି ମଣୁଥାନ୍ତି, ସେଇମାନଙ୍କର ଯାବତୀୟ ଦୁରାତ୍ମତାରୁ ଦୂରରେ ରହିପାରିବ ବୋଲି ହିଁ ଯବନ ଏଠି ଯବନ ହୋଇ ରହିଥାଏ । ଆପଣା ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ବାତ୍ସଲ୍ୟମୟୀ ଜନନୀଟିକୁ ବଞ୍ଚାଇ ରଖିବା ଲାଗି ହିଁ ସିଏ ଏହିସବୁ ଯାବତୀୟ ସଭା-କୋଳାହଳ ଓ ସ୍ୱୀକୃତି-କାମନାରୁ ଦୂରେଇ ଯବନ ହୋଇ ରହିଥାଏ । ସିଏ କଳାକାର

ଭିତରେ କଳାକାରକୁ ଖୋଜେ; କେଉଁ କଳାକାର କେତେ ମେଡ଼ାଲ ପାଇଛି ଓ କେଉଁମାନଙ୍କ ସହିତ କରମର୍ଦ୍ଦନ କରିଛି, ସିଏ ସେକଥା ଆଦୌ ଦେଖେନାହିଁ । ଏହିସବୁ ଅନ୍ୟ ଆଗ୍ରହଗୁଡ଼ାକୁ କେଉଁଠି ଅତିରିକ୍ତ ବହଳ ଓ ପ୍ରବଳ ହୋଇ ରହିଥିବାର ଦେଖିଲେ, ସେଠାରେ ପ୍ରକୃତ କଳାତ୍ମକତା ଓ ଆତ୍ମୀୟତା ବୋଲି ପ୍ରକୃତରେ କିଛିହେଲେ ରହିଛି କି ନାହିଁ, ଯବନ ସେହି ବିଷୟରେ ସନ୍ଦେହ କରିବାକୁ ଆରମ୍ଭ କରେ । ଯବନ ସାହିତ୍ୟ ଭିତରେ ମଧ୍ୟ ସାହିତ୍ୟପ୍ରାଣତାଟିକୁ ହିଁ ସବାଆଗ ଖୋଜୁଥାଏ ଏବଂ ସାହିତ୍ୟର ସାମଗ୍ରିକ ରସାୟନଶକ୍ତିରେ ସେ ପ୍ରାୟ ଏକ ଧର୍ମବତ୍ ବିଶ୍ୱାସ ରଖିଥାଏ । ଯେଉଁଠି ସାହିତ୍ୟିକମାନେ ସ୍ୱୀକୃତିର ସଚିବାଳୟଗୁଡ଼ାକ ଭିତରେ ନସର ପସର ହୋଇ ଧାଇଁ ଥାଆନ୍ତି, କୋଳାହଳ ପରେ କୋଳାହଳର ସମାଗମ ଜମାଇବାରେ ବ୍ୟଗ୍ରତା ରଖିଥାନ୍ତି ଓ ତାହାକୁ ହିଁ ସାହିତ୍ୟ-ସେବା ବୋଲି କହୁଥାନ୍ତି, ସେଠାରେ ମଧ୍ୟ ଯବନ ସବାଆଗ ସନ୍ଦେହ କରି ବସେ, ସେମାନଙ୍କଠାରୁ ଯଥାସମ୍ଭବ ଦୂରରେ ରହେ ଓ ସେମାନଙ୍କୁ ଓ ସେଗୁଡ଼ାକୁ ଉପେକ୍ଷା କରିବାକୁ ହିଁ ଆପଣାର ଧର୍ମ ବୋଲି ମଣେ । କଳା ଓ ସାହିତ୍ୟ କହିଲେ ଯବନ ଏକ ସ୍ୱାଭାବିକ ସୃଷ୍ଟିଶୀଳତାର ଅନୁରାଗକୁ ବୁଝୁଥାଏ । ସାହିତ୍ୟିକ ବା କଳାକାରର ମନ କହିଲେ ସିଏ କଳାତ୍ମକ ମନକୁ ହିଁ ବୁଝେ, କଳାତ୍ମକ ହୃଦୟ କହିଲେ ଏକ ସମ୍ବେଦନଶୀଳ ହୃଦୟକୁ ବୁଝେ, ପରିଧିଗୁଡ଼ାକୁ କ୍ରମଶଃ ଭାଙ୍ଗି ଭାଙ୍ଗି ଦେଉଥିବା ଏକ ହୃଦୟ-କେନ୍ଦ୍ରକୁ ହିଁ ବୁଝୁଥାଏ ।

ଆମ ଦେଶରେ ଅନେକ ବୈଜ୍ଞାନିକ ଅଛନ୍ତି, ଯେଉଁମାନେ କି ବିଜ୍ଞାନର ଅନୁଶୀଳନ ଅପେକ୍ଷା ସ୍ୱୀକୃତିଗୁଡ଼ାକୁ ହିଁ ସର୍ବଦା ଅଧିକ ଜରୁରୀ ବୋଲି ମନେ କରୁଥାନ୍ତି । ସେଥିଲାଗି ସେମାନଙ୍କୁ ଏହି ଦେଶଟା ମୋଟେ ପୋଷାଏ ନାହିଁ, ଏହି ଭୂମିର ଆହ୍ୱାନଟିକୁ ସେମାନେ ମୋଟେ ଅନୁଭବ କରିପାରନ୍ତି ନାହିଁ । ସେମାନେ ଖଞ୍ଜା ଖୋଜି ବିଦେଶକୁ ପଳାନ୍ତି । ସେହି ପଳାଇବାଟାକୁ ଅନେକ ସମୟରେ ଏହି ଦେଶ ଲାଗି ଏକ ଗୌରବ ବୋଲି ବି ଭାବିଥାନ୍ତି । ସେମାନେ ବିଦେଶରେ ବଡ଼ ସ୍ୱୀକୃତି ପାଆନ୍ତି, ଅଧିକ ପଇସା ପାଆନ୍ତି ଓ ବସ୍ତୁ ବସ୍ତୁ ପଦଟାଏ ପାଆନ୍ତି ଏବଂ ଯୋଉଠି ଲାବୋରେଟରି ଭିତରେ ସବୁକିଛି ଖଞ୍ଜା ହୋଇ ରହିଥିଲା, ଗେହ୍ଲା ପିଲାଙ୍କ ପରି ସେହିଠାରେ ହିଁ ଆପଣାର ବିଦ୍ୟାଗୁଡ଼ିକୁ ବିଦିତ କରି ହେବ ବୋଲି ବିଶ୍ୱାସ କରନ୍ତି । ଯବନ ଏମାନଙ୍କୁ ବୈଜ୍ଞାନିକ ବୋଲି ନ କହି ପଳାତକ ବୋଲି କହେ ବା ଖୁବ୍ ବେଶୀ ହେଲେ ଗେଲବସର ବୋଲି କହେ । ଯେଉଁଠି ବିଦ୍ୟା ସବାଆଗ ନିରାପତ୍ତା କାମନା କରେ, ସେଠାରେ ତାହା ଆଦୌ କୌଣସି ପର୍ବତ ଲଙ୍ଘି ପାରେନାହିଁ । ସେହିପରି ଯେଉଁ କଳା ଆଗ ନିରାପତ୍ତା ଇଚ୍ଛା କରେ, ସ୍ୱୀକୃତି ଇଚ୍ଛା କରେ, ପ୍ରଦର୍ଶନ ଇଚ୍ଛା କରେ, ସେଇଟି ମଧ୍ୟ କଦାପି କୌଣସି ପର୍ବତ

ଲଘିପାରେ ନାହିଁ । ଆପଣା ଭିତରର ବାଡ଼ଗୁଡ଼ାକୁ ଲଘି ସେ କଦାପି ସେପାଖକୁ ଯାଇପାରେ ନାହିଁ । ନିରାପତ୍ତା, ସ୍ୱୀକୃତି ଏବଂ ସମ୍ପତ୍ତି କାମନା କରୁଥିବା ସାହିତ୍ୟିକ ଓ ମହୁମାଛିମାନଙ୍କର ସମ୍ପତ୍ତି ହୋଇ ରହିବାକୁ ଇଚ୍ଛୁକ ସାହିତ୍ୟ କଦାପି କୌଣସି ବାଡ଼ ଡେଇଁପାରେ ନାହିଁ । ସିଏ ଏହି ଗୋଟାଏ ବଜାରରେ ହିଁ ବେଶ ହେଉଥାଏ, ବେଶ ବଦଳାଉଥାଏ; ପ୍ରଭୁର ସେବା କରୁଥାଏ ଓ ପ୍ରଭୁ ବଦଳାଇବାରେ ଲାଗିଥାଏ । ଗେଲବସରଙ୍କ ପରି ସିଏ ଖାଲି ଆଉଜି ପଡ଼ିବାକୁ ଚାହେ, ନାନା କୁତ୍ସିତ ଲୋଲୁପତା ଏବଂ ତଜ୍ଜନିତ ଉଗ୍ରତାରେ ଲୋସଡ଼ି ପଡ଼ିବାରେ ଲାଗିଥାଏ । ସାହିତ୍ୟ ଓ କଳା ଭିତରେ ସର୍ବତ୍ର ଯେଉଁ ଯବନଦୃଷ୍ଟି ଓ ଯବନ-ଶକ୍ତି ଲୁକ୍‌କାୟିତ ଥାଏ, ଆପଣାର ସ୍ୱକୀୟ ଅଭିବ୍ୟକ୍ତିରେ ଫୁଟି ଉଠିବାର ଯେଉଁ ନିର୍ଭୀକତା ଥାଏ, ଫୁଟିବା ଆଗରୁ ମହୁମାଛିଙ୍କୁ ଖୋଜି ବାହାରିଥିବା ସାହିତ୍ୟିକ ଓ କଳାକାର ତାହାର ଆଦୌ କୌଣସି ସଙ୍କେତ ପାଏ ନାହିଁ । କଳା ଓ ସାହିତ୍ୟର ଅନୁଧାବନ ଯେ ମୂଳତଃ ଯବନ ହେବାକୁ ବୁଝାଏ, ସିଏ ଏହି ସତ୍ୟଟିଠାରୁ ଅନେକ ଦୂରରେ ରହିଥାଏ । ତା'ର ହୃଦୟ ତା'ର ଧନ୍ଦାଗୁଡ଼ାକ ପାଖରେ ପ୍ରବାସୀ ହୋଇ ରହିଥାଏ । ଆଉ କାହାର ସମ୍ପତ୍ତି ହୋଇ ରହିବାର ଲୁବ୍ଧତାରେ ସିଏ ଆପଣାର ଅସଲ ସମ୍ପତ୍ତିଗୁଡ଼ାକ ବିଷୟରେ ହୁଏତ ସମ୍ପୂର୍ଣ୍ଣ ଅଜ୍ଞ ଓ ଅନ୍ଧ ହୋଇ ରହିଥାଏ ।

ତା୧୨।୧୧।୧୯୭୬ରିଖ



# ଏ ବାବୁମାନେ

ଯେଉଁଠି ମଣିଷ ଅଛନ୍ତି, ସେମାନଙ୍କ ଭିତରେ ଏ ବାବୁମାନେ ମଧ୍ୟ ରହିଛନ୍ତି । ବାବୁମାନେ ସବୁ ଯୁଗରେ ରହି ଆସିଛନ୍ତି, ସବୁ ଦେଶରେ ବି ରହି ଆସିଛନ୍ତି । ଗୋରାଙ୍କ ଭିତରେ ଅଛନ୍ତି, କଳାଙ୍କ ଭିତରେ ଅଛନ୍ତି । ଏମାନେ ସବୁ ଜଳବାୟୁରେ ରହିଛନ୍ତି । ପଖାଳରେ ଅଛନ୍ତି, ତବତରେ ଅଛନ୍ତି, ଧୋଇଆରେ ଅଛନ୍ତି, ନିର୍ଧୋଇଆରେ ଅଛନ୍ତି; ଗାଁଆରେ ଅଛନ୍ତି, ସହରରେ ମଧ୍ୟ ଅଛନ୍ତି । ସରକାର ଭିତରେ ଅଛନ୍ତି, ସରକାର ବାହାରେ ମଧ୍ୟ ଅଛନ୍ତି । ଦଣ୍ଡିବା ଲୋକଙ୍କ ଭିତରେ ଅଛନ୍ତି, ତଣ୍ଡିବା ଲୋକଙ୍କ ଭିତରେ ଅଛନ୍ତି ଏବଂ ଭଣ୍ଡିବା ଲୋକଙ୍କ ଭିତରେ ମଧ୍ୟ ଅଛନ୍ତି । କୋଠାଘରେ ଅଛନ୍ତି, ଚାଳଘରେ ବି ଅଛନ୍ତି; ସଫାଙ୍କ ଭିତରେ ଅଛନ୍ତି, ମଇଳାଙ୍କ ଭିତରେ ଅଛନ୍ତି । ଯେଉଁମାନଙ୍କ ନାମ ଦିନ ନାହିଁ, ରାତି ନାହିଁ ଖବରକାଗଜମାନଙ୍କରେ ବାହାରୁଛି, କାନ୍ଥ ଓ ବାଡ଼ଠାରୁ ଆରମ୍ଭ କରି ବହିର ପୃଷ୍ଠା ପର୍ଯ୍ୟନ୍ତ ଯେଉଁମାନଙ୍କର ଫଟୋ ନିତି ଛପା ହେଉଛି, ଯେଉଁମାନଙ୍କର ବାଜା ନିତି ବଜା ହେଉଛି, ସେମାନଙ୍କ ଭିତରେ ବାବୁ ଅଛନ୍ତି ଏବଂ ଯେଉଁମାନେ ଆପଣାର ନାମଗୁଡ଼ାକ କେବେ ନା କେବେ ଖବରକାଗଜରେ ବାହାରିବ ବୋଲି ସକ୍ରିୟ ଭାବରେ ଅପେକ୍ଷା କରି ରହିଛନ୍ତି, କେବେ ନା କେବେ ଲୋକଲୋଚନର ଗୋଚରକୁ ଆସିବ ବୋଲି ଆପଣାର ଫଟୋଗୁଡ଼ିକୁ ନିତି ସାଉଁଳେଇ ଥାପୁଡ଼େଇ ସାଇତି ରଖିଛନ୍ତି, ସେମାନଙ୍କ ଭିତରେ ମଧ୍ୟ ବାବୁ ଅଛନ୍ତି । ଯେଉଁମାନେ ତାମ୍‌ଜାନ୍‌ର ଭିତରେ ବସିଛନ୍ତି, ସେମାନଙ୍କ ଭିତରେ ବାବୁ ଅଛନ୍ତି । ଯେଉଁମାନେ ବାହକର ଭୂମିକା ଗ୍ରହଣ କରି ତାମ୍‌ଜାନ୍ ଗୁଡ଼ାକୁ ବୋହିବାରେ ଲାଗିଛନ୍ତି, ସେମାନଙ୍କ ଭିତରେ ବି ବାବୁ ଅଛନ୍ତି । ଯେଉଁମାନେ ଅବସର ଗ୍ରହଣ କରି ସାରିଲେଣି, ସେମାନଙ୍କ ଭିତରେ ବାବୁ ଅଛନ୍ତି ଓ ଯେଉଁମାନେ ଅବସର ଗ୍ରହଣ କରିବାକୁ ମୋଟେ ରାଜି ହେଉ ନାହାନ୍ତି, ସେମାନଙ୍କ ଭିତରେ ବାବୁ ଅଛନ୍ତି ।

ବାବୁ ସବୁଠାରେ ଅଛନ୍ତି । ଏମାନେ ଜୀବନଟାକୁ ଭାରି ସହଜ ମଣନ୍ତି । ବୁଦ୍ଧି ଥିଲେ ସଂସାରରେ ସବୁକିଛି କରାଯାଇପାରିବ ବୋଲି ବିଶ୍ୱାସ କରନ୍ତି । ମୁହଁ ଥିଲେ ସବୁକିଛି କୁହାଯାଇ ପାରିବ ବୋଲି ମଧ୍ୟ ବିଶ୍ୱାସ କରନ୍ତି । ବହୁମୁଖୀ ଜୀବନକୁ

ଏମାନେ କେବଳ ଗୋଟିଏ ଜଳାକବାଟି ଭିତରେ ଏକପ୍ରସ୍ଥଯୁକ୍ତ କରି ଦେଖୁଥାନ୍ତି । ଜୀବନରେ ସବୁକିଛିକୁ କେବଳ ଏକପ୍ରସ୍ଥଯୁକ୍ତ ବୋଲି ବିଶ୍ୱାସ କରନ୍ତି । ଏମାନେ ସଂସାରଟାକୁ ପ୍ରକୃତରେ ଭାରି ଅସହଜ କରି ପକାନ୍ତି । ଜୀବନଟା ଓ ଜୀବନଭୂମିର ଯାବତୀୟ ସମ୍ବନ୍ଧକୁ ଏମାନେ ଭାରି ଅସହଜ କରି ରଖିଥାନ୍ତି, ଚଳଣିକୁ ଅଚଳନ୍ତି କରି ଦିଅନ୍ତି ଓ ଅଚଳନ୍ତିକୁ ବେଶ୍ ଚଳାଇ ଦେଇ ପାରନ୍ତି । ସେମାନଙ୍କର ଚଳଣି ଓ ଅଚଳନ୍ତି ଗୁଡ଼ାକର ଏକ ସଂଗତିଯୁକ୍ତ ବିଚାର କରି ପାରିବା ପାଇଁ ସତେ ଯେପରି ସଂସାରର କୌଣସି ସଂହିତା ମଧ୍ୟ କାମ ଦେଇ ପାରେ ନାହିଁ । ସଂହିତା ଆସେ, ସଂହିତା ଭଙ୍ଗା ହୁଏ, ସଂହିତା ପୂଜା ପାଉଥାଏ । ସଂହିତା ଆସିଲାବେଳେ ସେହି ବାବୁମାନେ ହିଁ ତା'ର ପୁରୋଧା ହୁଅନ୍ତି, ସଂହିତା ଭଙ୍ଗା ହେଲାବେଳେ ମଧ୍ୟ ଗଳାରେ ଫୁଲମାଳ ଲମ୍ବାଇ ସେହି ବାବୁମାନେ ହିଁ ବିସର୍ଜନବେଦୀର ଚଉପାଶରେ ବିଶେଷ ଆସନମାନଙ୍କରେ ବସିଥାନ୍ତି ଏବଂ ସଂହିତାର ପୂଜା ହେଲାବେଳେ ମଧ୍ୟ ସେଇମାନେ ହିଁ ମନ୍ଦିରର ଶୁଭ ଦିଅନ୍ତି, ମନ୍ଦିର-ପ୍ରବେଶରେ ଫିତା କାଟନ୍ତି । ମନ୍ଦିର-ଉଦ୍‌ଘାଟନର ଫଳକ ଗୁଡ଼ାକରେ ଠାକୁରଙ୍କର ମହିମା ଅପେକ୍ଷା ସେହି ବାବୁମାନଙ୍କର ନାମଗାରିମାଟା ହିଁ ଅଧିକ ପରିମାଣରେ ଝଟକିବାରେ ଲାଗିଥାଏ; ପ୍ରଥମ ଦୀପଟି ସେହିମାନଙ୍କ ଦ୍ୱାରା ଜଳାହୁଏ ଓ ପ୍ରଥମ ଧଣ୍ଡା ସେହିମାନଙ୍କ ଦ୍ୱାରା ଚଢ଼େ ।

ଆପଣ ଏ ବାବୁମାନଙ୍କୁ ଦେଖିଛନ୍ତି ? ଦାସବଂଶର ଇତିହାସପାଞ୍ଜିଗୁଡ଼ାକୁ ଘାଣ୍ଟି ତଥ୍ୟ ଓ ଅତଥ୍ୟର ନିରୂପଣ କଲାବେଳେ ଆପଣ କେବେ ଏମାନଙ୍କର ଗନ୍ଧ ବାରି ପାରିଛନ୍ତି ? ଆଧୁନିକତାର ଢ଼ୋଲ ଭିତରେ ଆପଣ ଏହି ପୁରୁଣା ମୂଷାମାନଙ୍କୁ କେବେ ଆବିଷ୍କାର କରି ପାରିଛନ୍ତି ? ପ୍ରଗତିବାଦର ଫାଶ ଭିତରେ ଆପଣ ଏହି ଦୁର୍ଦ୍ଧର୍ଷ ବରାହମାନଙ୍କୁ କେବେ ଛନ୍ଦି ହୋଇ ପଡ଼ିଥିବାର ଦେଖିଛନ୍ତି ? ଆପଣମାନେ ନୂଆ ଘରର ପୁରୁଣା ଠଣାଗୁଡ଼ାକୁ କେବେହେଲେ ଅଣ୍ଡାଳି ଦେଖିଛନ୍ତି ? ଗାଆଁ ଭିତରୁ ନିତି ଗୋଚରକୁ ଯାଇ ନିତି ସନ୍ଧ୍ୟାକୁ ପୁଣି ଗୋଚରରୁ ଗାଆଁକୁ ବାହୁଡ଼ି ଆସୁଥିବା ଚିହ୍ନା ଗୋଠଟି ମଧ୍ୟରେ ଆପଣମାନେ ଏହି ପ୍ରଳମ୍ବାମାନଙ୍କୁ କେବେହେଲେ ଆବିଷ୍କାର କରି ପାରିଛନ୍ତି ? ତେବେ ଆପଣମାନଙ୍କ ହାତରେ ଏ ବାବୁମାନେ କେବେ ନା କେବେ ନିଶ୍ଚୟ ଆସି ବାଜିଥିବେ । ଆପଣଙ୍କ ହାତରେ ଲାଙ୍ଗୁଳ ପିଟିଦେଇ ଅଥବା ଫେର ବଜାଇଦେଇ ଏମାନେ ପିଛୁଳାକ ମାତ୍ରକେ ପୁଣି କୁଆଡ଼େ ଛୁ' କରି ଆପଣଙ୍କୁ ଏକାବେଳେ ବିମୂଢ଼ କରି ଦେଇଥିବେ ସତ, ତଥାପି ସେମାନଙ୍କର ଅସ୍ତିତ୍ୱ ବିଷୟରେ ଆପଣଙ୍କୁ ଅବଶ୍ୟ ଏକ ସୁନିଶ୍ଚିତ ସଙ୍କେତ ଦେଇ ଯାଇଥିବେ । 'ହେଇ ଏଠି', 'ହେଇ ଏଠି' ବୋଲି ଫୁତ୍କାରି ଆପଣମାନଙ୍କୁ ସେମାନେ ହୁଏତ ଭାରି ଘୁଙ୍ଗୁଳାଇ ଦେଇଥିବେ । କେତେବେଳେ ଆପଣ ଏକଲୟ

ହୋଇ ଅନାଇ ରହିଥିବାବେଳେ କୁଆଡ଼ୁ ଝଡ଼ବେଗରେ ଜିପ୍‌ରେ ଆସି ପୁଣି ମୁହୂର୍ତ୍ତକ ମଧ୍ୟରେ ଜିପ୍ ଉଡ଼ାଇ କୁଆଡ଼େ ମନ କୁଆଡ଼େ ଛୁଟି ପଳାଇଥିବେ । ଆପଣ ଦେଖୁ ଦେଖୁ ଏ କୋଠାରୁ ବାହାରି ସେ କୋଠାରେ ଯାଇ ପଶି ଯାଇଥିବେ, ଏ ବେଶଟା ଛାଡ଼ି, ସେ ବେଶଟାକୁ ପିନ୍ଧି ପକାଇଥିବେ, ଏ ଗାଦୀରୁ ଉଠି ସେ ଗାଦୀରେ ଯାଇ ବସି ଯାଇଥିବେ । ସୁଧାଭାଣ୍ଡ ଧରି ମୋହିନୀ ବେଶରେ ସୁଧା ପରଷୁ ପରଷୁ ପୁଣି ହଠାତ୍ କେତେବେଳେ ସୁଦର୍ଶନ ପେଷି ମସ୍ତକ କାଟି ଦେଇଥିବେ । ଆପଣ ଏମାନଙ୍କୁ ଶ୍ରେଣୀବିଭାଗ ଅନୁସାରେ ଚିହ୍ନିବା ଲାଗି ମୋଟେ ବେଳ ପାଇ ନଥିବେ । ସେମାନଙ୍କର ପଂକ୍ତିଟିକୁ ଆପଣ ଆଦୌ ଠଉରାଇ ପାରି ନଥିବେ । ସେମାନଙ୍କୁ ଆପଣାର କରିବାକୁ ଯାଇ ଆପେ କୂଳ ହରାଇ ବସିଥିବେ ସିନା, ମାତ୍ର ସେମାନଙ୍କର ତଥାପି ପତ୍ତା ପାଇ ନଥିବେ । ସେମାନେ ଆପଣଙ୍କ ଆଡ଼କୁ ଅନାଇ ସତେ ଅବା କେଜାଣି କାହିଁକି ପ୍ରସନ୍ନ ହେଲା ପରି ଥିରି ଥିରି କରି ହସି ଆସୁଛନ୍ତି ବୋଲି ଭାବି ଏବଂ ତା'ପରେ ତାହାର ପ୍ରତ୍ୟୁତ୍ତର ସ୍ୱରୂପ ନିଜେ କିଞ୍ଚିତ୍ ହସିବା ଲାଗି ଚେଷ୍ଟା କରି କେତେବେଳେ ଆପଣ ନିଜେ ଲାଜରା ହୋଇ ପଡ଼ିଥିବେ ସିନା, ମାତ୍ର ସେମାନଙ୍କୁ କଦାପି ଆପଣା ଆଡ଼କୁ ଟାଣି ଆଣି ପାରି ନଥିବେ । ଆପଣ ସେମାନଙ୍କୁ ମଲାଗୁଣୀ ନଈର ଦୁଇ ପାଖରେ ହିଁ ଦେଖିଥିବେ । କେତେବେଳେ ଏ ପାଖରେ ଦେଖିଥିବେ ତ ପୁଣି କେତେବେଳେ ସେପାଖରେ ମଧ୍ୟ ଦେଖିଥିବେ ।

ସ୍ୱୟଂ ବାବୁ ହେବାକୁ ଚେଷ୍ଟା କଲାବେଳେ ଆପଣ ଏହି ବାବୁମାନଙ୍କର କିଛି ନା କିଛି ପରିଚୟ ଅବଶ୍ୟ ପାଇଥିବେ । ସ୍ୱୟଂ ଚିତା ଲଗାଇବାକୁ ଯାଇ ଚିତା ଲଗାଇବାର ବିଜ୍ଞାନ ବିଷୟରେ ନିଶ୍ଚୟ କିଛି ନା କିଛି ସନ୍ଧାନ ପାଇଥିବେ । ସ୍ୱୟଂ ମୁଖା ପିନ୍ଧିବାକୁ ମନ କଲାବେଳେ ମୁଖାର ବଜାରରେ ନିଶ୍ଚୟ କିଛି ବୁଲି ଦେଖିଥିବେ । ସମସ୍ତଙ୍କ ଭଳି ହେବା ଲାଗି ମନ କଲାବେଳେ ଆପଣ ନିଶ୍ଚୟ ସମସ୍ତଙ୍କର କିଛିନା କିଛି ସ୍ୱାଦ ପାଇଥିବେ । ସ୍ୱୟଂ ଅଭିନୟ କରିବେ ବୋଲି ରଙ୍ଗମଞ୍ଚ ଗୁଡ଼ାକୁ ଚାଖି ଓ ନିରୀଖି ବୁଲୁଥିବା ବେଳେ ଆପଣ ନିଶ୍ଚୟ ଆକସ୍ମିକ ତଥା ଅନାକସ୍ମିକ ଉଭୟ ଭାବରେ ଅଭିନେତା ମାନଙ୍କର ଗହଣକୁ ଆସିଥିବେ । ଜୀବନର ଚିହ୍ନା ଛକ ଗୁଡ଼ାକରେ ଆପଣାର ଅଙ୍କପଇଟା ବାବୁବିଦ୍ୟା ଗୁଡ଼ାକର ପରଖ ନେଉଥିବା ବେଳେ ଆପଣ ସେଠି କେତେ କେତେ ପ୍ରବୀଣ ଏବଂ ଓସ୍ତାଦଙ୍କର ଭେଟ ମଧ୍ୟ ପାଇଥିବେ । ସଭାରେ ଠିଆ ହେଲାବେଳେ ଆହୁରି କେତେ ସଭାରଞ୍ଜକ ସମଧର୍ମୀଙ୍କର ସଙ୍ଗ ଲାଭ କରିଥିବେ । କେତେ ହସିଥିବେ, କେତେ ମଜ୍ଜିଥିବେ, କେତେ ଢେରାପହଁରା କରିଥିବେ, କେତେ ତାମ୍ବୁଳ ବାଣ୍ଟିଥିବେ । ସାନରୁ ବଡ଼ଟିଏ ହେବା ଲାଗି, ନିଷ୍ଫଳରୁ ଫଳଟିଏ ହେବା ଲାଗି ଓ ନିର୍ବୋଧରୁ ଚତୁରଟିଏ

ହେବା ଲାଗି ଆପଣ ଏହି ବାବୁମାନଙ୍କର କେତେ କେତେ ମହଲରେ ପଶିଥିବେ, ନାକ ଘଷି, ଜିଭ ଦେଖାଇ, କବାୟଦ କରି ଆପଣ ବି କେତେ ପ୍ରଶିକ୍ଷଣ ନେଇଥିବେ, ଜୀବନର କେତେ ପୁରୁଣା ବିଶ୍ୱାସକୁ ଓ କେତେ ଅତିଚିହ୍ନା ପ୍ରେମକୁ କଟକଟି ଦେଇ ଯାବ ପକାଇ ନୂଆ ଅନେକ ଫିସାଦକୁ କେତେମନ୍ତେ ଆତ୍ମସାତ୍ କରିବାକୁ ବାଧ୍ୟ ହୋଇଥିବେ । ଶିଶୁଟିରୁ ବୟସ୍କ ହୋଇଥିବେ, ତରଳରୁ ଘନ ହୋଇଥିବେ, କାଉଁଦାରୁ ନିଦା ହୋଇଥିବେ, ସହଜରୁ ଜଟିଳ ହୋଇଥିବେ, ନିର୍ମଳ ଛନ ଛନ ଘାସପଡ଼ିଆରୁ କଣ୍ଟାବଣଟିଏ ହୋଇ ଉଠୁରି ଥିବେ । ନିଜର ଆଖିଗୁଡ଼ାକୁ ଓପାଡ଼ି ପକାଇ ଚାରି ହାତରେ ଚାରିଟା ଅଙ୍କୁଶ ଧରି ବାହାରି ଥିବେ । ଆପଣାର ଶ୍ରଦ୍ଧା-ଘରେ ତାଲା ପକାଇ ଦେଇ ଆପଣ ତାହାରି ବାହାରେ ଚାରିଟା ତାବିଜ ବି ବାନ୍ଧିଥିବେ । ଅର୍ଥାତ୍, ଗୋଟିଏ ଭାଷାରେ କହିଲେ, ଆପଣ ମଣିଷର ଏହି ଅକିଞ୍ଚନ ସ୍ତରଟିରୁ ବାହାରି ଯାଇ ବାବୁ ହୋଇ ଯାଇଥିବେ । ତେଣିକି ବାବୁମାନଙ୍କ ଭିତରେ ହିଁ ଆପଣଙ୍କର ଗଣାପୋଛା ହୋଇଥିବ, ତେଣିକି ବାବୁମାନଙ୍କ ହାଣ୍ଡିରେ ଆପଣଙ୍କ ପାଇଁ ମଧ୍ୟ ଶିରିଣି ବଢ଼ା ହୋଇଥିବ ।

ଆପଣଙ୍କୁ ଏଇଟା ଭାରି ସୁହାଇ ଥିବ, ଭାରି ନିରାପଦ ଲାଗିଥିବ,–ଆପଣଙ୍କୁ ଭାରି ଶାନ୍ତ ଲାଗିଥିବ; ସତେଅବା ଥଳ ପାଇଗଲା ପରି ମନେ ହୋଇଥିବ, କଟା ନାହି ପୁଣି ଯୋଡ଼ି ହୋଇ ଯାଇଥିବ,–ପୁଣି ମାତୃଅଙ୍କକୁ ବାହୁଡ଼ି ଆସିବା ପରି ମନେ ହୋଇଥିବ । ଶୀତତାପ ନିୟନ୍ତ୍ରିତ କୌଣସି ବଖୁରିଟି ଭିତରେ ଶୀତଳ କଳା ଟେବୁଲ୍‌ଟି ଉପରେ ଥିର ହୋଇ ରହିଥିବା ପଥର ଫୁଲଦାନୀଟି ପରି ଆପଣ ବି ଏକାବେଳେକେ ଶାନ୍ତ ହୋଇ ଯାଇଥିବେ ଏବଂ ତା'ପରେ ସବୁ ରମଣୀୟ ବୋଧ ହୋଇଥିବ । ଜୀବନଟା କେବଳ ଏକ ରମଣସ୍ଥାନ ପରି ଲାଗିଥିବ । ଜୀବନର ସବୁ ଅଝଟ କୁଆଡ଼େ ଥଣ୍ଡା ହୋଇ ଯାଇଥିବ । ସବୁ ସ୍ୱପ୍ନଦେଖା, ସବୁ ଝୁଣ୍ଟିବା କୁଆଡ଼େ ପାସୋର ଯାଇଥିବ । ତା'ପରେ ଆପଣ ଆରାମରେ ରହିଥିବେ, ରାଜଧାନୀରେ ନିଜ ପଇସାରେ ତିଆରି କୋଠା ଘରେ ରହିଥିବେ, ନିଜର ସ୍ଥାୟୀ ଚାକିରୀଟିରେ ବଜର ହୋଇ ରହିଥିବେ, ଆପଣାର ଥିର ପୋଖରୀଟି ଭିତରେ ଦିପଦାଣ୍ଡିଟିଏ ପରି ଠିଆ ହୋଇ ରହିଥିବେ । କୌଣସି ପବନ ଆପଣଙ୍କୁ ଆଉ କଦାପି ହଲାଇ ପାରୁ ନଥିବ । ତା'ପରେ ଆପଣ ସଭାରେ ରହି ପାରିବେ, ସଙ୍ଗତରେ ରହି ପାରିବେ; କ୍ଷମତାରେ ରହି ପାରିବେ ଓ ଖିଦମତରେ ରହି ପାରିବେ । ସାହିତ୍ୟରେ ରହି ପାରିବେ, ସୁଧୀମେଳରେ ରହି ପାରିବେ, ସୁଆଙ୍ଗ ଭିତରେ ବି ରହିପାରିବେ । ଅଭିନୟ ଆଉ ତେଣିକି ଅଭିନୟ ବୋଲି ଲାଗିବ ନାହିଁ, ପୋଲାଗୁଡ଼ାକ ପୋଲା ଭଳି ଲାଗିବ ନାହିଁ, ପଙ୍କଗୁଡ଼ାକ ପଙ୍କ ଭଳି ବି ଲାଗିବ ନାହିଁ । ଫାଙ୍କିପଣରେ ଆପଣ ଜଗତଜିତା ହୋଇ ରହିବେ । ପ୍ରୀତିପଣରେ ମୋଟେ କାହାରି ହୋଇ ନ ରହିବେ

ପଛକେ, ନିଜ ଜମାଖର୍ଚ୍ଚର ଖାତା ଭିତରେ ଆପଣ ସାରା ସଂସାରଟାକୁ ବାନ୍ଧି ରଖି ପାରିବେ । ସଂସାରଟା ଯାକକୁ ଗଣି କରି କହିଦେଇ ପାରିବେ । ତା'ପରେ ଆପଣ ସମସ୍ତଙ୍କର ହାନିଲାଭ ବିଚାର କରି ପାରିବେ, ପଞ୍ଜିକାର ପରି ଆୟବ୍ୟୟର ଭାଗ୍ୟଫଳ ଗୁଡ଼ାକୁ କହିଦେଇ ପାରିବେ, ଜୀବନକୁ ପଙ୍ଗୁ କରି ରଖିଥିବା ରଜ୍ଜୁ ଗୁଡ଼ାକର ଆୟୁଷ ଆପଣଙ୍କର ମରଜିର ମାଞ୍ଜା ଦିଆ ହୋଇଥିବା ତାର ପରି ଟାଣ ହୋଇ ରହିବ । ଆପଣ ନିଜକୁ ଯୁଗନ୍ଧର ବୋଲି ଅନୁଭବ କରିପାରିବେ, ସମସ୍ତଙ୍କର ଭାଗ୍ୟଧର ବୋଲି ଅନୁଭବ କରିପାରିବେ ।

ଏହି ଅସଲ୍ ସିଦ୍ଧିଟିକୁ ଲାଭ କରି ସାରିବା ପରେ ଆପଣ ଆମ ସଂସାରର ଠିକ୍ କେଉଁ କ୍ଷେତ୍ରଟିକୁ ଯିବେ କହନ୍ତୁ, ମୁଁ ବଡ଼ ସହଜରେ ଆପଣଙ୍କ ଭାଗ୍ୟଫଳ ଗୁଡ଼ାକୁ ଗଣନା କରି କହିଦେଇ ପାରିବି । ମୁଁ ଆପଣଙ୍କର ବର୍ଣ୍ଣ-ମୀମାଂସା କରି ଦେଇ ପାରିବି । ଆପଣ ବଡ଼ଲୋକ ହେବେ, ଧନ ଅର୍ଜିବେ, ସୁନା କୁଲେଇରେ ପାହୁଡ଼ା ହୋଇ ଜାତୀୟ ଶ୍ମଶାନ ସତୀଚଉରାରେ ପୋଡ଼ା ହେବାର ଭାଗ୍ୟ ଲାଭ କରିବେ ? ଆପଣ ଇଚ୍ଛାକଲା ମାତ୍ରକେ ଏହି ପଥଟି ଆପଣଙ୍କ ଲାଗି ସମ୍ପୂର୍ଣ୍ଣ ଭାବରେ ଉନ୍ମୁକ୍ତ ହୋଇଯିବ । ଏହି ସଂସାରରେ କେହି ହେଲେ ଆପଣଙ୍କର ବନ୍ଧୁ ହୋଇ ନ ରହନ୍ତୁ ପଛକେ, ମାତ୍ର ସମସ୍ତେ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ସଦା ପ୍ରସ୍ତୁତ ହୋଇ ରହିଥିବେ । ଅନେକ ସମୟରେ ହୁଏତ ଆଗତୁରାହିଁ ପ୍ରସ୍ତୁତ ହୋଇ ରହିଥିବେ । ଆପଣଙ୍କର ଫାଇଲଟାକୁ ଯଥୋପଯୁକ୍ତ ଉଦାରତା ଦେଖାଇ ସେମାନେ ସଙ୍ଗେ ସଙ୍ଗେ ଉପର ଅଫିସରଙ୍କ ପାଖକୁ ପଠାଇ ଦେବେ – ନା, ଦରକାର ପଡ଼ିଲେ ବରଂ ନିଜେ ଫାଇଲ୍‌ଟାକୁ ହାତରେ ଧରି ହାକିମଙ୍କ ପାଖକୁ ଚାଲିଯିବେ ଓ ସିଆଡୁ ଦସ୍ତଖତ କରାଇ ନେଇ ଆପଣଙ୍କ ହାତରେ ଆଣି ପହଞ୍ଚାଇ ଦେଇ ଯିବେ । ଆପଣ କେବେ ମହକୁମା ଭିତରକୁ ପଶି ଆସିଲେ ଦପ୍ତରୀ, କିରାନୀ ଓ ସାନ ବଡ଼ କର୍ତ୍ତା ଅକର୍ତ୍ତାମାନେ ସମ୍ମାନ ପ୍ରଦର୍ଶନ କରି ଧଡ଼ଧାଡ଼ ଠିଆହୋଇ ପଡ଼ିବେ । ସବୁ ଅଫିସରେ ଆପଣଙ୍କର ସଙ୍ଖୁଳା ହୋଇପାରିବ, ସବୁ ଅଫିସ ଆପଣଙ୍କର ଖାସମାହାଲ ବୋଲି ଲାଗିବ, ସମସ୍ତେ ଆପଣଙ୍କର ହାତର ପାଞ୍ଚ ବୋଲି ମନେ ହେବେ । ସରକାର ଗୋଟାକଯାକ ରାମଚନ୍ଦ୍ରଙ୍କର କଠାଉ ହୋଇ ଫୁଲ ଚନ୍ଦନ ଲାଗି ହୋଇ ସିଂହାସନ ଉପରେ ଥୁଆ ହୋଇଥିବ, ମାତ୍ର ସକଳ ରନ୍ଧ୍ର ଏବଂ ସକଳ ଛିଦ୍ର ଦେଇ ବସ୍ତୁତଃ କେବଳ ଆପଣଙ୍କର ଶାସନଟା ହିଁ ଚାଲିଥିବ, ଅର୍ଥାତ୍ ଆପଣଙ୍କର କାମଗୁଡ଼ାକ ହିଁ ଫଟ୍‌ଫାଟ୍ ହୋଇ ଯାଉଥିବ । ରେସନ ଦୋକାନୀଠାରୁ ବସ୍ କଣ୍ଡକ୍ଟର୍ ପର୍ଯ୍ୟନ୍ତ ସମସ୍ତେ ଆପଣଙ୍କୁ ଆଗ ବାଟ ଛାଡ଼ି ଦେବାଲାଗି ସବୁବେଳେ ତତ୍ପର ହୋଇ ରହିଥିବେ । ଆପଣ ଫୋନ୍ ଉଠାଇବା ମାତ୍ରେ ହିଁ ସବୁ କାମ ଚଟ୍‌ଚାଟ୍ ବନି ଯାଉଥିବ ଓ ଆପଣଙ୍କର ଅନ୍ୟପ୍ରକାର ଇଚ୍ଛା ଥିଲେ କାମଗୁଡ଼ାକ

ବିଗିଡ଼ି ବି ଯାଉଥିବ । ଆଗେ ଯେପରି ବେଗମ୍‌ମାନେ ଅନ୍ତଃପୁରରେ ରହି ମଧ୍ୟ ଦରବାରରେ ପ୍ରବଳପ୍ରତାପ ହୋଇ ବସିଥିବା ବାଦଶାହମାନଙ୍କୁ ଇଚ୍ଛାନୁସାରେ ନଚାଇ ପାରୁଥିଲେ, ଆପଣ ମଧ୍ୟ ନିରାପଦ ଦୂରତା ବିଶିଷ୍ଟ ଅନ୍ତରାଳରେ ରହି ଅଭିଳଷିତ ସମସ୍ତଙ୍କୁ ବେଶ୍ ନଚାଇ ପାରିବେ । କର୍ତ୍ତା ଆସୁଥିବେ, କର୍ତ୍ତା ଯାଉଥିବେ, କୋଡ଼୍ ବନୁଥିବ ଓ କୋଡ଼୍ ବଦଳି ଯାଉଥିବ; ମାତ୍ର ଆପଣଙ୍କ ହର୍ମ୍ୟରୁ ହୁଏତ ଖଣ୍ଡିଏ ହେଲେ ହେଁ ପଥର ଖସୁ ନଥିବ । ଆପଣ କଦାପି କାହାରି ଫାଶରେ ପଡୁ ନଥିବେ । ଆମ ନବସମାଜରେ ଆପଣ ବ୍ରାହ୍ମଣ ହୋଇ ପୂଜା ପାଇବେ । 'ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି' ପରି ହେବ । ସ୍ୱାଧୀନତା ଲାଭ ପରେ ଆମ ଦେଶରେ ଯେଉଁ ନୂତନ ଜାତି-ପଣର କ୍ରମପ୍ରତିଷ୍ଠା ହୋଇ ଆସିଛି, ତାହାରି ଅନୁସାରେ ଏଠି ଆଗ କାଳର ଚାରିଟା ଜାତି ଥାନରେ ଏବେ କେବଳ ଦୁଇଟା ଜାତିର ପ୍ରତିଷ୍ଠା ହୋଇ ଆସିଲାଣି । ଗୋଟାଏ ହେଉଛନ୍ତି ବ୍ରାହ୍ମଣ, ଆଉ ଗୋଟାଏ ଶୂଦ୍ର । ଆପଣ ବ୍ରାହ୍ମଣଙ୍କ ପଟରେ ରହିବେ, ଉଚ୍ଚ ହୋଇ ରହିବେ, ଅତ୍ୟୁଚ୍ଚ ହୋଇ ରହିବେ, ଅପହଞ୍ଚ ହୋଇ ରହିବେ । ପଇତା ଥାଇ ସୁଦ୍ଧା ଆଉ କେହି ହତଭାଗ୍ୟ ଅଳ୍ପବୁଦ୍ଧି ମାନେ ବ୍ରାହ୍ମଣ ନ ବୋଲାଉଥିବା ସ୍ଥଳେ ଆପଣ ପଇତା ନ ଥାଇ ସୁଦ୍ଧା ଆରାମରେ ବ୍ରାହ୍ମଣ ବୋଲାଇ ପାରିବେ । ବୈଠକରେ ନ ବସି ବି ଆପଣ ବୈଠକରୁ କରାଇ ନିଆଯିବାକୁ ରହିଥିବା କାମଗୁଡ଼ାକୁ ହାସଲ କରିନେଇ ପାରୁଥିବେ, ସ୍ୱୟଂ ନିର୍ବାଚନରେ ଠିଆ ନ ହୋଇଥିଲେ ମଧ୍ୟ ଆପଣ ନିର୍ବାଚନ ଜିତି ପାରୁଥିବେ । ଆପଣ କେତେ କେତେ ସମିତିରେ ରହିପାରିବେ, କେତେ ସମ୍ମିଳନୀରେ ଯାଇ ବସିପାରିବେ, ବିଜ୍ଞାନୀମାନଙ୍କ ମଧ୍ୟରେ କୈବର୍ତ୍ତ ବୋଲାଇ ପାରିବେ, ଆପଣଙ୍କ ଦକ୍ଷିଣହସ୍ତର ବଦାନ୍ୟ ସ୍ୱାଧିକାରଗୁଡ଼ାକ ଦ୍ୱାରା ହିଁ ଧର୍ମ, କର୍ମ, ସାହିତ୍ୟ ଓ ସଂସ୍କୃତି ସବୁ ଚାଲିବ । ଏହି ପବିତ୍ର ଜମ୍ବୁ ଦ୍ୱୀପରେ ଆପଣମାନେ ଗଜପତିଙ୍କର ଥାଟ ହୋଇ ରହିବେ, କଂସା କବାଟ ହୋଇ ରହିବେ, ସଭିଙ୍କର ବାଟକୁ ଉଗାଳି ରହି ପାରିବେ ।

ଅଧ୍ୟାପକ ହୋଇ ଆପଣ ଅଧ୍ୟାପନା ବିଭାଗରେ ରହିବେ ? ଆପଣ ଶିକ୍ଷାବିତ୍ ହେବେ ? ମହାବିଦ୍ୟାଳୟମାନଙ୍କରେ ମହାଶିକ୍ଷାବିତ୍ ହେବେ, ଶିକ୍ଷା-ଯନ୍ତ୍ରର କୁଣ୍ଡେଇବେଣ୍ଟସାହୀରେ ମହାଯନ୍ତ୍ରୀ ବା ସହାୟକ ଯନ୍ତ୍ରୀ ହୋଇ ରହିବେ ? ତେବେ ଆପଣ ପୂରାପୂରି ଭବିଷ୍ୟତର ଦାୟିତ୍ୱରେ ହିଁ ରହିବେ । ଅମୁକ ଯୋଜନା କାଳରେ ବା ଏତେଟା ବର୍ଷ ମଧ୍ୟରେ କୋଉଠି କ'ଣ ହେବ, ଆସନ୍ତା ସନ କେଉଁ କେଉଁ ଥାନାରେ କେତେଟା ଇସ୍କୁଲ ବା କେତେଟା କଲେଜ ଖୋଲାଯିବ, ଆପଣ ଚାହିଲା ମାତ୍ରକେ ସେସବୁର ହିସାବ ଦେଇ ପାରିବେ । ବର୍ତ୍ତମାନ ବିଷୟରେ ଆଦୌ କିଛି ନ କଲେ ମଧ୍ୟ ଚଳିବ । ଠାକୁରେ ଯାହା କରୁଛନ୍ତି, ତାହାତ କେବଳ ମଣିଷର ମଙ୍ଗଳ ପାଇଁ; ତେଣୁ ଆପଣ ନିଜେ ଆଉ

କୋଉଠି କିଛିହେଲେ ନ କଲେ ମଧ୍ୟ ଚମତ୍କାର ଚଳିବ । ଯଦି ଆପଣ ସବା ଉପରେ ଥିବେ, ତେବେ ଇଚ୍ଛା କରିବା ମାତ୍ରକେ ଯାକୁ ସେଠୁ ଉଠାଇ ଆଣି ଏଠାରେ ବସାଇ ଦେଇ ପାରିବେ ଏବଂ ତାକୁ ଏଠୁ ଉଠାଇ ନେଇ ସେଠି ବସାଇ ଦେଇପାରିବେ । ଶିକ୍ଷାର ଉନ୍ନତି କଢେ ହିଁ ଆପଣ ଏସବୁ କରିବେ ଏବଂ ଯଦି ଏକାବେଳେକେ ସବା ଉପରେ ନ ଥିବେ, ଢଣେ ମଝିମଝିଆ ସାନବାବୁ ହୋଇଥିବେ, ତେବେ ଆପଣ ବଡ଼ମାନଙ୍କ ତୁଳନାରେ ଯେ କିଛି କମ୍ ନେଇଆଣି ଥୋଇ ପାରୁଥିବେ, ସେକଥା ଆଦୌ ନୁହେଁ । ଆପଣାର ବିଦ୍ୟାଟିକୁ, ଅର୍ଥାତ୍ ନିଜର ନିରାପଦ ଖୋପଟି ମଧ୍ୟରେ ନିବୁଜ ଓ ନିଖୋଜ ହୋଇ ରହି ପାରିବାର କାଇଦାଟିକୁ ଆପଣ ଆପଣାର ଅଭିଜ୍ଞତାରୁ ହିଁ ଭାରି ଚମତ୍କାର ଭାବରେ ଶିଖି ନେଇ ପାରିଥିବେ । ଆପଣ ତ ଏଠି ଉଚ୍ଚ ଶିକ୍ଷା ଲାଭ କରି ପୁଣି ଉଚ୍ଚ ଶିକ୍ଷା ଲାଭ କରିବାକୁ ବିଦେଶ ଯାଇଥିଲେ, ତା'ପରେ, ଅର୍ଥାତ୍ ତେଣୁ ଆସି ଏଠିକାଟିର ଯନ୍ତ୍ର ଭିତରେ ଟାଣ ହୋଇ କେଉଁଠାରେ ଲାଗିଯାଇ ବା ଲାଖିଯାଇ ସାରିବା ପରେ ଆପଣଙ୍କୁ ଆଉ କେଉଁଠି ହେଲେ ନିଜ ବିଦ୍ୟାର କୌଣସି ପରୀକ୍ଷା ଦେବାକୁ ପଡ଼ିବ ନାହିଁ । କେବଳ ସେତିକି ନୁହେଁ, ଆପଣଙ୍କୁ ଆପଣଙ୍କର ବିଦ୍ୟାଟିକୁ ହୁଏତ କେଉଁଠି ହେଲେ ବି କୌଣସି କାମରେ ଲଗାଇବାକୁ ପଡ଼ିବ ନାହିଁ । ଥରେ ଯନ୍ତ୍ରଟା ଭିତରେ ପଶିଯାଇ ସାରିବା ପରେ ଯନ୍ତ୍ରଟି କ୍ରମେ ପୂରାପୂରି ଆପଣଙ୍କର ନିଜ ଘରେ ରହିଥିବା ଏକ ଯନ୍ତ୍ରରେ ପରିଣତ ହୋଇଯିବ । ସେଇଟା ଆପଣଙ୍କର ଗୋଟାସୁଦ୍ଧା ଆପଣାର ହୋଇଯିବ । ଆପଣାର କର୍ମସ୍ଥାନକୁ ଆପଣ କ୍ରମେ ଆପଣାର ଭାଗ୍ୟସ୍ଥାନର ହିଁ ପ୍ରାୟ ଏକ ସମ୍ପ୍ରସାରଣ ବୋଲି ବିଶ୍ୱାସ କରିବାକୁ ଆରମ୍ଭ କରିବେ ଏବଂ ତାହାକୁ ସେହିପରି ଭାବରେ କାମରେ ମଧ୍ୟ ଲଗାଇ ପାରିବେ । ଆପଣ ସଦା ପ୍ରଫୁଲ୍ଲ ରହିବେ, ସଦା ଉଜ୍ଜ୍ୱଳ ରହିବେ, ଯେକୌଣସି ବ୍ୟାଙ୍କର ମ୍ୟାନେଜର ଅଥବା ଯେକୌଣସି ଘରୋଇ ତେଲ ଅଥବା ପିଡ଼ିଆ କମ୍ପାନୀର ଏକ୍‌ଜିକିଉଟିଭ୍‌ଙ୍କ ଠାରୁ ଆପଣ ଯେପରି ପ୍ରସନ୍ନତା ଏବଂ ଉଜ୍ଜ୍ୱଳତାରେ କୌଣସି ଗୁଣରେ କମ୍‌ହୋଇ ନ ରହିବେ, ସେହି ଦିଗରେ ଆପଣ ସଦା ମନୋଯୋଗୀ ହୋଇ ରହିଥିବେ । ଇଉରୋପରେ କ'ଣ ହୋଇଛି, ଅମରାବତୀରେ କ'ଣ ହେଉଛି ବା କ'ଣ ହେବାକୁ ଯାଉଛି, ଚଣ୍ଡୀଗଡ଼ ବା ଚାନ୍ଦିପୁରରେ ହୋଇଥିବା ଯେଉଁ କନ୍‌ଫରେନ୍‌ସରେ ଆପଣ ଯୋଗ ଦେବାକୁ ଯାଇଥିଲେ, ସେଠି କଣ ସବୁ ହୋଇଥିଲା, ସେହି ବିଷୟରେ ଯାବତୀୟ ହିସାବ ନିକାଶ ଗୁଡ଼ାକ ଆପଣଙ୍କର ନଖଦର୍ପଣରେ ରହିଥିବ । ସେଗୁଡ଼ାକ ବିଷୟରେ ଆପଣ ଚଉକସ ଓ ଚଉଦୋଳ କରି କହି ପାରୁଥିବେ, ଅନ୍ଧମାନଙ୍କୁ ଅବାକ୍ କରି ପାରୁଥିବେ, ଅନ୍ଧାର ଭିତରେ ଦିବାସ୍ୱପ୍ନ ଦେଖାଉଥିବେ, ଏବଂ ବାବୁ ହୋଇ ରହିଥିବେ । ଏଠାରେ ଏହି ଖତକୁଢ଼ଟି ଉପରେ

କେବେ କୌଣସି ମଞ୍ଜିରୁ ଗଜାଟିଏ ବି ବାହାରୁ ନଥିବ ଅଥବା ଏଠି ଏହି ପଙ୍କଟି ଭିତରୁ କେବେହେଲେ କୌଣସି ପଦ୍ମ ଫୁଟିଥିବାର ପ୍ରତ୍ୟୟ ବି ମିଳୁ ନ ଥିବ । ଆପଣ ବିଭାଗ ବଢ଼ାଉଥିବେ, ବିଭାଗୀୟ କର୍ମଚାରୀ ତଥା ଅନର୍ଥକାରୀମାନଙ୍କର ସଂଖ୍ୟା ବଢ଼ାଇ ପାରୁଥିବେ, –ଛଅଟା ଜାଗାରେ ଛପନଟା ପାଳୁଥିବେ ଅର୍ଥାତ୍ ଲାଳନ ଏବଂ ତାଡ଼ନ ଉଭୟ କରି ପାରୁଥିବେ । ଜଗତରେ ଚଉରାଶି ସହସ୍ର ଯୋନିଙ୍କର ଆତଯାତ ହେଉଥିବା ପରି ଆପଣଙ୍କ ଅଫିସରେ ଚଉରାଶି ସହସ୍ର ଫାଇଲ୍ ଚକ୍କର ବୁଲୁଥିବେ । ଥାନପତିଙ୍କ ହାତରୁ ଥାନପତିଙ୍କ ହାତକୁ ଯାଉଥିବେ । ତଥାପି ଯୋଉ ଥାନରେ ରହିଥିଲେ, ଠିକ୍ ସେହି ଥାନରେ ରହିଥିବେ । ଆପଣ ବି ପାହାଚକୁ ପାହାଚ ଉଠି ଉଠି ଯାଉଥିବେ । ଅଧିକରୁ ଅଧିକ ଦରମା ଭୁଞ୍ଜୁଥିବେ, କିନ୍ତୁ ତଥାପି ଯେଉଁଠି ଥିଲେ ଠିକ୍ ସେଇଠି ରହିଥିବେ । ଭିତରେ ମୋଟେ କୌଣସି ଅଭିବୃଦ୍ଧି ଅଥବା ସମ୍ପ୍ରସାରଣ ନ ଘଟିବାକୁ ଯଦି ବୁଢ଼ା ହେବା ବୋଲି କୁହାଯାଏ, ତେବେ ଆପଣ ଗୋଟାସୁଦ୍ଧା ବୁଢ଼ାହୋଇ ବସିଥିବେ ! ବୟସରେ ଗଜାହୋଇ ମଧ ତଥାପି ବୁଢ଼ାହୋଇ ବସିଥିବେ, ହାତଗୋଡ଼ ଥାଇ ମଧ କୋଢ଼ିହୋଇ ବସିଥିବେ; ଏଣେ ଲଗାମ ଗୁଡ଼ାକ ହାତରେ ରହିଥିଲେ ମଧ ଆପଣ ତଥାପି ଅଚଳ ହୋଇ ରହିଥିବେ ।

ଆପଣ ବାବୁ ହେଲେ ଆପଣଙ୍କୁ ଅଧ୍ୟାପକ ହେବାଲାଗି କେହି କଦାପି ମନା କରିପାରିବ ନାହିଁ । ଆପଣଙ୍କର ଡେଣାରେ ଲାଗିଥିବା ପର ଅନୁସାରେ ଆପଣ ଖାଲି ଅଧ୍ୟାପକଟିଏ ହୋଇ ପାରିବେ, ଜଣେ ରିଡ଼ର୍ ବା ଜଣେ ପ୍ରଫେସର୍ ମଧ ହୋଇପାରିବେ । ଆଗରୁ ଅପନ୍ତରା ହୋଇ ପଡ଼ିଥିବା ଜାଗାରେ ଯେଉଁଠି ଉଚ୍ଚ ପାରାଭାଡ଼ି ସବୁ ତିଆରି ହୋଇଛି, ସେହିଠାରେ ହିଁ ଆପଣଙ୍କର ବିହରଣ ହୋଇ ପାରିବ । ସେଠି ଗ୍ରନ୍ଥାଳୟ ଅଛି, ବିଜ୍ଞାନର ପ୍ରୟୋଗଶାଳା ରହିଛି–ମାତ୍ର ଖାସ୍ ଯେଉଁ ଦ୍ରବ୍ୟ ବା ସମ୍ପଦଟି ରହିଥିଲେ ତାହା ପ୍ରକୃତରେ ଗୋଟିଏ ଦେବାଳୟ ପରି ହୋଇ ରହିଥାନ୍ତା, ସେଠାରେ ସେହି ଦ୍ରବ୍ୟଟିର ହିଁ ଅଭାବ ରହିଛି । ଅଧ୍ୟାପକ ଏବଂ ଅଧିଶାସକମାନେ ଆଦୌ କୌଣସି ଦେବାଦେବୀରେ ବିଶ୍ୱାସ କରନ୍ତି ନାହିଁ ବୋଲି ଯେ ସେଠି ଏଭଳି ଦୁର୍ଦ୍ଦଶା ହେଉଛି ତାହା ନୁହେଁ, ମାତ୍ର ଅସଲ କଥାଟା ହେଲା ଯେ ସେମାନେ ଅନ୍ୟ ଦେବାଦେବୀରେ ବିଶ୍ୱାସ କରୁଛନ୍ତି, ଅନ୍ୟ ଚିଲ ଶିଆଳଙ୍କର ଉପାସନା କରୁଛନ୍ତି । କେଉଁ ଆକସ୍ମିକତାର ସୁଅରେ କିପରି ତାଡ଼ିତ ହୋଇ ଯେ ସେମାନେ ଏଠି ଏହି ଖୁଆଡ଼ଟା ଭିତରେ ପଶି ଯାଇଛନ୍ତି, ସେକଥା ସେମାନେ ସ୍ୱୟଂ ଜାଣି ନାହାନ୍ତି । ତେଣୁ ଆପଣା ସହିତ ଗୋଟାଏ ପ୍ରକାରର ଭାରି ହଇରାଣିଆ ସାଲିଶ କରି ଆପଣାର ଭେକଟାକୁ ହିଁ ସେମାନେ ଅସଲ ବିବେକ ବୋଲି ଗ୍ରହଣ କରି ନେଇଛନ୍ତି । ଅର୍ଥାତ୍ ଭେକଟାକୁ ହିଁ ଧ୍ରୁବ ବୋଲି ମଣିଛନ୍ତି, ସକଳ ବିବେକକୁ ଅଧ୍ରୁବ ବୋଲି ମଣିଛନ୍ତି । ଏହି କାରଣରୁ ସେମାନେ

ଧ୍ରୁବଟାକୁ ଛାଡ଼ି ଅଧ୍ରୁବର ଅନୁଧାବନ କରିବାକୁ କଦାପି ଯାଆନ୍ତି ନାହିଁ । ସେମାନେ ସମସ୍ତେ ପାଠ ପଢ଼ାନ୍ତି, ମାତ୍ର ଆପଣା ଭିତରେ ପ୍ରାୟ କେବେହେଲେ ପାଠର କଥା ପକାନ୍ତି ନାହିଁ । କିଏ କାହାଠାରୁ କେତେ ଚାଖଣ୍ଡେ ଉପରେ ବା କେତେ ଜରିବ ପଛରେ ରହିବ, ସେମାନେ ସେହି କଥା ପକାଇଥାନ୍ତି । ସେହି ଅନୁସାରେ ହିଁ ବଂଶଟି ମଧ୍ୟରେ ଆପଣାର କଦର ଓ ସ୍ତରଟିର ନିର୍ଦ୍ଧାରଣ କରିଥାନ୍ତି । ସେହି ନିର୍ଦ୍ଧାରଣ ମଧ୍ୟରେ ହିଁ ପରମ ପ୍ରସାଦିତ ହୋଇ ରହିଥାନ୍ତି । ସେମାନଙ୍କର ଯେଉଁ ଆସ୍ଥାନଟି ସମଗ୍ର ବିଶ୍ୱ ଓ ସବୁ ଯୁଗର ସବୁ ହାଉଆକୁ ଏକାଠି କରି, ଏକାଠି ବଳି ଉପସ୍ଥିତ ମୁହୂର୍ତ୍ତଟି ଲାଗି ଏକ ବଳିଷ୍ଠ ଜୀବନ– ଦୃଷ୍ଟିର ଉତ୍‌ପ୍ରେରଣା ଯୋଗାଇ ଦେଇ ପାରୁଥାନ୍ତା, ସେଇଟିକୁ ସେମାନେ କେବଳ ଏକ ତୃତୀୟ ଶ୍ରେଣୀର ଦ୍ୱୀପରେ ହିଁ ପରିଣତ କରି ରଖିଥାନ୍ତି । ନବାଗତର ନାନା ଉତ୍ସାହ ଓ ନାନା ଜିଜ୍ଞାସା ସେଠି ସେମାନଙ୍କର ରାଢ଼ ଦାନ୍ତଗୁଡ଼ାକରେ ବାଜି କୁଆଡ଼େ ଭାଙ୍ଗି ଗୁଜି ଯାଉଥାଏ । ତାରୁଣ୍ୟ ମରି ଉଡ଼ିଯାଏ । ତତ୍ ପରିବର୍ତ୍ତରେ ସେଠାରେ କେବଳ ନୂଆ ବାବୁମାନେ ହିଁ ତିଆରି ହେବାରେ ଲାଗିଥାନ୍ତି । ନୂଆ ନୂଆ କେତେ କେତେ ଆଳସ୍ୟର ମିଷ୍ଟାନ୍ନ-ବଣ୍ଟନ ଚାଲିଥାଏ । ଅଧ୍ୟାପକମାନେ ସେହି ଯନ୍ତା ଭିତରେ ପଶି ଆପଣାର ସବୁ ବିଶ୍ୱାସ ହରାଇ ଆଖର ମୋଟାଚମ ହୋଇ ବସିଥାନ୍ତି, ସେଠାରେ ଆସି ପହଞ୍ଚୁଥିବା ଆଶାୟୀ ଆଖିଗୁଡ଼ାକ ବି ସେହିପରି ସେଠି ବିଶ୍ୱାସ ହରାଇ ମୋଟାଚମ ହୋଇ ସଂସାର ଭିତରକୁ ବାହାରିବାରେ ଲାଗିଥାନ୍ତି । ତେଣୁ ଆପଣ ବାବୁହୋଇ ରହିବାକୁ ଇଚ୍ଛା କରୁଥିଲେ ଏଇଟି ଭିତରେ ଖାସା ମାନି ରହି ଯାଇ ପାରିବେ, ସେଠାରେ ଅନେକ ନଉତିଙ୍କ ଭିତରେ ଆପଣ ବି କୁଆଡ଼େ ଚିକ୍‌କଣ ହୋଇ ମିଶିଯିବେ । ଦ୍ୱୀପଟିର ଭୋଗ-ବ୍ୟବସ୍ଥାରେ ଆପଣ ଡାହୁକ ବା ଦଇତାପତି ହୋଇ ବେଶ୍ ଖସିଯାଇ ପାରିବେ ।

ବାବୁ, ଆପଣ ସାହିତ୍ୟ କରିବେ, ଅର୍ଥାତ୍ ସାହିତ୍ୟିକ ହେବେ ? ଜନନୀ ଓ ଜନ୍ମଭୂମିର ଯଶ ଗୌରବ ବୃଦ୍ଧି କରିବେ ? ଆପଣ ତ ଅବଶ୍ୟ ଜାଣିଥିବେ ଯେ, ସାହିତ୍ୟ ଗୋଟାଏ ଏମିତି ବେଉସା, ଯେଉଁଥିରେ କି ଯିଏ ମନ ସିଏ ପଶି ପାରିବ । ଆପଣ ଓକିଲ ହୁଅନ୍ତୁ, ଅଫିସର୍ ହୁଅନ୍ତୁ, ପୂଜକ ବା ପଳାତକ ଯାହା ହୁଅନ୍ତୁ ପଛକେ, ଆପଣ ଦିବ୍ୟ ସାହିତ୍ୟ କରି ପାରିବେ, ସାହିତ୍ୟରେ ରସି ପାରିବେ ଓ ରସାଇ ପାରିବେ । ଆପଣ ସଂସାର ଭିତରେ କୋଉ ପୋଷାକଟା ପିନ୍ଧିଛନ୍ତି, କୋଉ ତୁଠରେ ପାଣି ପିଉଛନ୍ତି ଅଥବା କୋଉ ଗୁହାଳରେ ଦାମୁଡ଼ି ହୋଇ ବନ୍ଧା ହୋଇଛନ୍ତି, ଆପଣଙ୍କର ସାହିତ୍ୟ କରିବା ସହିତ ସେଗୁଡ଼ାକର ଆଦୌ କୌଣସି ସମ୍ପର୍କ ନଥିବ । ଆମ ବାବୁମାନଙ୍କ ସଂସାରରେ ଯେଉଁ ସାହିତ୍ୟ ଚଳେ, ସେଥିରେ ଏସବୁର ଆଦୌ କୌଣସି ଲୋଡ଼ା ପଡ଼େ ନାହିଁ । କାରଣ ସେହି ସଂସାରର ରୀତିଟି ଅନୁସାରେ ସାହିତ୍ୟକୁ ଗୋଟିଏ ବିଶେଷ ନିଶା ବା ଗମାତରୂପେ ଗ୍ରହଣ କରାଯାଇ ଥାଏ । ଜୀବନର ଆରୋହଣ – କଥାଟି ଭାଷାରେ ଫୁଟି ଉଠିଲେ ତାହାହିଁ ଯେ ସାହିତ୍ୟ ହୁଏ, ଜୀବନରେ

ନିହିତ ହୋଇ ରହିଥିବା ସତ୍ୟଟି ସହିତ ଅଧିକରୁ ଅଧିକ ପରିଚୟ ଘଟିଲେ ଓ ଜୀବନର ବରାଦିଆ ବାଡ଼ଗୁଡ଼ାକୁ ହଠାତ୍ ଏକ ସବିଶ୍ୱାସ ସାହସର ସହିତ ଉଠାଇଦେଇ ଆପଣାକୁ ସମ୍ପ୍ରସାରିତ କରିଦେଇ ପାରିଲେ ଯେଉଁ ଗାଥାଟି ଜନ୍ମଲାଭ କରେ, ତାହାହିଁ ଯେ ସାହିତ୍ୟ ହୋଇ ଉକୁଟି ଉଠେ, ଏପାଖର ସାହାଲାଗୁଡ଼ାକରେ ସେକଥା କେହି ବୁଝନ୍ତି ନାହିଁ, ବୁଝିବା ପାଇଁ ମନ ବି କରନ୍ତି ନାହିଁ । ସେମାନେ ଅନ୍ୟ ଧାତୁରେ ଗଢ଼ା ହୋଇଥାନ୍ତି । ଅନ୍ୟ ଦେବତା ଲାଗି ଉଦ୍ଦିଷ୍ଟ ହୋଇ ରହିଥାନ୍ତି, ଅନ୍ୟ ଡିହରେ ଲଗାହେବାକୁ ଆସିଥାନ୍ତି । ତେଣୁ ଆପଣ ଏଠି ଚମତ୍କାର ସାହିତ୍ୟ କରିପାରିବେ, ହୁଏତ କେବଳ ଆପଣ ହିଁ ସାହିତ୍ୟ କରିପାରିବେ । ହଁ, ଅନେକ କହୁଛନ୍ତି, ସେମାନେ କୁଆଡ଼େ ନୂଆ ସାହିତ୍ୟ ଲାଗି ଏହି ସଂସାରଟାକୁ ଭାଙ୍ଗିବେ, ଏଠି ରୀତିଗୁଡ଼ାକୁ ବଦଳାଇ ଦେବେ, ଏଠି ଭାଡ଼ି ଭାଡ଼ି ହୋଇ ଲାଗିଥିବା ବୋଗନ୍‌ଭିଲିଆକୁ ତାଡ଼ି ସେମାନେ କୁଆଡ଼େ ତା' ଜାଗାରେ ଯୁଇ ଗଛଟିଏ ପୋତିବେ, ମଲ୍ଲୀଟିଏ ପୋତିବେ । ହଁ, ସେମାନେ କହୁଛନ୍ତି ସତ, ମାତ୍ର ସେଗୁଡ଼ାକ ହେବାକୁ ଆହୁରି ଅନେକ ଦିନ ବାକି ଅଛି । ଆଦର୍ଶବାଦୀମାନେ ଯୁଗ ଯୁଗ ଧରି ଏହି ସଂସାରରେ ସେହିପରି କେତେ ଛଟପଟ ହୋଇ ଆସିଛନ୍ତି; କିନ୍ତୁ ତଥାପି ତ ସଂସାର ଚାଲିଛି । ଏ ସଂସାରଟା ବାସ୍ତବରେ ଯାହା, ଠିକ୍ ସେହି ବାଗରେ ହିଁ ଚାଲିଛି ଏବଂ ସେଇ ପଟଟାରେ ହିଁ ବେଶୀ ସଂଖ୍ୟାରେ ମୁଣ୍ଡ ରହିଛନ୍ତି, ସେଇଥିଲାଗି ଅଧିକ ମଥା ଖରଚ ହେଉଛି ।

ଯଦି ଆପଣ ବାବୁ ହୋଇଥିବେ ଓ ସାହିତ୍ୟ କରିବାକୁ ଚାହିବେ, ତେବେ ସାହିତ୍ୟକୁ ଆପଣ ଗୋଟାସୁଦ୍ଧା ଏକ ବିନୋଦ ରୂପେ ବ୍ୟବହାର କରି ପାରିବେ । ଜୀବନର ଏହି ବଣଟା ଭିତରେ ଆପଣ ସବୁ ଗୋଡ଼ ଓ ସବୁ ହାତକୁ ଲମ୍ବାଇ ଦେଇ ଆରାମରେ ପାରିଧି କରିପାରିବେ, ସନ୍ଦିଗ୍ଧ ଏବଂ ଅସନ୍ଦିଗ୍ଧ ଦୁଇଟିଯାକ ପ୍ରକାରର ମୃଗୟା କରିପାରିବେ । ଜୀବନର ଅନେକ ବିନୋଦ ପରି ସାହିତ୍ୟ ବି ଆପଣଙ୍କ ଲାଗି ଗୋଟାଏ ବିନୋଦ ହୋଇ ରହିବ । ସାହିତ୍ୟର ମାଧ୍ୟମରେ ଆପଣ ସବୁଯାକ ରସକୁ ବୁହାଇଦେଇ ପାରିବେ; କେଉଁ ରସକୁ ଆପଣ କେତେଦୂର ଅଙ୍ଗେ ନିଭାଇଛନ୍ତି, କେଉଁଥିରେ କେତେ ଅବଗାହନ କରିଛନ୍ତି, ସେ ବିଷୟରେ ଆପଣଙ୍କୁ କେହିହେଲେ କେବେ ପଚାରିବାକୁ ଯିବ ନାହିଁ । ମଣିଷର ଦୁଃଖ ବିଷୟରେ ଆପଣ କବିତାଗୁଡ଼ାକର ମଧ୍ୟ ଦେଇ ମୁକ୍ତାନିନ୍ଦୀ ଲୁହମାନ ଗଡ଼ାଇ ପାରିବେ । ପାଠକ ମନକୁ କନ୍ଦାଇ ପାରିବେ, କଲ୍ଲୋଳିତ କରିଦେଇ ପାରିବେ । ଜୀବନକୁ ଛାଡ଼ି ପଳାଇ ଯିବା ହିଁ ଆପଣଙ୍କର ପରମୋଧର୍ମ ହୋଇ ରହିଥିଲେ ମଧ୍ୟ ଆପଣ ସାହିତ୍ୟରେ ବାସ୍ତବବାଦୀ ହୋଇ ଅବତୀର୍ଣ୍ଣ ହୋଇପାରିବେ । ଭିତରେ ସବୁବେଳେ ରକ୍ଷଣଶୀଳ ରହି ମଧ୍ୟ ଆପଣ ବିପ୍ଳବର କବି ହୋଇ ପାରିବେ, ବିପ୍ଳବୀ କବିମାନଙ୍କୁ ନେଇ ସଂଘ ଗଢ଼ି ପାରିବେ । ଆପଣ କୋଉଦିନ କିଛିହେଲେ ନ ବଦଳୁ–ଥିଲେ ମଧ୍ୟ ସବୁକିଛି ଦିନେ ନା ଦିନେ ଅବଶ୍ୟ ବଦଳି ଯିବ ବୋଲି

ଆପଣ ସାହିତ୍ୟ ମଧ୍ୟରେ ହୁଙ୍କାରି କହି ପାରିବେ । ବର୍ତ୍ତମାନ ପୃଥିବୀଟା ଯେଉଁଭଳି ରହିଛି, ଯେଉଁସବୁ ମୂଲ୍ୟରେ ଜୀବନର କାରବାର ଚାଲୁଛି, ତା'ଭିତରେ ଆପଣ ଏକ ଦୁର୍ବିନୀତ ଉତ୍ସାହ ନେଇ ପଶି ଯାଇଥିବେ ଓ ସେହିଠାରେ ହିଁ ପୋକ ପରି ଲାଖି ରହିଥିବେ ସତ, ମାତ୍ର ଏଣେ ବିକାରରହିତ ଭାବରେ ଏହି ପୃଥିବୀର ଉଷର ଜୀବନ, ଏହାର ଏକାକିତା ଏବଂ ଏହାର ନିଃସାରତା ବିଷୟରେ କବିତା ଝାଡ଼ିବାରେ ଲାଗିଥିବେ । ଆପଣଙ୍କର ନାହୁଡ଼ଗୁଡ଼ାକ ଯେଉଁ ସମାଜରେ ବଡ଼ ଜବର ହୋଇ ଲାଗିକରି ରହିଛି ଏବଂ ଆପଣ ବଡ଼ ଏକାଗ୍ର ଭାବରେ ଯେଉଁଠୁ ସାର ଶୋଷିବାରେ ଲାଗିଛନ୍ତି, ସାହିତ୍ୟ ଭିତରେ ଆପଣ ଅତ୍ୟନ୍ତ ପରିପାଟୀ ସହିତ ସେହି ସମାଜଟି ବିଷୟରେ ସତେ ଅବା କେଡ଼େ ସଜାଗ ଓ ସଚେତନ ରହିଛନ୍ତି ବୋଲି ଦେଖାଇ ଦେଇ ପାରୁଥିବେ । ଭାବପ୍ରବଣତାର ନୀଳାର୍ଣ୍ଣବ ଦେଇ ଅସାଧୁତାଗୁଡ଼ାକୁ ବିଲକୁଲ ସାଧୁତା ଭଳି ରଙ୍ଗାଇ ଦେଇ ପାରିବେ । ଏହିପରି କେତେ କ'ଣ ପାରିବେ ।

ଆପଣ ଆଧୁନିକ ହେବେ ନା ପୁରାତନ ହେବେ ? ଆପଣ ଦୁଇଟାରୁ ଯାହା କିଛି ହୁଅନ୍ତୁ, ସେଥିରେ ଆଦୌ କୌଣସି ବାଧା ନାହିଁ ଆଜ୍ଞା, କାରଣ ଆପଣ ଇଚ୍ଛାକଲେ ଏଇଟାରେ ନ ହେଲେ ସେଇଟାରେ ସମାନ ଭାବରେ ପ୍ରତିଷ୍ଠିତ ହୋଇ ପାରିବେ । ଅବଶ୍ୟ ପୁରାତନ ହେବାଟା ଆପଣଙ୍କୁ ଆପାତତଃ ଅଧିକ ସହଜ ଓ ଅଧିକ ସାଧ ବୋଲି ପ୍ରତୀତ ହେବ ଏବଂ ଆଧୁନିକ ହେବାକୁ ହେଲେ ଆପଣଙ୍କୁ ଅଧିକ ପରିମାଣରେ ବିଶିଷ୍ଟ ଶବ୍ଦାବଳୀମାନ ଆୟତ୍ତ କରିବାକୁ ପଡ଼ିବ । ପୁରାତନମାନେ ସେମାନଙ୍କ ନିଜ କାଳରେ ପ୍ରସିଦ୍ଧ ଓ ପ୍ରତିଷ୍ଠିତ ହୋଇ ରହିଥିଲେ ସିନା, କିନ୍ତୁ ଆପଣ ସେମାନଙ୍କୁ କାଳାକାଳ ବାରୁ ନ ଥିବା ଏକ ତୁଚ୍ଛା ତରଳ ଭାବପ୍ରବଣତାରେ ଆମ ଏ ଯୁଗରେ ମଧ୍ୟ ଜରି ବସନ ପିନ୍ଧାଇ ଦେଇ ବେଶ୍ ଅତ୍ୟାଧୁନିକ କରି ବସାଇ ଦେଇ ପାରିବେ । ସେତେବେଳେ ସେମାନଙ୍କ ଅମଳରେ ଆମର ଏହି ଜନଖଣ୍ଡଟାରେ ସେମାନଙ୍କ ଦ୍ୱାରା ଯାହାକିଛି ଉପଲବ୍ଧ ହୋଇଥିଲା, ସେସବୁ ଆଉ କସ୍ମିନ୍‌କାଳେ ଉପଲବ୍ଧ ହୋଇ ପାରିବ ନାହିଁ ବୋଲି ଆପଣ ତା'ପରେ ଛାତି ଫୁଲାଇ କହିବସିଲେ ମଧ୍ୟ ଆପଣଙ୍କୁ ମୋଟେ କୌଣସି ସଙ୍କୋଚ ଲାଗିବ ନାହିଁ । ସେଠି ତ ସବୁ ଥିଲା, ଅର୍ଥାତ୍ ଯେତେ ବରଷର ପୁରୁଣା ଧାନ ଚାହିବ, ତାହା ସେମାନଙ୍କର ଅମାରରେ ଗଦା ହୋଇ ରହିଥିଲା ଓ ଅରୁଚି ଛଡ଼ାଇବା ପାଇଁ ଯେତେ ରକମର ପୁରୁଣା ଆଚାର ଖାଇବାକୁ ଇଚ୍ଛା କରିବ, ତାହା ମଧ୍ୟ ସେମାନଙ୍କର ମରେଇ ତଳେ ଘୁମ ଭିତରେ ମାଟି ନେଶାହୋଇ ରହିଥିଲା ଓ ରହିଛି– ତେଣୁ ଚାଲ, ଆମେ ସମସ୍ତେ ସେହି ଅମାରଟା ଭିତରେ ପଶିବା, ସେଇ ବଣାଗୁଡ଼ାକୁ ଉଦ୍‌ବୋଧନ କରି ଆଣିବା–ଆପଣ ଆମ ଜୟନ୍ତୀ ସଭାମାନଙ୍କରେ ଏହି କଥାଟିକୁ ଯେତେ ଇଚ୍ଛା ସେତେ ପାଟିକରି ଅବଶ୍ୟ କହି ପାରିବେ । କେତେବେଳେ ଖାଲି ଓଡ଼ିଶୀ ହେଉଥିବେ ତ ଆଉ କେତେବେଳେ ଖାଲି ଭାରତୀୟ ହେଉଥିବେ; ମଠା ବା ମାଣିଆବନ୍ଧୀ ପିନ୍ଧି ସଭାଥାନକୁ

ଆସୁଥିବେ ସିନା, ମାତ୍ର ପୁରାତନର ପେଟରାଟା ଭିତରକୁ ବେଶ୍ ଲୋସଡ଼ି ଯାଇ ଆପଣ ପ୍ରତିଷ୍ଠିତ ହୋଇ ରହି ପାରିବେ ।

ଏବଂ ଯଦି ଆପଣ ଆଧୁନିକ ହେବେ, ତେବେ ମଧ୍ୟ ଚିନ୍ତା ନାହିଁ କି ବାଧା ମଧ୍ୟ ନାହିଁ । କେବଳ, ଏତିକି କଥାର ଅବଶ୍ୟ ଏକ ପ୍ରୟୋଜନ ରହିଛି ଯେ ଆପଣ ସାହିତ୍ୟିକ ହେବା ପୂର୍ବରୁ କୌଣସି କଲେଜରେ ପଢ଼ିଥିବେ, ଆଉକିଛି ନହେଲେ ଅନ୍ତତଃ ଇଂରାଜୀ ଭାଷାଟାକୁ ଚୋବାଇ ଆପଣାର ଭାଷାରେ ତାହାର ଏକ ଦ୍ୱିତୀୟ ରୋମନ୍ଥନ ଲାଗି ଆପଣ ନିଜକୁ ସଜବାଜ କରି ରଖିଥିବେ । ଆଧୁନିକତା ଲାଗି ଏକ ଯଥୋପଯୁକ୍ତ ସାହସ ଏବଂ ଏକ ବଳିଷ୍ଠ ସମର୍ଥତା ଅର୍ଜନ କରିବା ପୂର୍ବରୁ ଯେପରି ଅନେକେ ଆଧୁନିକ ସଣ୍ଣାରେ ବେଢ଼ଟାଏ ପିନ୍ଧିଥିଲେ କିମ୍ବା ନିଶଟାଏ ଛାଡ଼ିଦେଲେ ଆପଣାକୁ ଆଧୁନିକ ହୋଇଯିବା ପରି ମନେ କରୁଛନ୍ତି, ସେମିତି ଆପଣ ବି ଆଧୁନିକ ବିଶ୍ୱର ବିଶେଷ ଆକୃତିଗୁଡ଼ିକ ଭିତରେ ଆଦୌ ନଅବଗାହି, ଆପଣ ବାସ କରୁଥିବା ସମାଜଟା ଭିତରେ ଅତିଶୟ ସୁବିଧାସମ୍ପନ୍ନ ଭାବରେ ପ୍ରାୟ ଜଣେ ସାମନ୍ତ ହୋଇ ରହି ଓ ଆଧୁନିକ ବିଶ୍ୱମଣିଷର ବାସ୍ତବ ଅସନ୍ତୋଷ ଓ ବାସ୍ତବ ଅସହିଷ୍ଣୁତା ଗୁଡ଼ାକ ମଧ୍ୟରେ କୌଣସି ପ୍ରକାରେ ଭାଗୀଦାର ନ ହୋଇ ତଥାପି ଆପଣ ସାହିତ୍ୟର ଭାଡ଼ି ଉପରେ ଆପଣାଲାଗି ବେଶ୍ ଆଧୁନିକ ନଗ୍ରଟିଏ ବସାଇ ପାରିବେ, ଆପଣାର ଗୋଟିଏ ସାହୀ ଗଢ଼ି ତାହାରି ଭିତରେ ତିଅଣ-ଦିଆନିଆ କରିବେ, ଅଲଗା ଓଷା ପରବ ପାଳନ କରୁଥିବେ । ଦ୍ୱୀପ ଗୁଡ଼ାକୁ ଭାଙ୍ଗି ଦେବା ହିଁ ଆଧୁନିକତାର ସର୍ବପ୍ରଧାନ ଆକୃତି ଏବଂ ଆହ୍ୱାନ ହୋଇ ରହିଥିଲେ ମଧ୍ୟ ଆପଣ ନିଜର ସାଙ୍ଗସରିସାଙ୍କୁ ନେଇ ଏକ ଚମତ୍କାର ଅଲଗା ୱାର୍କସପ୍ ଅଥବା କ୍ଲବ୍‌ଘର କରି ରହି ପାରିବେ । ଯଦି କୌଣସି ଅଲକ୍ଷଣା ଆପଣଙ୍କୁ କୋଉଠି କ'ଣ ବୁଝି ନପାରିଲା, ସିଏ ଯଦି ଆପଣଙ୍କ ଦ୍ୱାରା ପରିବେଷିତ ଆଧୁନିକ ସାହିତ୍ୟପଥ୍ୟକୁ ପୂର୍ବାଭ୍ୟାସ ଅନୁସାରେ କୌଣସି ଚିହ୍ଲା ମହୁ ଦେଇ ଆସ୍ୱାଦନ କରିବାକୁ ମନ କଲା, ଯଦି ସିଏ ଆପଣଙ୍କର ସଦରଠାରୁ ଆପଣଙ୍କର ମଫସଲ ଗୁଡ଼ାକୁ ବାରି ଦେବାର ଆଗ୍ରହ ଦେଖାଇଲା, ତେବେ ଆପଣ ତାକୁ ଗୋଟାଏ ବୁଢ଼ା ଗଜମୂର୍ଖ, ଥଣପାଠୁଆ ଓ ତେଣୁ ଅଣବାବୁଆ ବୋଲି କହି ଫୋପଡ଼ ଧରି ଖୋଡ଼ାଇବେ, ଫୋପଡ଼ ଗୁଡ଼ାକୁ ହିଁ ସାହିତ୍ୟରେ ନୂତନ ମୂଲ୍ୟବୋଧ ବୋଲି ବ୍ୟାଖ୍ୟା କରିବେ, କୋଉ ସେ ଦେଶରୁ ମନ୍ଥୁରାଇ ଆଣିଥିବା ଜାଲମହୁରା ଓ ପଇତାଗୁଡ଼ାକୁ ଦେଖାଇ ଆପଣ ଆପଣଙ୍କର ଅବିବାଦ୍ୟ ଗୁଣିଆଗିରିଗୁଡ଼ାକୁ ସିଦ୍ଧ କରି ବାହାରିବେ । ଏଠି ଏହି ପାଣ୍ଡବବର୍ଜିତ ପୋଡ଼ାଭୂଇଁଟାରେ କାହିଁକି ସବୁ କବି, ସବୁ ରସଗ୍ରାହୀ ଓ ସବୁ ସାହିତ୍ୟିକ ଯେ ଇଂରାଜୀରେ ଏମ୍.ଏ.ପାସ୍ କଲେ ନାହିଁ, ଆପଣ ସେଥିଲାଗି ସମସ୍ତଙ୍କୁ ଭର୍ତ୍ସନା କରିବାରେ ଲାଗିଥିବେ, ରୋଦନ କରିବାରେ ଲାଗିଥିବେ ଓ ଆପଣାକୁ ସକଳ ନିଷ୍ଠାର ସହିତ ଉଭୟ ଭୂମିରେ ଅସ୍ପୃଶ୍ୟପ୍ରାୟ କରି ରଖିଥିବେ । ବୟସ

ବଢ଼ିଲେ, ଅବଗାହନ ଏବଂ ଅଭିଜ୍ଞତା ବଢ଼ିଲେ ମଣିଷର ବୁଝିବାଶକ୍ତି, ସହିବା ଶକ୍ତି, ଆପଣା ଉପରେ ହିସାବର ଶକ୍ତି ଓ ଆପଣା ଭିତରେ ଅପରକୁ ମଧ୍ୟ ସ୍ଥାନ ଦେବାର ଏକ ଅନେକାନ୍ତବାଦୀ ଶକ୍ତିରେ ବି ବୃଦ୍ଧି ଓ ଅଭିବୃଦ୍ଧି ହୋଇଥାଏ ବୋଲି ଯେଉଁ ଲୋକାପବାଦ ରହିଛି, ଆପଣଙ୍କର ଆଧୁନିକତା କ୍ଷେତ୍ରରେ ଆପଣ ସେଇଟା ଲାଗି ଆଦୌ ଭ୍ରୂକ୍ଷେପ କରିବେ ନାହିଁ; କାରଣ, ପ୍ରଥମରୁ ହିଁ ଯେପରି ଏକଶୃଙ୍ଗ ଓ ଏକଦନ୍ତ ଭାବରେ ଆପଣଙ୍କର ଉପନୟନ ହୋଇ ଆସିଥିବ, ତାହାରି ଫଳରେ ପ୍ରତିଷ୍ଠା ଏବଂ ଯଶସ୍ୱିତା ବଢ଼ିବା ସଙ୍ଗେ ସଙ୍ଗେ ଆପଣ ଇଚ୍ଛା କଲେ ଯେତେ ମନ ସେତେ ଅସହିଷ୍ଣୁ ହୋଇ ପାରିବେ, ସମୀକ୍ଷା ବୋଲି ଗାଳି ଦେବାକୁ ଉପଜୀବ୍ୟ କରି ଧରି ପାରିବେ ଏବଂ ନିରାଲମ୍ବ ଭାବରେ ଶୂନ୍ୟମଣ୍ଡଳରୁ ଶୈଳୀ ଦୁହିଁ ଆଣିବାରେ ତତ୍ପର ହୋଇ ରହିଥିବେ । ଶୈଳୀ ଗୁଡ଼ାକ ଏହି ମାଟିରେ ମୋଟେ ମିଳନ୍ତି ନାହିଁ, ସେଗୁଡ଼ାକ ସେଠାରେ ସେହି ଶୂନ୍ୟ ଭିତରେ ଯେ ମିଳନ୍ତି, କଲିକତା କିମ୍ବା କନେକ୍ଟିକଟ୍‌ର ବଜାରରୁ କିଣା ହୋଇ ଆସିଥିଲେ ଯେ ଗହଣାଗୁଡ଼ାକୁ ପ୍ରକୃତରେ ଅଧିକ ମୂଲ୍ୟଦାର୍ ଗହଣା ବୋଲି କୁହାଯାଏ, ଆପଣଙ୍କର ପ୍ରତିଷ୍ଠା ତଥା ପୁରୁଷାର୍ଥର କେଶଗୁଡ଼ାକ କ୍ରମଶୁକ୍ଳ ହୋଇ ଆସୁଥିବା ସଙ୍ଗେ ସଙ୍ଗେ ଆପଣଙ୍କର ସେହି ବିଶ୍ୱାସଟା ମଧ୍ୟ ତଦନୁପାତରେ ସେହିପରି ଦୃଢ଼ ଓ ଦୁରତିଲଙ୍ଘ୍ୟ ହେବାରେ ଲାଗିଥିବ । ପୁରାତନ ଝିଙ୍କମାନଙ୍କ ତୁଳନାରେ ଆଧୁନିକ ଝିଙ୍କମାନଙ୍କର କାଠିଗୁଡ଼ାକ ହିଁ ସଚରାଚର ଅଧିକ ସଯତ୍ନ ଏବଂ ଯୋଜନାବଦ୍ଧ ଭାବରେ ପ୍ରଶିକ୍ଷିତ ହୋଇ ରହିଥାଏ, ପୁରାତନ ଗୁଞ୍ଜାର ପୋକମାନେ ଆଧୁନିକ ଗୁଞ୍ଜାରପୋକମାନଙ୍କ ତୁଳନାରେ ସଚରାଚର ଅଧିକ ବାଲୁରା ହୋଇ ରହିଥାନ୍ତି । ତେଣୁ, ଏହି କ୍ଷେତ୍ରରେ ଦ୍ୱିପାକ୍ଷୀୟ ଯେକୌଣସି ଝଗଡ଼ାରେ ଆଧୁନିକମାନେ ହିଁ ଯେ ଅଧିକ ପାଟି କରି ପାରିବେ, ଅଧିକ ଯୁକ୍ତି ଦେଖାଇ ପାରିବେ ଓ ସେହିମାନେ ହିଁ ବିଜୟୀ ହେଲେ ବୋଲି ଏକ ପ୍ରତୀତି ମଧ୍ୟ ଜନ୍ମାଇ ପାରିବେ, ସେ କଥାଟାକୁ ଆମେ ସମସ୍ତେ ନିଶ୍ଚୟ ବଡ଼ ସହଜରେ ବୁଝି ପାରୁଥିବା । ମାତ୍ର କାଳ ଅର୍ଥାତ୍ ଏହି ଶରୀରସ୍ଥ ଆୟୁଟାର କରାମତି ପ୍ରକୃତରେ ଏଡ଼େ ଅଟାଳ ଯେ ତାହାର ଘେର ଭିତରେ ପଡ଼ି ଆଧୁନିକମାନେ କ୍ରମେ ପୁରାତନ ହୋଇଯିବେ, ବୁଢ଼ା ବୋଲି ନିନ୍ଦିତ ହେବେ ଏବଂ ଆଉ କିଏ ଆଧୁନିକ ହୋଇ ପ୍ରତିଶୋଧ ନେବାକୁ ଆସିବେ । ମାତ୍ର ଏହି କ୍ଷେତ୍ରରେ ଆପଣ କୌଣସି ଆଶଙ୍କା କରିବେ ନାହିଁ ବାବୁ, କାରଣ ଆପଣ ଏପଟେ ରହନ୍ତୁ ଅଥବା ଅନ୍ୟ ପଟରେ ରହନ୍ତୁ ପଛକେ, ସାହିତ୍ୟର ଏହି ପଞ୍ଜିକାଟି ଚାଲୁଥିବା ପର୍ଯ୍ୟନ୍ତ ଆପଣ ନିଶ୍ଚୟ ବାବୁ ହୋଇ ରହିଥିବେ ।

ବାବୁ, ଆପଣ ଧର୍ମ ଭିତରେ ବି ପଶି ପାରିବେ, ଧର୍ମର ଗଣ ବା ପଲ ଭିତରେ ଆପଣ ଅତି ସହଜରେ ଅଲଗା ହୋଇ ବାରିହୋଇ ପଡୁଥିବା ବଳୀବର୍ଦ୍ଦ ପରି ଶୋଭା ମଧ୍ୟ ପାଇ ପାରିବେ । ଧର୍ମ ଓ ଧାର୍ମିକତାର ମହାସମ୍ମିଳନୀ ମହୋତ୍ସବମାନଙ୍କରେ ଆପଣ ଅପ୍ରତିଦ୍ୱନ୍ଦ୍ୱ

ଭାବରେ ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ ବା ଶିରୋମଣି ହୋଇ ପାରିବେ, ସେହି ସମ୍ମିଳନୀମାନଙ୍କୁ ଆସିଥିବା ପବିତ୍ରାତ୍ମା ପ୍ରତିନିଧିବର୍ଗଙ୍କୁ ଆପଣ ସ୍ୱତନ୍ତ୍ର ଭାବରେ ଡିନର ବା ଲଞ୍ଚ ଦେଇପାରିବେ, ଏବଂ ସମସ୍ତ ଧର୍ମସଭା ଆପଣଙ୍କୁ ଆଶୀର୍ବାଦ କରିବାରେ ଲାଗିଥିବ । ଏହି ଆଶୀର୍ବାଦ ଲାଭ କରିବାଲାଗି ଆପଣଙ୍କୁ ନିଜେ କିଛିହେଲେ କରିବାକୁ ପଡ଼ିବନାହିଁ । ପ୍ରଭୁ, ଧର୍ମସ୍ଥ ପତି ଏବଂ ମହାପତିମାନେ ସ୍ୱୟଂ ଆପଣଙ୍କର ଦ୍ୱାରସ୍ଥ ହେବେ, ଶରଣାପନ୍ନ ହେବାକୁ ଆସିବେ । ସନ୍ଥମାନେ ଆପଣଙ୍କ ଘରେ ରାତ୍ରିଯାପନ କରିବେ, ଗ୍ରହଶାନ୍ତି ଉଦ୍ଦେଶ୍ୟରେ ହୋମ କରିବେ, ଯଜ୍ଞ କରିବେ, ଅଘଟଣ-ଘଟଣ-କଉଶଳୀ ମହାପ୍ରତାପୀ ଗୁରୁମାନେ ହୁଏତ ବାଟ ପଚାରି ଆପଣଙ୍କର କୁଟୀରଟିକୁ ଧନ୍ୟ କରିବାକୁ ଆସିବେ, ଆପଣଙ୍କୁ ପାର୍ଶ୍ୱରେ ବସାଇ କେତେକେତେ ବିଭୂତିର ପ୍ରଘଟଣ କରାଇବେ । ଖବରକାଗଜରେ ସେମାନଙ୍କର ଦିବ୍ୟମୂର୍ତ୍ତିଗୁଡ଼ିକ ସହିତ ଆପଣଙ୍କର ଚିତ୍ରଟି ମଧ ଢଳଢଳ ହୋଇ ଶୋଭା ପାଉଥିବ । ଧର୍ମ ଆପଣା ଭିତରେ କିଛି ହେବାକୁ ବୁଝାଏ ଓ ଆପଣାର ଚେତନାକୁ ସାଙ୍ଗରେ ନେଇ କିଛି ବାଟ ଚାଲିବାକୁ ବୁଝାଏ ବୋଲି ଆପଣ କେବେହେଲେ ମାନିବେ ନାହିଁ । ତା'ହେଲେ, ଆମ ଜଗତର ନାନା ଅଧର୍ମ ମଧ୍ୟରେ ଆପଣମାନଙ୍କର ଧ୍ୱଜାଟି ହିଁ ମନ୍ଦିର ଉପରେ ନେତ ହୋଇ ଉଡୁଥିବ । ଦେବତାଙ୍କର ଭରଣାଲାଗି ଆପଣଙ୍କ ଘରୁ ହିଁ ସବୁଠାରୁ ବଡ଼ ଡାଲାରେ ଭୋଗ ଆସୁଥିବ ଓ ଠାକୁରଙ୍କ ଦୁଆରବନ୍ଧର ସବା ପହିଲି ପାହାଚରେ ଆପଣଙ୍କ ବଉଁଶ ଯାକଙ୍କର ନାଆଁରେ ଶଙ୍ଖମର୍ମର ଉପରେ ଫଳକ ଲେଖାହୋଇ ରହିଥିବ ।

ଆମେରିକାରେ ଏକଦା ରାଷ୍ଟ୍ରପତି ଜନ୍ କେନେଡ଼ି ଥରେ ଗୋଟିଏ ବିଶ୍ୱବିଦ୍ୟାଳୟର ପିଲାମାନଙ୍କୁ ବକ୍ତୃତା ଦେଇ କହିଥିଲେ ଯେ ବିଶ୍ୱର ଭାଗ୍ୟ ନିୟନ୍ତ୍ରଣ କରିବାଲାଗି ଯେଉଁମାନେ ଲୋକ – ଜୀବନର କ୍ଷମତାସ୍ଥାନମାନଙ୍କରେ ରହିଛନ୍ତି, ଲୋକଭାଗ୍ୟକୁ ଯଥାର୍ଥ ନେତୃତ୍ୱ ଦେଇ ପାରିବା ଦୃଷ୍ଟିରୁ ସେମାନଙ୍କୁ ଅନ୍ୟ ନାନାକଥା ମଧ୍ୟରେ ଆମେ ସମସ୍ତେ ଯେ ଦିନେ ନା ଦିନେ ମରିବା, ସେହି ସତ୍ୟଟିକୁ ଅବଶ୍ୟ ମାନି ନେବାକୁ ପଡ଼ିବ । ସ୍ୱମୃତ୍ୟୁର ମାତ୍ର କେତେଟା ମାସ ପୂର୍ବରୁ କେନେଡ଼ି ଏହି କଥାଟି କହିଥିଲେ । ବାବୁ, ଆପଣ ସବୁ କରିବେ ପଛକେ, ଏହି କଥାଟି ଉପରେ କେବେହେଲେ ବିଶ୍ୱାସ କରିବେ ନାହିଁ । ଇତିହାସରେ କୌଣସି ବାବୁ କେବେହେଲେ ସେହି କଥାଟିକୁ ବିଶ୍ୱାସ କରି ନାହାନ୍ତି । ମୁହୂର୍ତ୍ତଟି ଆସି ପହଞ୍ଚିବା ମାତ୍ରକେ ସେମାନଙ୍କୁ ଅବଶ୍ୟ ମରିବାକୁ ହୋଇଛି ସତ, ମାତ୍ର ତା'ପୂର୍ବରୁ, ଅର୍ଥାତ୍ ଆପଣା ଅକଲଟା ମଧ୍ୟରେ ଆତଯାତ ହେଉଥିବା ପର୍ଯ୍ୟନ୍ତ କୌଣସି ବାବୁ ସେପରି ଏକ ଦୁର୍ବଳ ଅପୁରୁଷଜନୋଚିତ ଭାବନାକୁ ଆପଣା ମୁଣ୍ଡରେ ପ୍ରଶ୍ରୟ ଦେଇ ନାହାନ୍ତି । ବଡ଼ଲୋକ ହୋଇଥିବା ବାବୁ ଯଦି ତା' ସମେତ ଆମେ ସମସ୍ତେ ଦିନେ ନା ଦିନେ ଅବଶ୍ୟ ମରିବା ବୋଲି ବିଶ୍ୱାସ କରୁଥାନ୍ତି,

ତେବେ ଆପଣା ବାସସ୍ଥାନଟା ତଳେ ଏତେବଡ଼ ଗୋଟାଏ ଗାଡ଼ ଖୋଳି ସିଏ ପାହାଡ଼ ପ୍ରମାଣେ ସୁନାରୂପା ଏବଂ ମହଣ ମହଣ ଦୁଷ୍ପ୍ରାପ୍ୟ ଦ୍ରବ୍ୟକୁ ପୋତିକରି ରଖି ପାରୁଥାନ୍ତା କିପରି ? ଅଫିସର ହୋଇ ବସିଥିବା ବାବୁ ଯଦି ତା' ସମେତ ଆମେ ସମସ୍ତେ ଦିନେ ନା ଦିନେ ମରିବା ବୋଲି ବିଶ୍ୱାସ କରିବାକୁ ଆରମ୍ଭ କରନ୍ତା, ତେବେ ସିଏ ତ ମାଟିକୁ ଓହ୍ଲାଇ ଆସନ୍ତା, ଆମରି ଲୋକ ପରି ଦିଶନ୍ତା, –ଆମର ଜୀବନରେ, ଆମ ଅର୍ଜନ ତଥା କଷଣରେ ସିଏ ମଧ୍ୟ ଅଂଶୀଦାର ହୁଅନ୍ତା ଓ ସେଇଥିରୁ ହିଁ ଆନନ୍ଦ ଅନୁଭବ କରନ୍ତା; ତଣ୍ଟି ଉପରୁ ବୋତାମଟା ଫିଟାଇ ଦେଇ ସିଏ ଆମରି ସହିତ କେଡ଼େ ହାଲୁକା ଓ କେଡ଼େ ସହଜ ହୋଇ ବସି ପାରନ୍ତା ! ଶିକ୍ଷା-ଯନ୍ତୀ ଓ ଶିକ୍ଷାବିତ୍ ବାବୁମାନେ ଯଦି ସମସ୍ତଙ୍କ ସମେତ ନିଜେ ମଧ୍ୟ ଦିନେ ନା ଦିନେ ମରିବେ ବୋଲି ବିଶ୍ୱାସ କରି ବସନ୍ତେ, ତେବେ ସେମାନେ ଆମ ସମସ୍ତଙ୍କ ସହିତ ଏକାଠି ମିଶି ଏହି ଧୂଳି ଉପରେ ଫୁଲ ଫୁଟାଇବାରେ ସହଯୋଗ କରି ପାରନ୍ତେ, ଜୀବନକୁ ଅଧିକ ସୁନ୍ଦର କରି ଗଢ଼ିବାରେ ମଧ୍ୟ ସହଯୋଗ କରି ପାରନ୍ତେ । ଶିକ୍ଷିତ ରୁଚି ବୋଲି ଗୋଟାଏ ରୁଚି ଅବଶ୍ୟ ରହିଛି ବୋଲି ଆମ ଜଳବାୟୁରେ ଏକ ପ୍ରତ୍ୟୟ ଆଣି ଦେଇପାରନ୍ତେ । ଆଉ ପୁରାତନ ହୁଅନ୍ତୁ ଅଥବା ଆଧୁନିକ ହୁଅନ୍ତୁ, ଆମ ସାହିତ୍ୟିକ ବାବୁମାନେ ଯଦି ସେହି ସନ୍ଦର୍ଭଟି ଉପରେ ଆପଣାକୁ ଠିଆ କରି ସାହିତ୍ୟରେ ବିଚରଣ କରି ଜାଣନ୍ତେ, ତେବେ ସେମାନଙ୍କର ଏ ଅହଙ୍କାରିଆ ଗୋଷ୍ଠୀହୁରୁଡ଼ା ବେଶଗୁଡ଼ାକ ଆଉ କୁଆଡୁ ରହି ପାରନ୍ତା ? ସେତେବେଳେ ତ ସାହିତ୍ୟ ଆସି ଜୀବନକୁ ସ୍ପର୍ଶ କରନ୍ତା, ସାହିତ୍ୟିକର ଜୀବନ ଓ ତାର ସାହିତ୍ୟ ପରସ୍ପରର ସଖା ହୋଇ ବାହାରି ପାରନ୍ତେ, ମୁଖାଗୁଡ଼ାକର ଆଉ କୌଣସି ଆବଶ୍ୟକତା ରହନ୍ତା ନାହିଁ ।

ହଁ, ଏ ବାବୁମାନେ ବି ନିଶ୍ଚୟ ମରିବେ । ଏମାନଙ୍କୁ ପଛରେ ପକାଇଦେଇ ଯୁଗ ଆଗକୁ ବାହାରି ଚାଲିଯିବ । ଏ ବାବୁପଣର ଖୋଳଗୁଡ଼ାକ ପଡ଼ିରହିବ, ମଣିଷ ବାହାରି ଆଗକୁ ଚାଲିଯିବ । ଆମ ବାବୁପଣ ଗୁଡ଼ାକୁ ପଛରେ ପକାଇଦେଇ ଆମେ ସମସ୍ତେ ଆଗକୁ ବାହାରିଯିବା, ପୁରୁଣା କାତିର ବୋଝଗୁଡ଼ାକୁ ଦିହଉପରୁ ଖସାଇ ଦେଇ ଆମେ ସମସ୍ତେ ନାଗସାପର ଖୋଳ ଭିତରୁ ନବୀନ ଯୁଗ ବାହାରି ଆସିବା ପରି ବାହାରି ଚାଲିଯିବା । ବାବୁପଣ ଭିତରେ ଧନ୍ଦି ହୋଇ ମରୁଥିବା ମଣିଷପଣର ଦିନେ ଦିନେ ନା କ୍ଳାନ୍ତି ଆସିବ । ତାର ମୁହୂର୍ତ୍ତଟି ନିଶ୍ଚୟ ଆସି ପହଞ୍ଚିଯିବ ।



# ବୃତ୍ତି ଏ ମୋ' ପୋଷେ କୁଟୁମ୍ବ

ଯିଏ ଯାହା, ତା'ର ବୃତ୍ତି ମଧ୍ୟ କୁଆଡ଼େ ସେଇଆ । ବ୍ରାହ୍ମଣଗିରି ହେଉଛି ବ୍ରାହ୍ମଣର ବୃତ୍ତି, ବେଶ୍ୟାଗିରି ହେଉଛି ବେଶ୍ୟାର ବୃତ୍ତି; ଏବଂ ବୃତ୍ତି ଅନୁସାରେ ବର୍ଣ୍ଣ । ଏହି ବୃତ୍ତି ଅନୁସାରେ ଭଗବାନ ଅନନ୍ତ କାଳରୁ ଚାରି ପ୍ରକାରର ବର୍ଣ୍ଣ ସୃଷ୍ଟି କରିଥିଲେ, ଅର୍ଥାତ୍ ଖଞ୍ଜିକରି ରଖିଥିଲେ । ଚାରୋଟି ବୃତ୍ତି ବଢ଼ି ବଢ଼ି ଚାରିଶହ ହେଲା । ବୋଧହୁଏ ଖାସ୍ ସେଇଥିଲାଗି ଚାରୋଟିବର୍ଣ୍ଣ ମଧ୍ୟ ବଢ଼ି ବଢ଼ି ଚାରିଶହ ବର୍ଣ୍ଣରେ ପରିଣତ ହୋଇଗଲା । ଆମେ ଯେତେ ଯେତେ ମଣିଷ, ସେହି ଅନୁସାରେ ଆମର ଗୋଟିଏ ଗୋଟିଏ ବୃତ୍ତି । କୌଳିକ ବୃତ୍ତି, ପୈତୃକ ବୃତ୍ତି, ଯୁଗ ଅନୁସାରେ ବୃତ୍ତି, ଧର୍ମ ଅନୁସାରେ ବୃତ୍ତି; ଏବଂ ସବୁସୂତ୍ରକୁ ଏକାଠି କରି ଧରିଥିବା ମଣିଷ ସୂତ୍ରଧର ବୋଲାଉଥିବା ପରି, ସବୁ ବୃତ୍ତିକୁ ଏକାଠି ଗୋଟିଏ ଜାଲଭିତରେ ଭିଆଇ ରଖି ଏହି ଦିନ-ରାତି ସହିତ ଆମ ସମସ୍ତଙ୍କୁ ଯିଏ ଆତଯାତ କରୁଛି, ତାହାର ଏହି ବ୍ୟବସ୍ଥା ଅଥବା ବରାଦଟିକୁ ଆମେ ବୃତ୍ତି ବୋଲି କହିବା ନା ଆଉ କ'ଣ ବୋଲି କହିବା ? ଏକରୁ ଅନେକ ହେବା କ'ଣ ଭଗବାନଙ୍କର ଗୋଟାଏ ବୃତ୍ତି ନା ଆଉକିଛି ? ଖଣ୍ଡର ଯେମିତି ଖଣ୍ଡବୃତ୍ତି, କୈବର୍ତ୍ତର ସେମିତି କୈବର୍ତ୍ତବୃତ୍ତି । ବଣିର ଯେମିତି ବଣିବୃତ୍ତି, ସୃଷ୍ଟିଧର ଭଗବାନଙ୍କର ଏହି ସୃଷ୍ଟିକୁ ଧରି ରଖିବାର ନିତ୍ୟନୈମିତ୍ତିକତାଟାକୁ ଆମେ କ'ଣ ଗୋଟାଏ ବୃତ୍ତି ବୋଲି କହିବା ନା ଆଉ କିଛି ବୋଲି କହିବା ? ସକାଳୁ ଉଠି ସଞ୍ଜକୁ ଅସ୍ତ ହୋଇଯିବା କ'ଣ ସୂର୍ଯ୍ୟର ଗୋଟାଏ ବୃତ୍ତି ? ଫୁଟି ଉଠିବା ଏବଂ ଅକାରଣରେ ଅରଣ୍ୟର ଗୋଟାସୁଦ୍ଧା ପଥକୁ ମହକାଇ ଉଠାଇବା କ'ଣ ଫୁଲର ବି ବୃତ୍ତି ? ସେବା କରିବା ଯେପରି ସେବାୟତର ବୃତ୍ତି, ଗୀତ ଗାଇବା ଯେପରି କବିର ବୃତ୍ତି, ରହସ୍ୟ କରିବା ଯେପରି ଭାଣ୍ଡର ବୃତ୍ତି, ଏଗୁଡ଼ାକ କ'ଣ ସେମିତି ଗୋଟାଏ ଗୋଟାଏ ବୃତ୍ତି ? ଏସବୁ ବିଷୟରେ ଆମେ ଯେତିକି ଅଧିକ ଭାବିବାକୁ ଚେଷ୍ଟା କରୁଥିବା, ଯେତିକି ଅଧିକରୁ ଅଧିକ ଗଭୀରକୁ ଯିବାର ଚେଷ୍ଟା କରୁଥିବା, ଆମ ଚାରିପାଖରେ ସତେଅବା ସେତିକି ଅଧିକ ସଂଖ୍ୟକ ବୃତ୍ତି ଏକାବେଳେକେ ଗୁଡ଼ାଇ ହୋଇ ଯାଉଥିବା ପରି ଅନୁଭବ କରୁଥିବା । ଯେଉଁଠାରୁ ବ୍ୟୂହଟି ଭିତରେ ପଶିଥିବା, ପୁଣି

ସେଇଠାକୁ ଫେରିଆସି ବ୍ୟୂହଟି ଭିତରୁ ବାହାରି ଆସି ପାରିବା ଲାଗି ହୁଏତ ଆଉ କୌଣସି ଉପାୟ ବି ଦିଶୁ ନ ଥିବ ।

ଆପଣା ସୀମାଗୁଡ଼ିକର ବେଢ଼କୁ ହିଁ ଯେଉଁ ସମାଜ ଏକମାତ୍ର ବୃତ୍ତି ବୋଲି ଦେଖୁଥାଏ, ଆପଣାର ଗାରଗୁଡ଼ାକୁ ହିଁ ଯେଉଁଯୁଗ ସକଳ ବେଦ ତଥା ସକଳ ବେଦ୍ୟର ଇତିବୃତ୍ତି ବୋଲି ମାନି ନେଉଥାଏ, ସେଠାରେ ସମସ୍ତେ ବୃତ୍ତିଟାକୁ ହିଁ ଶିରୋଧାର୍ଯ୍ୟ କରି ମାନି ନେଇଥାନ୍ତି । ବୃତ୍ତିଟିକୁ ତୁଳାଇନେଇ ପାରିଲେ ସେମାନେ ସତେଅବା ସବୁ ତୁଳାଇ ନେଲେ ବୋଲି ଅନୁଭବ କରିଥାନ୍ତି ଏବଂ ବୃତ୍ତିରେ ମଣ ହେବାଟାକୁ ହିଁ ଜୀବନର ଅଭିପ୍ରେତ ଧର୍ମ ବୋଲି ଗ୍ରହଣ କରିନେଇଥାନ୍ତି । ସେହି ସମାଜରେ ସମସ୍ତେ ପାଞ୍ଜି ଅନୁସାରେ ଚଳନ୍ତି, ପାଞ୍ଜି ଅନୁସାରେ ଚାଳନ୍ତି, ପାଞ୍ଜି ଅନୁସାରେ ଗମନାଗମନ କରନ୍ତି, କରାନ୍ତି । ସେଠି ପାଞ୍ଜି ଅନୁସାରେ ମେଘ ବରଷେ, ପାଞ୍ଜି ଅନୁସାରେ ଫସଲ ଫଳେ ଓ ଫସଲ ଉଜୁଡ଼ିଯାଏ, ପାଞ୍ଜି ଅନୁସାରେ ସୁନା ହଜେ ଓ ସୁନା ମିଳେ ଏବଂ ପାଞ୍ଜି ଅନୁସାରେ ବୁଣିବା, ଦାଇବା, ପାଚିବା ବା ପାଛୁଡ଼ିବା ସବୁ ହେବାରେ ଲାଗିଥାଏ । ଗାର ଭିତରେ, ବୃତ୍ତିର ଚଉକଷ କୋଠି-କଟା ଭିତରେ ନିବୁଜ ହୋଇ ରହିଥିବା ସେହି ଯୁଗ ନିୟମତଃ ଏକ ଆତ୍ମସମ୍ପୂର୍ଣ୍ଣ ଯୁଗ ହୋଇ ରହିଥାଏ । ଆତ୍ମସମ୍ପୂର୍ଣ୍ଣ ଯୁଗଗୁଡ଼ାକ ଅନେକ ସମୟରେ ଆପଣାକୁ ଗୋଟାଏ ଗୋଟାଏ ସୁବର୍ଣ୍ଣ ଯୁଗ କହି ବାହାଦୂରୀ ବି ଦେଖାଇଥାନ୍ତି । ଯେଉଁ ଦେଶର ଇତିହାସରେ ଏହି ସ୍ୱର୍ଣ୍ଣଯୁଗ ଗୁଡ଼ାକ ଯେତେ ଅଧିକ ସଂଖ୍ୟାରେ ରହିଥାଏ, ସେହି ଦେଶକୁ ବିଜ୍ଞ ଲୋକମାନେ, ମଣିଷର ନିୟତିକୁ ତଉଲି ବିଚାର କରୁଥିବା ବ୍ୟକ୍ତିମାନେ ସମୃଦ୍ଧ ଦେଶ ବୋଲି କହିଥାନ୍ତି, ସେଗୁଡ଼ିକର ସଭ୍ୟତାକୁ ସମୃଦ୍ଧ ସଭ୍ୟତା ବୋଲି କୁହାଯାଇଥାଏ । ଅଧିକାଂଶ ସ୍ଥଳରେ ଇତିହାସ କହିଲେ ଏହି ସଭ୍ୟତାଗୁଡ଼ାକର ଇତିହାସକୁ ହିଁ ବୁଝାଏ । ଅନେକ ଲୋକ ଘର କହିଲେ ଯେପରି ନିଜର ଅମାରଟାକୁ ବୁଝନ୍ତି, ଠିକ୍ ସେହିପରି । ସୌନ୍ଦର୍ଯ୍ୟର ବର୍ଣ୍ଣନା କରୁ କରୁ ଯେପରି ଅନେକ ଲୋକ ଆଉ ସବୁକିଛି ଭୁଲି ଦେହରେ ମଣ୍ଡିତ ହୋଇ ରହିଥିବା ଅର୍ଥାତ୍ ଦେହକୁ ମଣ୍ଡନ କରି ରଖିଥିବା ତୁଚ୍ଛା ଅଳଙ୍କାରଗୁଡ଼ାକର ବର୍ଣ୍ଣନା କରିବାର ମାଳଶ୍ରୀ ଗାଇ ବସନ୍ତି, ପ୍ରାୟ ସେହିପରି ।

ଆମ ବୃତ୍ତି ଆମକୁ କୁଆଡ଼େ ମଣିଷ କରାଏ, ଅର୍ଥାତ୍ ଆମର ଆସ୍ଥାନଟିର ନିରୂପଣ କରାଇ ଦିଏ । ଆମକୁ ସାନ କରାଏ, ବଡ଼ କରାଏ; ଉଚ୍ଚ କରାଏ, ନୀଚ କରାଏ; ଗଣ୍ୟ କରାଏ, ଅଗଣ୍ୟ କରାଏ; ଅକିଞ୍ଚନ କରାଏ, ଆରାଧ ବି କରାଏ । ଆମର ସାନ ହେବା ବଡ଼ ହେବା, ଉଚ୍ଚ ହେବା ବା ନୀଚ ହେବା ଅଥବା ଗଣ୍ୟ ହେବା କିମ୍ୱା ଅଗଣ୍ୟ ହୋଇ ରହିବା, —ଏଗୁଡ଼ାକ ସତେ ଯେପରି ଅନେକ ସମୟରେ ଆମ

ଉପରେ ଅର୍ଥାତ୍ ଆମର କୃତି ଉପରେ ନିର୍ଭର ନ କରି ଆମେ ଆଦରି ନେଇଥିବା ବୃତ୍ତିଗୁଡ଼ିକ ଉପରେ ହିଁ ନିର୍ଭର କରୁଥାଏ । ତେଣୁ, ଜୀବନରେ କିଛି ହେବାକୁ ଅର୍ଥାତ୍ କିଛି ଅର୍ଜିବାକୁ ଆମେ ଯେତେବେଶୀ ଚେଷ୍ଟା ନ କରୁ, ଆମ ବୃତ୍ତିଟିକୁ ଠିକଣା କରି ରଖିବାକୁ ହିଁ ଆମେ ଅନେକେ ଆମ ଜୀବନର ସର୍ବବୃହତ୍ ତପସ୍ୟା ବୋଲି ଗ୍ରହଣ କରି ନେଇଥାଉ । ବୃତ୍ତିଟି କରୁଥିବା ପର୍ଯ୍ୟନ୍ତ ବ୍ରାହ୍ମଣ ବ୍ରାହ୍ମଣ ହୋଇ ରହେ, ବୃତ୍ତିଟି କରୁଥିବା ପର୍ଯ୍ୟନ୍ତ ପଣ୍ଡା ପଣ୍ଡା ହୋଇ ରହେ, ଏବଂ ଜଗନ୍ନାଥଙ୍କ ହାତକୁ ନଡ଼ିଆଟିକୁ ବଢ଼ାଇ ଦେଇ ସାରିବା ପରେ ମଧ୍ୟ ଦାସିଆ ବାଉରୀ ସେହି ବାଉରୀ ହୋଇ ରହିଥାଏ । ସ୍ୱର୍ଗକୁ ଗଲେ ମଧ୍ୟ ଆମ ଢ଼ିଙ୍କି କୁଆଡ଼େ ସେଇ ଧାନ କୁଟିବା ବ୍ୟତୀତ ଆଉ କିଛିହେଲେ କରିପାରେ ନାହିଁ । ପୁରୁଷ ପୁରୁଷ ଧରି ଭଗବାନଙ୍କର ଦାସମାନେ କୁଆଡ଼େ ଭଗବାନଙ୍କ ସହିତ କେବଳ ସେଇ ଦାସ ହୋଇ ଜନ୍ମଗ୍ରହଣ କରୁଥାନ୍ତି । ଭଗବାନ ଯେତେଥର ମର୍ତ୍ତ୍ୟଧାମକୁ ଆସନ୍ତି, ଆପଣା ବୃତ୍ତିଟିର ପୂରଣ କରିବା ସକାଶେ ସେମାନେ ମଧ୍ୟ ସେତିକିଥର ଦାସ ହୋଇ ଏଠାକୁ ଆସନ୍ତି । ଏଗୁଡ଼ାକ ଆମ ସଂସ୍କୃତି କଥା, ଆମ ଖାନଦାନର କଥା,– ଆମ ମହିମାର କଥା । ତେଣୁ ଆଗ ବୃତ୍ତି, ତା'ପଛକୁ ଆଉ ଯାବତୀୟ ଯାହାକିଛି । ସମସ୍ତେ ଆପଣାର ବୃତ୍ତିଗୁଡ଼ାକର ଅନୁସରଣ କରୁଥିବା ପର୍ଯ୍ୟନ୍ତ ସଂସାର ଅବିଚଳ ଓ ଅକନ୍ଦଳ ହୋଇ ରହିଥିବ, ଏଠି ପତରଟିଏ ବି ଖଡ଼୍ କରି ହେବ ନାହିଁ କିମ୍ବା ସେଠି ମାଟି ଟିକିଏ ବି ଧସକି ଯିବନାହିଁ । ମର୍ତ୍ତ୍ୟବାସୀ ଶାନ୍ତିରେ ରହିବେ ଓ ତେଣୁ ଗୋଲୋକଧାମରେ ସ୍ୱୟଂ ଭଗବାନ ମଧ୍ୟ ଆଶ୍ୱସ୍ତ ହୋଇ କାଳାତିପାତ କରିବେ । ବିଗିଡ଼ାଗୁଡ଼ାକୁ ସଜାଡ଼ିବା ଲାଗି ତାଙ୍କୁ ଆଉ ମିହନ୍ତ କରି ଆମର ଏଯାଏ ଆଦୌ ଆସିବାକୁ ପଡିବ ନାହିଁ । ସିଏ ବି ନିଶ୍ଚିନ୍ତ ହୋଇ ଆପଣାର ବୃତ୍ତିଗୁଡ଼ାକୁ ଆଚରି ରହି ପାରିବେ । ଆମ ମଣିଷଙ୍କ ଲାଗି ମଡ଼େଲ ହୋଇ ରହିବେ, ଏଠି ଶିଳାଗୁଡ଼ାକ ଲାଗି ଶିଳାଦିତ୍ୟ ହୋଇ ରହିବେ ।

ଯୋଉଠି ରାଜା ରାଜାର ବୃତ୍ତି କରୁଥାଏ, ସେଠି ଆଦୌ କୌଣସି ଶାସନ ରହିଛି ବୋଲି କୁଆଡ଼େ ମୋଟେ ଜଣା ପଡ଼େ ନାହିଁ । ଉଆସ ଭିତରେ ରାମଚନ୍ଦ୍ର ରହିଥାନ୍ତି ଓ ଧୋବା ଘରେ ଧୋବା ରହିଥାଏ,–ଅଯୋଧ୍ୟାରେ ରାମରାଜ୍ୟ ବିରାଜମାନ କରୁଥାଏ । ଯୋଉଠି ପ୍ରଜାଗୁଡ଼ାକ ଆପଣାର ବୃତ୍ତିକୁ ଭୁଲି ଆଉ କିଛିକୁ ମନ କରନ୍ତି, କେବଳ ସେତିକିବେଳେ ଯାଇ ରାଜା ଓ ପ୍ରଜା ଉଭୟ ତରଫର ଶାନ୍ତିଭଙ୍ଗ ହେବାର ଲକ୍ଷଣଗୁଡ଼ିକ ଆସି ଦେଖାଦିଏ, ଶାସନ ଅଛି ବୋଲି ଜଣାପଡ଼େ, ବେଡି ଗୁଡ଼ାକ ଝଣଝାଣ ହେବାରେ ଲାଗନ୍ତି, କୋଲପଗୁଡ଼ାକ ଧଡ଼ଧାଡ଼ ହୋଇ ପଡ଼ି ଯାଆନ୍ତି, ପୋଥି ଗୁଡ଼ାକୁ ଫାଡ଼ି ଦିଆଯାଏ, ଆୟୁଧଗୁଡ଼ାକ ଖଣିରୁ ବାହାରେ । ସଂସାରରେ ଅପାଳନ ଆରମ୍ଭ ହୁଏ, ଅପାଳକ ପଡ଼େ । ମାପଗୁଡ଼ାକ ଭୁଲ ହୋଇଯାଏ, ଅର୍ଥାତ୍ ମାପଗୁଡ଼ାକ ଅନୁସାରେ

ମଣିଷଗୁଡ଼ାକୁ ଆୟତ୍ତ କରି ରଖିବା ଭାରି ଦୁଷ୍କର ହୋଇପଡ଼େ । ତେଣୁ ସଂସାରକୁ ବୁଝୁଥିବା ସୁଜ୍ଞମାନେ କାଳେ କାଳେ ବୃତ୍ତି ଉପରେ ହିଁ ଏତେ ବେଶୀ ଗୁରୁତ୍ୱ ଦେଇ ଆସିଛନ୍ତି । ଆପଣାର ବୃତ୍ତିକୁ ଆଦରି କୁଟୁମ୍ବ ପୋଷିବା ଲାଗି ସେମାନେ ଆମକୁ ପରାମର୍ଶ ଦେଇଛନ୍ତି, ଉପଦେଶ ଦେଇଛନ୍ତି, ଆଦେଶ ବି ଦେଇଛନ୍ତି । କୌଣସି ମହୁଫେଣା ରହୁଥିବା ତିନି ଶ୍ରେଣୀର ମହୁମାଛିମାନେ ଯଦି ଆପଣା ଆପଣାର ବୃତ୍ତିକୁ କୌଣସି କାରଣରୁ ନ କରିବାକୁ ମନ କରିବେ, ଅର୍ଥାତ୍ ଯଦି ନପୁଂସକଗୁଡ଼ାକ ରାଣୀ ହେବାକୁ ମନ କରିବେ ଅଥବା ଆଉ କିଏ ଆଉ କ'ଣ ହେବାକୁ ମନ ବଳାଇବ, ତେବେ ମହୁଫେଣାଟି ଯେ ଆଉ କଦାପି ମହୁଫେଣା ହୋଇ ରହିବ ନାହିଁ, ଆମେ ସେହି କଥାଟିକୁ ଆଖି ବୁଜି ବି କହିଦେଇ ପାରିବା ଏବଂ ମହୁଫେଣାଟି ନ ରହିଲେ ତିନି ବର୍ଣ୍ଣ ଭିତରୁ କେହି ରହିପାରିବେ ନାହିଁ । ଠିକ୍ ସେହିପରି, ବୃତ୍ତିଗୁଡ଼ାକ ରହିଥିବା ପର୍ଯ୍ୟନ୍ତ ଆମର ଘରଟି ମଧ୍ୟ ଘରପରି ହୋଇ ରହିଥିବ ଏବଂ ବୃତ୍ତି ଗୁଡ଼ାକର ଖିଲାପ ହେଲେ ଘରଗୁଡ଼ାକ ଭାଙ୍ଗିଯିବା ହିଁ ସାର ହେବ । ଘର ଭାଙ୍ଗି ଗଲେ ଆଉ କାହାରି ଲାଗି ବାସ ରହିବ ନାହିଁ । ତେଣୁ ଆମେ ସମସ୍ତେ ଆପଣା ଆପଣାର ବୃତ୍ତିକୁ ଆଦରି କରି ରହିବା, ବୃତ୍ତିକୁ ହିଁ ଭବସାଗର-ତରଣର ନୌକା ବୋଲି ଗ୍ରହଣ କରିଥିବା । ଯେଉଁଠି ଯିଏ ଆସି ଲାଖି ଯାଇଛୁ, ଠିକ୍ ସେଇଠି ଲାଖି ରହିଥିବା, ଠିକ୍ ସେଇଟିକୁ ଯାବୁଡ଼ି ଧରିଥିବା । ଯିଏ କାନତରାଟି ହୋଇଛି, ସିଏ କାନତରାଟି ହୋଇ ରହିଥିବ; ଯିଏ ପୋଲିସ ହୋଇଛି, ସିଏ ପୋଲିସ ହୋଇ ରହିଥିବ; ଯିଏ ଅଫିସର ହୋଇଛି, ସିଏ ତାହାରି ଭିତରେ ନିବିଡ଼ ହୋଇ ରହିଥିବ; ଯିଏ ଠିକାଦାର ହୋଇଛି, ସିଏ ସେହିପରି ଠିକାଦାର ହୋଇ ରହିଥିବ । ଅର୍ଥାତ୍, ଗୋଟାଏ ରୂପକ ଲଗାଇ କହିଲେ, ଯିଏ ଯେଉଁଥିପାଇଁ ଠିକା ନେଇଛି, ଅତ୍ୟନ୍ତ ବିଶ୍ୱସ୍ତ ଭାବରେ ସିଏ ସେଇଠାରେ ହିଁ ମଙ୍ଗଟିକୁ ବାନ୍ଧି ରହିଥିବ । ତେବେ ଯାଇ ସଂସାର ଚାଲିବ, ତେବେ ଯାଇ ସେରମାଣ ପୂରିବ । ଏଗୁଡ଼ାକ ସବୁ ଭଗବାନଙ୍କର ବରାଦ, ତେଣୁ ଏଗୁଡ଼ାକରୁ ବାହାରି ଅନ୍ୟକିଛି ହେବାଲାଗି ବା ଅନ୍ୟକିଛିକୁ ମନ କରିବା ଲାଗି ମୋର ଆଉ ଅବକାଶ ରହିଲା କୁଆଡ଼ୁ ? କହିବା ବାହୁଲ୍ୟ, ସଂସାରର ଅଧିକସଂଖ୍ୟକ ମଣିଷ ଏହିପରି ଭାବିଥାନ୍ତି ଓ ଏହିପରି ଭାବରେ ହିଁ ସଂସାରର ଦାଣ୍ଡରେ ଆପଣାର ଖୁଣ୍ଟଟିକୁ ମଜବୁତ କରି ରଖିଥାନ୍ତି, ପ୍ରାୟ ତନ୍ମୟତା ଏବଂ ତଦ୍‌ଗତତା ସହିତ ଦଉଡ଼ିଟିକୁ ନେଇ ବେକରେ ଗଳାଇଥାନ୍ତି ଏବଂ ଯାହାଙ୍କର ମହିମାରେ ସଂସାର ଚାଲିବା କଥା, ତାଙ୍କରି ମହିମାରେ ହିଁ ସମସ୍ତଙ୍କର ସହଯୋଗ ଉପରେ ଭରା ଦେଇ ଆମର ଏହି ସଂସାର ଚାଲିବାରେ ଲାଗିଥାଏ । ଆମକୁ ନରକରୁ ନରକକୁ, ଗହନରୁ ଗହନକୁ ଉଠାଇ ନେବାରେ ଲାଗିଥାଏ ।

ଆମ ସଂସାରର ଏହି ବୃତ୍ତିଟା କେତେ ଦିନରୁ ରହିଥିଲା ଅଥବା କେତେଦିନ ଧରି ସବୁକିଛିର ମୀମାଂସା କରି ଦେଉଥିଲା, କାଳର ହିସାବ କରି କେହି ସେ କଥା କରିପାରିବେ ନାହିଁ ସତ, ମାତ୍ର ଏ କଥାଟି ଏକାନ୍ତ ସତ୍ୟ ଯେ ବୃତ୍ତି ସହିତ ବ୍ରତ ବୋଲି ଆଉ ଗୋଟାଏ ଜିନିଷ ଯେଉଁ ଦିନଠାରୁ ଏହି ଆମ ଘରେ ଆସି ପଶିଲା, ସେହି ଦିନଠାରୁ ହିଁ ଅଜସ୍ର ବିଭ୍ରାଟ ଆରମ୍ଭ ହୋଇଗଲା । ଜୀବନକୁ ଗୋଟାଏ ବ୍ରତ ବୋଲି ଗ୍ରହଣ କରାଯାଇ ପାରେ, ବାଟ ଚାଲିବାକୁ ଏକ ମନ୍ତ୍ର ବୋଲି ଗ୍ରହଣ କରାଯାଇ ପାରେ ଓ ସଂସାରକୁ ଏକ ତୀର୍ଥ ବୋଲି ଗ୍ରହଣ କରାଯାଇ ପାରେ, ଏପରି ଏକ ପାଗଳାମି ଆମ ପୃଥିବୀ ଭିତରେ କେଉଁଦିନଠାରୁ ପ୍ରବେଶ କଲା କେଜାଣି ? ସମ୍ପନ୍ଧଗୁଡ଼ାକୁ କେବଳ କେତେଟା ଖିଅ ନୁହେଁ, ମାତ୍ର ଏକତ୍ର ବାନ୍ଧି ରଖିପାରୁଥିବା ଗୋଟାଏ ସୂତ୍ର ବୋଲି ଯେ ଗ୍ରହଣ କରାଯାଇ ପାରେ, ଚାହାଣିଗୁଡ଼ାକୁ ଯେ ପ୍ରକୃତରେ ପ୍ରୀତି ବୋଲି ଗ୍ରହଣ କରାଯାଇ ପାରେ, ମଣିଷ ଅନ୍ୟମନା ହୋଇ ଏସବୁ କଥା କେବେଠାରୁ ଆରମ୍ଭ କଲା କେଜାଣି ? ମାତ୍ର ଏଇଟି ପଶିବା ଫଳରେ ମଣିଷର ଓ ଜୀବନର ସବୁ ଚାହାଣି ଯେପରି ଏକାବେଳେକେ ବଦଳିଗଲା । ମଣିଷର ଯାବତୀୟ ବୃତ୍ତିର ରଙ୍ଗଗୁଡ଼ାକ ବଦଳିଗଲା, ବାକ୍ୟ ଗୁଡ଼ାକର ଇଙ୍ଗିତ ଯେପରି ଆଉ ପ୍ରକାରେ ହୋଇଗଲା । ଏହି ଦିଗଗୁଡ଼ାକ ମଣିଷକୁ ସତେଅବା ଅନ୍ୟ ପ୍ରକାର ଦିଶିଲେ, ଏହି ନକ୍ଷତ୍ରଗୁଡ଼ାକ ଦୀପ ପରି ଦେଖାଗଲେ, ଏଇ ନଦୀଗୁଡ଼ାକ ବାଟର ସାଥୀପରି ଦିଶିଲେ, ଏହି ସ୍ତବଗୁଡ଼ାକ ସତେଅବା ପ୍ରାର୍ଥନା ପରି ଦିଶିଲେ । ଏହି ନଭୋମଣ୍ଡଳ ବରାଭୟ ପରି ଦିଶିଲା, ମୁହୂର୍ତ୍ତ ଗୁଡ଼ାକ ମୁହୂର୍ତ୍ତାତୀତ ହୋଇଗଲେ, ସାଗର ଗୋଟାକ ସତେଅବା ହୃଦୟ ଭିତରେ କେଉଁ ବିଚିତ୍ର ରତ୍ନରଞ୍ଜିତ ବେଳା ଉପରେ ଆସି ଲୋଟି ଯାଉଥିବା ପରି ବୋଧହେଲା । ଏପରି ହେବାଦ୍ୱାରା ଆମର ଲାଭ ହେଲାକି କ୍ଷତି ହେଲା କେଜାଣି, କିନ୍ତୁ ଏକଥା ଅବଶ୍ୟ ହେଲା । ମୂକ କଥା କହିବାକୁ ଲାଗିଲା, କୁବୁଜା ଅଭିସାରିକା ହେଲା, ଜୀବନ ଗଭା ସଜାଡ଼ିଲା,–ଅଧରଗୁଡ଼ାକ ସତେଅବା ଫୁଲପରି କମ୍ପି ଉଠିଲେ । କିଛିର କାମନା ନକରି ମଧ୍ୟ ହୋତାମାନେ ଯଜ୍ଞ କରିବାକୁ ବାହାରିଲେ । ବର ନମାଗି ମଧ୍ୟ ତପଶ୍ଚର୍ଯ୍ୟା ହେଲା, ସଂସାରରୁ ନ ବାହାରି ମଧ୍ୟ ଆଶ୍ରମଗୁଡ଼ାକର ପ୍ରତିଷ୍ଠା ହେଲା । ବ୍ରତଯୋଗ ହିଁ ଆଉ ସବୁଯାକ ଯୋଗ ତଥା ବିଯୋଗକୁ ଏକତ୍ର ଗୋଟିଏ ପୁଟୁଳାରେ ବାନ୍ଧି ଆନନ୍ଦରେ ପରିଣତ କରିଦେଲା । "ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସୈନ୍ଧବଃ" ବୋଲି ସ୍ତବ ମୁଖରିତ ହୋଇ ଉଠିଲା । ଭଗବାନଙ୍କୁ, ବା ଯାହାଙ୍କୁ ବର୍ଣ୍ଣନା କରିବା ଲାଗି ପେଟରାଯାକର ଅଳଙ୍କାର ବି ଅଣ୍ଟୁ ନଥିଲା, ତାକୁ ଅତ୍ୟନ୍ତ ଅପ୍ରମତ୍ତ ଭାବରେ, ସତେଅବା ଗୋଟାସୁଦ୍ଧା ଚିହ୍ନିଥିଲା ଏବଂ ଛୁଇଁଥିଲାପରି "ରସୋ ବୈ ସଃ" ବୋଲି କହିବାର ସାହସ କରାଗଲା । ଏସବୁ କାହିଁକି ଯେ ହେଲା, ସେକଥା କେହି କହି

ପାରିବ ନାହିଁ, କିନ୍ତୁ ତଥାପି ହେଲା । ଖାଲି ବୃତ୍ତିଟା ମଣିଷକୁ ପୋଷାଇଲା ନାହିଁ ବୋଲି ଆଉ ଏପରି ହେଲା କି ? ଭଗବାନଙ୍କୁ ଯେମିତି ଏକୁଟିଆ ଭଲ ଲାଗିଲା ନାହିଁ ବୋଲି ଭଗବାନ ଦ୍ୱିତୀୟ ଇଚ୍ଛା କଲେ ଓ ଏକରୁ ଅନେକ ହେଲେ, ବୃତ୍ତିରୁ ବ୍ରତରେ ଆସି ଉପନୀତ ହେବାର ମାର୍ଗରେ ଆଉ ସେହିପରି କିଛି ଘଟିଛି କି ?

ସୂର୍ଯ୍ୟ ଯେ ନିତି ସକାଳୁ ଉଠି ପୃଥିବୀ ପ୍ରଦକ୍ଷିଣ କରୁଛି ଓ ସଞ୍ଜ ହେଲାକୁ ଅସ୍ତ ହୋଇ ଯାଉଛି, ଏଇଟାକୁ ଆମେ ବୃତ୍ତି ବୋଲି କହିବା ନା ବ୍ରତ ବୋଲି କହିବା ? ସାପ ଯେ ପୁରୁଣା ଖୋଳରୁ ବାହାରି ପୁଣି ଝଲଝଲ ନୂଆ ହୋଇ ଯାଉଛି, ଏଇଟାକୁ ଆମେ ତା'ର ବୃତ୍ତି ବୋଲି କହିବା ନା ବ୍ରତ ବୋଲି କହିବା ? ନିଜ ବାଛୁରୀଟିକୁ ଦେଖିବା ମାତ୍ରକେ ଗାଈର ରୋମମୂଳ ଗୁଡ଼ାକ ଯେ ଏକାବେଳେକେ ପୁଲକି ଉଠୁଛନ୍ତି, ଆମେ ତାହାକୁ ଗାଈର ବୃତ୍ତି ବୋଲି କହିବା ନା ବ୍ରତ ବୋଲି କହିବା ? ଜଣେ ମାଳି ଯେ ବଗିଚାରେ ଫୁଲ ଫୁଟାଉଛି ସେଇଟା ତା'ର ବ୍ରତ ନା ବୃତ୍ତି ? ଏହି ସଂସାରକୁ ଯେ ଶାସ୍ତ୍ରରେ ଦେବଶିଳ୍ପ ବୋଲି କୁହାଯାଇଛି, ଏଇଟା ବୃତ୍ତି-ଅର୍ଥରେ କୁହାଯାଇଛି ନା ବ୍ରତଜ୍ଞାନରେ କୁହାଯାଇଛି ? ମେଘକୁ ଦେଖି ମୟୁର ଯେ ନାଚିବାକୁ ମନ କରୁଛି, ଏଇଟା ତା'ର ବ୍ରତ ନା ତାର ବୃତ୍ତି ? ଏବର ବୈଜ୍ଞାନିକମାନେ ଏହି କ୍ଷେତ୍ରରେ ଆମକୁ କେତେ କ'ଣ କହିବେ–କେତେ ସିଦ୍ଧାନ୍ତ ବାଢ଼ି ପକାଇବେ, ପ୍ରୟୋଗଶାଳାରୁ ଲବ୍ଧ କେତେ ତଥ୍ୟ ଆଣି ଜମା କରିଦେବେ–ତଥାପି ଏହି ବିଷୟରେ ସମ୍ପୂର୍ଣ୍ଣ ଉତ୍ତରଟିଏ ଦେଇ କଦାପି ଆମର ହୃଦ୍‌ବୋଧ କରାଇ ପାରିବେ ନାହିଁ । ସେମାନେ ଅ କଥା କହିବେ, ଉ କଥା କହିବେ, ମ କଥା ବି କହିବେ, ତଥାପି ସମ୍ପୂର୍ଣ୍ଣ ସତ୍ୟଟି ପାଖରୁ ଅର୍ଦ୍ଧ ମାତ୍ରାଟିଏ ଛାଡ଼ିକରି ରହିଥିବେ । ସମାଜ-ବିଜ୍ଞାନୀମାନେ ବୃତ୍ତିଟିକୁ ପ୍ରବୃତ୍ତିର ତତ୍ତ୍ୱ ଦେଇ ବୁଝାଇବାକୁ ଚେଷ୍ଟା କରିବେ, କେତେ ଗୁଡ଼ାକୁ ମୂଳ ପ୍ରବୃତ୍ତି ବୋଲି କହି ପୁଣି ଆଉ କେତେଗୁଡ଼ାକୁ ଅର୍ଜିତ ପ୍ରବୃତ୍ତି ବୋଲି କହିବେ–ତଥାପି ବ୍ରତଟିକୁ ବୃତ୍ତି ଦେଇ କଦାପି ବୁଝାଇ ପାରିବେ ନାହିଁ । ସମଗ୍ର 'ସତ୍ୟଟିକୁ ଚାଖଣ୍ଡେ ଛାଡ଼ିକରି ରହିଯିବେ । ତେଣୁ ଆମେ ଆମ ଜୀବନରେ ବ୍ରତକୁ ଆଗ ବୋଲି କହିବା ନା ବୃତ୍ତିକୁ ଆଗ ବୋଲି କହିବା ? ଯାହା ଆମଲାଗି ନିର୍ଦ୍ଧାରିତ ହୋଇ ରହିଛି, ସେଇଟାକୁ ଆଗ ବୋଲି କହିବା, ନା ଯାହା ସକାଶେ ଆମର ସବୁ ଅଣୁ ସବୁ ରନ୍ଧ୍ର ଗୁଡ଼ାକ ଏକାବେଳେକେ ଖୋଲିଯାଇ ପାରୁଛି, ସବୁ ଗ୍ରନ୍ଥି ଏକାବେଳେକେ ଫିଟି ଯାଉଛି, ଆମେ ଯାହାକୁ ନିଜେ ଠାବ କରୁଛୁ ଓ ନିଜେ ସ୍ୱୀକାର କରି ନେଉଛୁ, ଆମେ ସେଇଟିକୁ ଆଗ ବୋଲି କହିବା ? ଆପଣା ଜ୍ଞାନ ଓ ଆପଣା ବୋଧର ପରିଧିଗୁଡ଼ାକ ଅନୁସାରେ ଏଠାରେ ମଧ୍ୟ ଯେ ଠିକ୍ ସେହିପରି ଆମ ବିଜ୍ଞାନଟିର ବିଚରଣ-ଭୂମି ନିରୂପିତ ହେବ, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ । ଏପରି ଅନେକ ତଥାକଥିତ ବିଜ୍ଞାନୀ

ଅଛନ୍ତି, ଯେଉଁମାନେ କି କୈବର୍ତ୍ତ ଜାଲ ଘେରାଇ ଦେଲାପରି ଆଗ ଆପଣା ବିଜ୍ଞାନଟିର ବାଡ଼ ଏବଂ ସୀମାଗୁଡ଼ାକୁ ଗାର କାଟି ନିର୍ଣ୍ଣିତ କରି ଦିଅନ୍ତି, ସେଇଟିକୁ ଆପଣାର ପରିସର ବୋଲି କହନ୍ତି ଓ ତାହାରି ଭିତରେ ରହି ଆପଣାର ଜ୍ଞାନ ଓ ବୋଧର ବର୍ଣ୍ଣ ନିରୂପଣ କରିବାକୁ ମନ କରନ୍ତି । ପାରମ୍ପରିକ ସମାଜରେ ବୃତ୍ତିଦ୍ୱାରା ହିଁ ବର୍ଣ୍ଣର ନିରୂପଣ ହୋଇ ଯାଉଥିବା ପରି ଏହି ବିଜ୍ଞାନୀମାନେ ଆପଣାର ଜିଜ୍ଞାସାଗୁଡ଼ାକୁ ମୂଳରୁହିଁ କେତେଟା ନିର୍ଦ୍ଧାରିତ ଦଉଡ଼ି ଦେଇ ବାନ୍ଧି ରଖନ୍ତି । ବୃତ୍ତି ଭିତରେ ବାନ୍ଧି ହୋଇ ରହିଥିବା ସମାଜ ବ୍ରତକୁ ବୁଝି ନ ପାରୁଥିବା ଭଳି ଓ ତାହାକୁ ପ୍ରଧାନତଃ ଏକ ଅନାବଶ୍ୟକତା ବୋଲି ବିଚାରି ଖୁବ୍ ବେଶୀ ହେଲେ ଏକ ଦ୍ୱିତୀୟସ୍ତରୀୟ ପଦାର୍ଥ ରୂପେ ବ୍ୟବହାର କରୁଥିବା ପରି ସେମାନେ ମଧ୍ୟ ବିଜ୍ଞାନ ନାମରେ ଜ୍ଞାନଧାବନର ଅସଲ ପାଠଗୁଡ଼ିକୁ କଦାପି ଆୟତ୍ତ କରି ପାରନ୍ତି ନାହିଁ ।

ଜୀବନକୁ ଅଧିକ ସମ୍ପୂର୍ଣ୍ଣତା ଦେବା ଲାଗି ସମ୍ଭବତଃ ଜୀବନରେ ବୃତ୍ତି ଯେପରି ଦରକାର, ବ୍ରତ ମଧ୍ୟ ଠିକ୍ ସେହିପରି ଦରକାର । ଦୁଇଟାଯାକ ଏକାବେଳେକେ ଦରକାର । ପରସ୍ପରର ପରିପୂରକ ରୂପେ ନ ହେଲେ ମଧ୍ୟ ତଥାପି ଏକାବେଳେକେ ଦରକାର । କେବଳ ସେତିକି ନୁହେଁ, ହୁଏତ ଆମେ ଏକଥା ମଧ୍ୟ କହିପାରିବା ଯେ ଜୀବନର ଏକ ଯଥାର୍ଥ ମୂଳଦୁଆ ଓ ଜୀବନ ଲାଗି ଏକ ଯଥାର୍ଥ ଗବାକ୍ଷ ସମ୍ଭବ କରି ପାରିବାଲାଗି ଆମ ଜୀବନରେ ବୃତ୍ତି ଓ ବ୍ରତ ଏକାବେଳେକେ ଦରକାର । ଆମର ବ୍ୟକ୍ତିଗତ ଜୀବନରେ ଦରକାର, ଆମ ସାମୂହିକ ଜୀବନରେ ମଧ୍ୟ ଦରକାର । ବ୍ରତ ନଥିଲେ ବୃତ୍ତିଗୁଡ଼ାକ ଆମକୁ ପ୍ରାୟ ସକଳ କ୍ଷେତ୍ରରେ ଗୋଟାଏ ଗୋଟାଏ ଭୃତ୍ୟରେ ହିଁ ପରିଣତ କରି ରଖିଥାନ୍ତି ଏବଂ ବ୍ରତକୁ ବୃତ୍ତି କରି ଗ୍ରହଣ କରି ନଥିଲେ ଆମ ବ୍ରତଗୁଡ଼ାକ ସତେଅବା ଅନେକତଃ ଗୋଟାଏ ଗୋଟାଏ ତୁଚ୍ଛା ଭାବପ୍ରବଣତା ଏବଂ ଏପରିକି କାମୁକତାରେ ମଧ୍ୟ ପରିଣତ ହୋଇ ରହିଥାନ୍ତି । ଯେଉଁମାନେ ବ୍ରତକୁ ଛାଡ଼ି ବୃତ୍ତିକୁ ଧରିଥାନ୍ତି, ସେମାନେ ସଂସାରର ରଥଗୁଡ଼ିକରେ ଗୋଟାଏ ଗୋଟାଏ ପ୍ରଶଂସନୀୟ ହୟଗ୍ରୀବ ହୋଇ ରହିଥାନ୍ତି ସତ, ମାତ୍ର ସେମାନଙ୍କ ଦ୍ୱାରା କେବଳ ପୁନରାବୃତ୍ତି ଛଡ଼ା ଆଉ ପ୍ରାୟ କିଛି ହୋଇ ପାରେ ନାହିଁ । ସେମାନେ କାଲି ଯେପରି ବଞ୍ଚିଥାନ୍ତି, ଅର୍ଥାତ୍ ଯାହାକୁ ବଞ୍ଚିବା ବୋଲି କହୁଥାନ୍ତି, ଆଜି ମଧ୍ୟ ଠିକ୍ ତାହାରି ଭିତରେହିଁ ସେମାନଙ୍କର ରାତି ପାହେ, ଆକାଶ ସରେ, ଜୀବନ ଭିତରେ କାଳର ଭରଣା ହେଉଥାଏ । ସଂସାରର ସବୁ ଯୁଗରେ ସବୁ ଦେଶରେ ଏହିପରି ପୁନରାବୃତ୍ତିପରାୟଣ ନିତ୍ୟମୂଷିକମାନଙ୍କର ସଂଖ୍ୟା ହିଁ ସର୍ବାଧିକ ହୋଇ ରହିଥିଲେ ମଧ୍ୟ ଆମେ ତଥାପି ତାହାକୁ କଦାପି ସମଗ୍ର ଜୀବନ ବୋଲି କହିବା ନାହିଁ; ଏକ ବାଞ୍ଛନୀୟ ଜୀବନ ବୋଲି ତ ଆଦୌ କହିବା ନାହିଁ । ପୁନଶ୍ଚ,

ଯେଉଁମାନେ ବୃତ୍ତି ବାହାରେ ବ୍ରତକୁ ଜୋଡ଼ନ୍ତି, ବ୍ରତକୁ ବୃତ୍ତିର ଅଜ୍ଞାତରେ ପ୍ରାୟ ଏକ ପରକୀୟା ପୋଷାକିନୀ ପରି ଗ୍ରହଣ କରିଥାନ୍ତି, ସେମାନଙ୍କର ପ୍ରେମ ଗୁଡ଼ାକ ସର୍ବଦା ଦୁଇଖଣ୍ଡ ହୋଇ ରହିଥାଏ ଏବଂ ଉଭୟ ଖଣ୍ଡରେ ପ୍ରେମ କେବଳ ଗୋଟାଏ ଗୋଟାଏ ଆସକ୍ତିରେ ହିଁ ପରିଣତ ହୋଇ ରହିଥାଏ । ସେମାନେ ଦିନରେ ବୃତ୍ତିର ବେହରଣ ଖଟନ୍ତି ଓ ରାତିରେ ବ୍ରତରେ ବିହାର କରନ୍ତି; ଦିନରେ ଆହାର ଗ୍ରହଣ କରନ୍ତି ଓ ରାତି ହେଲେ ତାମ୍ବୁଳ ସେବନ କରନ୍ତି । ଦିନରେ ଧର୍ମ-କାର୍ଯ୍ୟ କରନ୍ତି, ଧର୍ମରାଜ ହୁଅନ୍ତି ଓ ସଂସାରର କର୍ତ୍ତବ୍ୟ କରୁଛନ୍ତି ବୋଲି କହନ୍ତି ଏବଂ ରାତି ହେଲେ ଶକୁନି ସହିତ ଦ୍ୟୂତ କ୍ରୀଡ଼ା କରନ୍ତି, ଚତୁରଙ୍ଗ ଆୟୋଜନରେ ପ୍ରାୟ ଉନ୍ମତ୍ତବତ୍ କ୍ରୀଡ଼ା କରୁଥାନ୍ତି ଏବଂ ଧର୍ମ ହରାଇ ବସନ୍ତି । ଦିନରେ ମେଣ୍ଢା ହୁଅନ୍ତି, ରାତିରେ ଭେଣ୍ଡା ବନନ୍ତି; ଦିନରେ ବାଧ୍ୟ ହୁଅନ୍ତି, ରାତିରେ ମସ୍ତ ହୁଅନ୍ତି । ସେଠାରୁ କ୍ଲାନ୍ତ ହୋଇ ଏଠାକୁ ଦଉଡ଼ିବାରେ ଲାଗିଥାନ୍ତି । ଅର୍ଥାର୍ଥୀ ଓ ଆର୍ତ୍ତ ପରସ୍ପରର ମିତ ହୋଇ ରହିଥାନ୍ତି, ଦୁଇଟିଯାକର ତୁମ୍ବକୁ ଗୋଟିଏ ତୀର୍ଥର ପୁଣ୍ୟ ବୋଲି ମଣୁଥାନ୍ତି ଏବଂ ଗୋଟିଏ ଖୋଳ ଭିତରେ ଦୁଇଟିଯାକ ସମ୍ପତ୍ତିକୁ ଆଣି ଭର୍ତ୍ତି କରିବାର ଭ୍ରମ କରିବାରେ ଲାଗିଥାନ୍ତି ।

କୁମ୍ଭାର ହାଣ୍ଡି ଗଢ଼େ, ସେଇଟା ତାର ବୃତ୍ତି ନା ତା'ର ବ୍ରତ ? ସମାଜ ବୃତ୍ତି ରୂପେ ତାକୁ ଯେଉଁ ଧନ୍ଦାଟିକୁ ପ୍ରଦାନ କରି ରଖିଛି, ଯେତେବେଳ ଯାଏ ସିଏ ବ୍ରତ ରୂପେ ସେଇ ଧନ୍ଦାଟିକୁ ଗ୍ରହଣ କରି ନ ପାରିବ, ସେତେବେଳେ ଯାଏ ସିଏ ଜଣେ ଭଲ କୁମ୍ଭାର କଦାପି ହୋଇ ପାରିବ କି ? କେଉଁ କାରିଗର କାଠ ଉପରେ କାମ କରେ, କିଏ ସୋଲ ଉପରେ କାମ କରେ, ପୁଣି ଆଉ କିଏ ଶିଙ୍ଗ ଉପରେ କାମ କରେ । ଜୀବନର ଗୁଜରାଣ ମେଣ୍ଟାଇବା ସକାଶେ ଏମାନେ ଏଗୁଡ଼ିକୁ ଗୋଟିଏ ଗୋଟିଏ ବୃତ୍ତି ରୂପେ ଗ୍ରହଣ କରି ନେଇଥାନ୍ତି । ଏମାନଙ୍କ ମଧ୍ୟରୁ ଅନେକେ ଏହି କୌଳିକ ବୃତ୍ତିଟିରେ ହିଁ ଜନ୍ମ ଗ୍ରହଣ କରିଥାନ୍ତି । ଯେଉଁମାନେ ମାଟିରେ ଜୀବନ୍ୟାସ ଦେଇ, ପଥରରେ ନିହାଣ ଲଗାଇ ଅଥବା ଖଡ଼ି ଉପରେ ଛାଞ୍ଚ କାଟି ମୂର୍ତ୍ତି ଗଢ଼ନ୍ତି, ସେମାନେ ତୁଚ୍ଛା ବୃତ୍ତି ବଳରେ ଏଗୁଡ଼ାକ କରନ୍ତି ନା ଆପଣା ବୃତ୍ତିର ଆଚରଣ କରୁ କରୁ ସେମାନେ ଏଗୁଡ଼ାକୁ ଆପଣାର ବ୍ରତ ରୂପେ ସ୍ୱୀକାର କରି ନେଇଥାନ୍ତି ବୋଲି ଏସବୁଥିରେ କୌଣସି ନା କୌଣସି ସିଦ୍ଧି ଦେଖାଇଥାନ୍ତି ? ପୂର୍ବକାଳର ସମାଜରେ ଯେଉଁମାନେ ଆପଣାର ବୃତ୍ତି ସ୍ୱରୂପ ହାଣ୍ଡି ଉପରେ ଚିତ୍ର କରୁଥିଲେ, ସୋଲକାଟି ଫୁଲ ତିଆରି କରୁଥିଲେ, ଛିଟକନାକୁ ଯୋଡ଼ି କଣ୍ଢେଇ ତିଆରି କରୁଥିଲେ, ଏପରିକି ତାଳପତ୍ରକୁ ଚିରି ଝୁମୁକା ବୁଣି ଥୋଇ ଦେଉଥିଲେ, ସେଗୁଡ଼ାକୁ ସେମାନେ ତୁଚ୍ଛା ବୃତ୍ତି ରୂପେ ଆଚରୁଥିଲେ ନା ତା' ଭିତରେ ବ୍ରତଚାରିତାର ବ୍ୟଞ୍ଜନା ତଥାପି କିଛି ନା କିଛି ରହିଥିଲା ? ଅନେକ କେଳା ଅଛନ୍ତି, ଯୋଉମାନଙ୍କୁ ନଳ

ଯୋଖି ଚଢ଼େଇ ଧରିବା ବ୍ୟତୀତ ଆଉ କିଛି ହେଲେ ଆସେ ନାହିଁ, ଏପରି ଲାଖବିନ୍ଧାଳି ଅନେକ ଅଛନ୍ତି, ଯୋଉମାନଙ୍କୁ ଲାଖ ବିନ୍ଧିବା ବ୍ୟତୀତ ଆଉ କିଛିହେଲେ ଆସେ ନାହିଁ; ଅନେକ ଶଙ୍ଖାରି ଅଛନ୍ତି, ଯେଉଁମାନଙ୍କୁ କି ଶଙ୍ଖା ଗଢ଼ିବା ଓ ଶଙ୍ଖା ଚିତ୍ର କରିବା ବ୍ୟତୀତ ଆଉ କିଛିହେଲେ ଆସେ ନାହିଁ । ବରପାଲିର କୌଣସି ଗାଆଁରେ ଯିଏ କୌଣସି ସିଦ୍ଧହସ୍ତ ଭୁଲିଆକୁ ତନ୍ତ ଉପରେ କାର୍ଯ୍ୟ କରୁଥିବାର ଦେଖିଥିବ, ରାଜସ୍ଥାନର କୌଣସି ଗାଆଁରେ ଯିଏ କୌଣସି ସିଦ୍ଧହସ୍ତ ସୋମପୁରାକୁ ପଥର କାଟି ମୂର୍ତ୍ତି ବାହାର କରିବାର ଦେଖିଥିବ, ଅଥବା କାଶ୍ମୀରର କୌଣସି ଅଜ୍ଞାତ ପଲ୍ଲୀରେ ଯିଏ ଅଣ୍ଟା ଭାଙ୍ଗି ପଡ଼ିଥିବା ଓ ଆଖି କୋଟରଗତ ହୋଇ ଯାଇଥିବା କୌଣସି ସିଦ୍ଧହସ୍ତ ଦରଜୀକୁ ଶାଲ ଉପରେ ଫୁଲ ପକାଉଥିବାର ଦେଖିଥିବ, ତାକୁ ପ୍ରଥମେ ବୃତ୍ତିର ଅନ୍ଦାଜ ହେବ ନା ବ୍ରତର ଅନ୍ଦାଜ ହେବ ? ଏସବୁ ଧନ୍ଦା ସେହିସବୁ ସ୍ଥାନରେ ପୁରୁଷ ପୁରୁଷ ଧରି ଚଳି ଆସୁଛି, ସେହି ବୃତ୍ତିଗୁଡ଼ିକୁ ଆଚରି ବଂଶ ବଂଶ ଧରି ମଣିଷ ଗୁଡ଼ାକ ପ୍ରାୟ କୂର୍ମ ହୋଇ ସାରିଲେଣି । ତଥାପି ସେଗୁଡ଼ାକ କ'ଣ ଖାଲି ବୃତ୍ତି, ସେଗୁଡ଼ାକ କ'ଣ ଖାଲି ପେଟ ପାଇଁ, ଖାଲି ବାଧ ହୋଇ ? ତେବେ ଗୋଟାଏ ଶାଢ଼ୀ ଆଉଗୋଟାଏ ଶାଢ଼ୀଠାରୁ ଏଡ଼େ ଅଲଗା ଦିଶେ କାହିଁକି, ଗୋଟାଏ ମୂର୍ତ୍ତି ଆଉ ଗୋଟାଏ ମୂର୍ତ୍ତିଠାରୁ ଏପରି ଅଲଗା ଦେଖାଯାଏ କାହିଁକି ? ଗୋଟିଏ ଶାଲ ଉପରେ ବୁଣା ହୋଇଥିବା କାରିଗରୀ ଆଉ ଗୋଟାଏ ଶାଲ ଉପରେ ବୁଣା ହୋଇଥିବା କାରିଗରୀଠାରୁ ଏଭଳି ନିଆରା ଦିଶେ କାହିଁକି ? କାରିଗରୀକୁ ଦେଖୁ ଦେଖୁ କାରିଗରକୁ ଏଡ଼େ ସ୍ପଷ୍ଟ ଭାବରେ ଚିହ୍ନି ହୋଇଯାଏ କିପରି ? ଏଗୁଡ଼ାକ ହେଉଛି ବ୍ରତର ବାହାଦୂରୀ, ଅଥବା ଆହୁରି ସ୍ପଷ୍ଟ କରି କହିଲେ ଏଗୁଡ଼ାକ ହେଉଛି କୌଣସି ବୃତ୍ତିକୁ ଏକାଧାରରେ ଏକ ବ୍ରତରେ ପରିଣତ କରାଇ ନେଇଥିବାର ବାହାଦୂରୀ । ଆପଣାର ଚିରାଚରିତ ଧନ୍ଦା ବା ଅଭ୍ୟାସଗୁଡ଼ାକ ଭିତରୁ ଆପଣାକୁ ଜନ୍ମଦେଇ ପାରିଥିବା ବାହାଦୂରୀ, ପୁନରାବୃତ୍ତିକୁ ସତେଅବା ଆଉ କେଉଁ ମନ୍ତ୍ରପାଣି ଛିଞ୍ଚି ଏକ ସୃଜନରେ ପରିଣତ କରି ପାରିଥିବାର ବାହାଦୂରୀ । ବୃତ୍ତିଗୁଡ଼ାକ ଏହିପରି ଭାବରେ କ୍ରମଶଃ ଏକ ବ୍ରତରେ ପରିଣତ ହେବାର ପ୍ରକ୍ରିୟାରେ ହିଁ ବାଚ୍ୟଗୁଡ଼ାକ କ୍ରମଶଃ ବ୍ୟଞ୍ଜନାର ଅନ୍ୟ ସୋପାନଟିକୁ ଉତ୍ତୀର୍ଣ୍ଣ ହୋଇ ଆସିଥାନ୍ତି, ତୁଚ୍ଛା ସାମଗ୍ରୀଗୁଡ଼ାକ ଏକ ସ୍ୱକୀୟ ଓ ସ୍ୱତନ୍ତ୍ର ନାମାଙ୍କନ ମଧ୍ୟକୁ ପ୍ରାଣ ପାଇ ଉଠିଥାନ୍ତି, ତୁଚ୍ଛା ଲିଖନ ଅଥବା ଆଲିମ୍ପନଗୁଡ଼ାକ ଏକ ସ୍ୱାକ୍ଷରରେ ପରିଣତ ହୋଇ ପାରିଥାନ୍ତି । ଜୀବନକୁ ଯେଉଁମାନେ ଗୋଟାଏ ତୁଚ୍ଛା ବୃତ୍ତି ବୋଲି ମାନି ନେଇଥାନ୍ତି, ସେମାନେ ଏହି ଅଦୃଶ୍ୟ ଅଥଚ ନିଶ୍ଚିତ ରସାୟନର ପ୍ରକ୍ରିୟାଟିକୁ କଦାପି ବୁଝି ପାରିବେ ନାହିଁ । ଯେଉଁମାନେ ଜଗତଟାକୁ ତୁଚ୍ଛା ମିଥ୍ୟା ବା ମାୟା ବୋଲି ମାନି ନେଇଥାନ୍ତି, ସେମାନେ ଯେପରି ମାୟାଧର ଅର୍ଥାତ୍ ସ୍ୱୟଂ ମାୟାବୀଙ୍କର କୌଣସି ପତ୍ତା ବି ପାଇ

ପାରନ୍ତି ନାହିଁ, ଠିକ୍ ସେହିପରି । ପୁନଶ୍ଚ, ଯେଉଁମାନେ ବୃତ୍ତିଗୁଡ଼ାକୁ ଖାଲି ବୃତ୍ତି ଭିତରେ ହିଁ କିଳି ରଖି ଅନ୍ୟତ୍ର ଆଉ କେଉଁ ସ୍ୱାଧୀନତା ଭିତରେ ପଘାଛିଣ୍ଡା ହୋଇ ବ୍ରତର ସନ୍ଧାନ କରିବାକୁ ଯାଆନ୍ତି, ସେମାନେ ମଧ କଦାପି ବ୍ରତର ପୂର୍ଣ୍ଣ ଆସ୍ୱାଦନ ଲାଭ କରି ପାରନ୍ତି ନାହିଁ ।

ଗଙ୍ଗାଧର ମେହେର କବି ଥିଲେ, ତନ୍ତୀ ଥିଲେ । ଆଗ ତନ୍ତୀ ଥିଲେ କି ଆଗ କବି ଥିଲେ, ସେହି କଥାଟିର ନିରୂପଣ କରିବାକୁ ଯାଇ ଆମେ ନାନା ବାଟରେ ଯେତେ ଧନ୍ଦି ହୋଇ ମରିବା ପଛକେ, ମାତ୍ର କବି ଗଙ୍ଗାଧରଙ୍କୁ ତନ୍ତୀ ଗଙ୍ଗାଧରଙ୍କଠାରୁ ଅଲଗା କରି ଦେଖିବାର ପ୍ରମତ୍ତତା ଭିତରେ ପଡ଼ିଥିବା ପର୍ଯ୍ୟନ୍ତ ଆମେ ଗଙ୍ଗାଧରଙ୍କୁ ଚିହ୍ନିବା ପରି କଦାପି ଚିହ୍ନି ପାରିବା ନାହିଁ । ଅନେକ ସମୀକ୍ଷକ ତାଙ୍କୁ ଆଗ ତନ୍ତୀ ରୂପେ ଦେଖନ୍ତି ବୋଲି ସିଏ କିପରି ତନ୍ତୀ ହୋଇ ସୁଦ୍ଧା ଏତେ ଏତେ ସାହିତ୍ୟକୃତି ସମ୍ଭବ କରିପାରିଲେ, ସେକଥା ଦେଖି ଚକିତ ହୋଇ ରହନ୍ତି । ଆଉ କେତେ ଦେଖାଳି ତାଙ୍କୁ କବିରୂପେ ଏପରି ଗୋଟାସୁଦ୍ଧା ହଳଦୀ ବରନ କରି ପକାଇବା ଲାଗି ଇଚ୍ଛା କରନ୍ତି ଯେ, ସମ୍ପୂର୍ଣ୍ଣ ଗଙ୍ଗାଧରଙ୍କୁ ତଉଲିବାଟା ସେମାନଙ୍କର କାଠି ଗୁଡ଼ାକ ଲାଗି ପ୍ରାୟ ଅସମ୍ଭବ ହୋଇ ରହିଥାଏ । ଗଙ୍ଗାଧରଙ୍କୁ ତୁଚ୍ଛା ତାଙ୍କର ବୃତ୍ତି ଦେଇ ଚିହ୍ନିବାକୁ ଯାଉଥିବା ଲୋକମାନେ ଯେପରି ଅନ୍ଧାରକୁ ଆଦରି ରହନ୍ତି, ତାଙ୍କୁ ତୁଚ୍ଛା ତାଙ୍କର ବ୍ରତ ଦେଇ ବିଚାର କରିବାକୁ ଯାଉଥିବା ଲୋକମାନେ ମଧ ଠିକ୍ ସେହିପରି ଅନ୍ଧାରକୁ ଆଦରି ରହିଥାନ୍ତି । ତୁଚ୍ଛା ବୃତ୍ତିଧାରୀମାନେ ଯେପରି ଅବାକ୍ ହୁଅନ୍ତି, ତୁଚ୍ଛା ବ୍ରତଚାରୀମାନେ ମଧ ଠିକ୍ ସେହିପରି ଅବାକ୍ ହୁଅନ୍ତି, ବିମୂଢ଼ ହୋଇ ରହିଯାନ୍ତି । ଗଙ୍ଗାଧର ମେହେର କ'ଣ ସତରେ ଲୁଗା ବୁଣିବାକୁ ଏକ ବୃତ୍ତି ବୋଲି ଗ୍ରହଣ କରିଥିଲେ ଓ କାବ୍ୟ ଲେଖିବାକୁ ଏକ ବ୍ରତ ବୋଲି ଗ୍ରହଣ କରିଥିଲେ ? ଅନେକ ସମାଲୋଚକ ବା ବ୍ୟବଚ୍ଛେଦକ ଯେପରି ଭାବିବା ଲାଗି ପ୍ରଲୁବ୍ଧ ହୋଇଥାନ୍ତି, ସିଏ କ'ଣ ପ୍ରକୃତରେ ଆପଣାର ବୃତ୍ତି ଓ ଆପଣାର ବ୍ରତ ଭିତରେ ଦୁଇ ଖଣ୍ଡରେ ବିଭକ୍ତ ହୋଇ ରହିଥିଲେ ? ବୃତ୍ତିରେ ବାଧ ହୋଇ ରହିଥିଲେ ଓ ବ୍ରତକୁ ଆରାଧ ବୋଲି ମାନୁଥିଲେ ? ବୃତ୍ତି କରୁଥିବା ସମୟରେ ବ୍ରତକୁ ଝୁରୁଥିଲେ ଓ ବ୍ରତ ଆଚରୁଥିବା ସମୟରେ ବୃତ୍ତି ବିଷୟରେ ଚିନ୍ତିତ ଓ ସଂକ୍ରାମିତ ହୋଇ ରହୁଥିଲେ ? ଯାତ ମାନଙ୍କରେ ଯାତ ଦାଣ୍ଡରେ ଦୋକାନ ଦେଇଥିବା ଦୋକାନୀମାନେ ଯେପରି ଯାତ ଆଉ ଦୋକାନ ଦୁଇଟାକୁ ମନ କରି ମଝିରେ ହନ୍ତସନ୍ତ ହୋଇ ରହିଥାନ୍ତି, ମେହେର କ'ଣ ପ୍ରକୃତରେ ସେହିପରି ହନ୍ତସନ୍ତ ହୋଇ ରହିଥିଲେ ? ନା ଆମେ ଯେଉଁମାନେ ଗୋଟାଏ ପାଖରେ ରମଣୀ ଓ ଅନ୍ୟ ପାଖରେ ଭାର୍ଯ୍ୟା ମଧରେ ଅନୁକ୍ଷଣ ତାଡ଼ିତ ପ୍ରତାଡ଼ିତ ହୋଇ ରହି ବୃତ୍ତି ଏବଂ ବ୍ରତ ଭିତରେ ଗୋଟାସୁଦ୍ଧା ଫାଡ଼ି ହୋଇ ରହିଛୁ, ଗୋଟାକ ଭିତରେ

ନାକଦଣ୍ଡା ଯାଏ ବୃତ୍ତି ରହିଛୁ ଓ ଆଉ ଗୋଟାକୁ ଲେହନ କରିବା ଉଦ୍ଦେଶ୍ୟରେ ବଡ଼ ବିକଳ ଭାବରେ ଜିଭଟାକୁ ବଢ଼ାଇ ରଖିଛୁ, ସମ୍ଭବତଃ ସେଇମାନେହିଁ ଗଙ୍ଗାଧରଙ୍କର କଳନା କରିବାକୁ ଯାଇ ତାଙ୍କୁ ଦୁଇଖଣ୍ଡ କରି ପକାଉ, ଜୀବନଟାକୁ ମଧ ଦୁଇ ଭାଗରେ ବିଭକ୍ତ କରି ପକାଉ ? ଗୋଟାଏ ପାଖରେ ବୃତ୍ତି ଭିତରେ ବଡ଼ ପ୍ରମତ୍ତ ଭାବରେ ଲାଖି କରି ରହିଥାଉ ଏବଂ ଆଉ ଗୋଟିଏ ପାଖରେ ବ୍ରତ ଭିତରକୁ ସ୍ୱପ୍ନ ଲମ୍ଫନମାନ କରିବାରେ ଲାଗିଥାଉ, ଏ ପାଖରେ ପହିଲିମାନୀ କରୁଥାଉ, ସେପାଖରେ ବି ପହିଲିମାନୀ କରୁଥାଉ ?

ସାହିତ୍ୟକୁ ଆମେ ସାହିତ୍ୟିକର ବୃତ୍ତି ବୋଲି କହିବା ନା ବ୍ରତ ବୋଲି କହିବା ? ଏଇଟା ହେଉଛି ଖାସ୍ ଏହି ଯୁଗର ଗୋଟିଏ ପ୍ରଶ୍ନ । ଆଗେ ବ୍ରତ ଥିଲା, ବୃତ୍ତି ଥିଲା, ସାହିତ୍ୟ ବି ରହିଥିଲା । ମାତ୍ର ସାହିତ୍ୟିକ ବୋଲି ହୁଏତ ଗୋଟାଏ ଅଲଗା ଜାତି ନଥିଲେ । ଯେମିତି ଧର୍ମ ବୋଲି ଅଲଗା ଗୋଟିଏ ଧନ୍ଦା ନ ଥିଲା, ଜ୍ଞାନ ବୋଲି ଅଲଗା ଗୋଟାଏ ଖନ୍ଦା ବି ନ ଥିଲା, ପ୍ରାୟ ଠିକ୍ ସେହିପରି । ଆଧୁନିକ କାଳରେ ହିଁ ଜୀବନକୁ ନେଇ କ୍ଷେତ୍ରଗତ ବ୍ୟାକରଣ ଓ ଆରଣ୍ୟକମାନ ଲେଖା ହେଲା । କଳାରୁ ବିଜ୍ଞାନକୁ ଅଲଗା କରି ଦିଆଗଲା, ଆଠପହରୀଠାରୁ ପୋଷାକୀକୁ ଅଲଗା କରି ଦିଆଗଲା, ଧନ କମାଇବାଠାରୁ ଧନ ଉପଭୋଗ କରିବାକୁ ଅଲଗା କରି ଦିଆଗଲା, ଭୂଇଁଠାରୁ ଆକାଶକୁ ଅଲଗା କରି ଦିଆଗଲା, ଚଢ଼େଇକୁ ତା'ର ଡେଣାଠାରୁ ଅଲଗା କରି ଦିଆଗଲା । ଚଢ଼େଇର କେବଳ ଗଣ୍ଡିଟାହିଁ ଏଠି ଭୂଇଁ ଉପରେ ଦାନା ଖୁମ୍ପି ଖାଇଲା ଓ ଖାଲି ଡେଣାଗୁଡ଼ାକ ଆକାଶକୁ ମନ କରି ବସିଲେ । ତେଣୁ ଆହାର-ସଂଗ୍ରହଗୁଡ଼ାକ ଏକ ବାଧ-ବାଧକତାରେ ପରିଣତ ହୋଇଗଲା, ତାହାକୁ ସଂସାର ଅଥବା ସଂସାରଧର୍ମ ବୋଲି କୁହାଗଲା । କେହି କେହି ତାହାକୁ ଗୋଟାଏ ଜଞ୍ଜାଳ ବୋଲି ବି କହିଲେ । ଏବଂ ତେଣେ ଅନ୍ୟ ପାଖରେ ଉଡ଼ିବାଗୁଡ଼ାକ ପ୍ରାୟ ଏକ ସ୍ୱଗତରେ ଚାଲିବା ମଧରେ ହିଁ ସୀମାଙ୍କିତ ଓ ସୁଚିହ୍ନିତ ହୋଇ ରହିଲେ । ବୃତ୍ତିର ଗମ୍ଭୀରିଟା ବ୍ରତର ଦୁଆରବନ୍ଧଟାକୁ ଯେ ଖାଲି ଚିହ୍ନି ପାରିଲା ନାହିଁ ତା ନୁହେଁ, ହୁଏତ ସ୍ୱୀକାର ମଧ କଲାନାହିଁ । ଘରକୁ ଘର ବୋଲି ଚିହ୍ନାଇ ଦେଉଥିବା କାନ୍ଥଗୁଡ଼ାକ ଘରର ଗବାକ୍ଷଗୁଡ଼ାକୁ ବି ସ୍ୱୀକାର କଲେ ନାହିଁ । ଆମେ ସମସ୍ତେ ଆପଣା ମଧରେ ପ୍ରାୟ ଦୁଇଭାଗ ହୋଇ ରହିଲୁ । ଏପାଖରେ ଆପଣା ଆପଣାର ବୃତ୍ତି ଧରିଲୁ;– ଅର୍ଜନ କଲୁ, ପ୍ରଦର୍ଶନ କଲୁ ଏବଂ ଆତ୍ମବର୍ଦ୍ଧନମାନ ବି କଲୁ । ମାତ୍ର ସେପାଖରେ କଳାକୁ ମନ କଲୁ, ସଂସ୍କୃତିକୁ ମନ କଲୁ, ସୌନ୍ଦର୍ଯ୍ୟ ବୋଲି କଥିତ ହେଉଥିବା ଏକ ଅନ୍ୟ ସାମଗ୍ରୀକୁ ମନ କଲୁ, ପ୍ରୀତି ବୋଲି କୁହା ଯାଉଥିବା ଏକ ଅନ୍ୟ ସମ୍ପର୍କକୁ ମନ କଲୁ । ଆମେ ସେଗୁଡ଼ାକୁ ଆମର ବ୍ରତ ବୋଲି କହିଲୁ । ସଂସାରରେ ସତେଅବା ରୀତିମତ ଏକ ବୃତ୍ତି ପରି ଅଶାନ୍ତି ଗୁଡ଼ାକୁ ଭିଆଇ ଯେଉଁମାନେ ତେଣେ ବିଶ୍ୱ-ଶାନ୍ତି

ନିମିତ୍ତ ଯଜ୍ଞ କରି ବାହାରନ୍ତି, ଠିକ୍ ସେହିମାନଙ୍କ ପରି ଆମେ ଆମ ନିଜ ନିଜର ବୃତ୍ତିଗୁଡ଼ାକରେ ବୁଡ଼ି ରହିଲୁ ସତ, ମାତ୍ର ତେଣେ ବ୍ରତମାଙ୍କଣାର ପିଣ୍ଡା ଦାଣ୍ଡଗୁଡ଼ାକ ଉପରେ 'ବୃତ୍ତି ପ୍ରକୃତରେ କିଛି ନୁହେଁ, ବ୍ରତ ହିଁ ସବୁ' ବୋଲି ହାହାକାର କରିବାରେ ଲାଗିଲୁ, ହରିବୋଲ ଦେବାରେ ଲାଗିଗଲୁ । ଆମ ବୃତ୍ତିଗୁଡ଼ାକ ଆମ ଖୋସଣିରେ ଭାରି ନିରାପଦ ଭାବରେ ବନ୍ଧା ହୋଇ ରହିଲା ଏବଂ ଆମର କରୀମସ୍ତକ ଗୁଡ଼ାକ ଉପରେ ଆମର ବ୍ରତଗୁଡ଼ାକ ଚିତା ପ୍ରାୟ ଶୋଭା ପାଇବାକୁ ଲାଗିଲା । ବୁଦ୍ଧି ବଳରେ ଏକ ଚମତ୍କାର ସାଲିଶ ହୋଇଗଲା । ଆଧୁନିକତାର ନ୍ୟାୟ ଅନୁସାରେ, ଜୀବନରୂପୀ ଶିଶୁଟିକୁ ସମାନ ଦୁଇଭାଗ କରି ଆମେ ସତେଅବା ଆପଣା ଭିତରେ ଦୁଇ ସପତ୍ନୀରେ ବିଭକ୍ତ ହୋଇ ସେହି ଭାଗଗୁଡ଼ିକୁ ଭୋଗ କରିବାକୁ ଲାଗିଲୁ । ବୃତ୍ତି ଓ ବ୍ରତ ଦୁହିଁଙ୍କର ବାନା ଉଡ଼ିଲା; ବୃତ୍ତି ବ୍ରତ ଲାଗି ଛଡ଼ିତରାସ ଖଞ୍ଜି ଦେଲା, ଛାମୁଡ଼ିଆ ବାନ୍ଧି ଦେଲା, ଉପାୟନର ବ୍ୟବସ୍ଥା କଲା; ଏବଂ ବ୍ରତ ବୃତ୍ତିର ସ୍ତବ ଗାଇଲା, ଚାରଣବୃତ୍ତି ବି କଲା, ଭାଟ ହେଲା ।

କଥା ପଡ଼ିଲା ଯେ ଆଗ କାଳରେ କାଳିଦାସ କୁଆଡ଼େ ବିକ୍ରମାଦିତ୍ୟଙ୍କ ସଭାରୁ ତାଙ୍କ ସଞ୍ଚାଟିକୁ ପାଇ ଯାଉଥିଲେ ବୋଲି ଏଡ଼େ ବଡ଼ କବି ହୋଇ ପାରିଥିଲେ । ସିଏ ଖାଲି ସଞ୍ଚା ପାଉ ନଥିଲେ; କଥିତ ଅଛି ଯେ ରାଜସଭାର ପ୍ରଶସ୍ତି-ଅଭିଷେକର ମଙ୍ଗଳ ବରଷାଇ କାଳିଦାସ କୁଆଡ଼େ ପ୍ରତିଦିନ ଗୋଟିଏ ସ୍ୱରଚିତ ଶ୍ଳୋକ ପାଠ କରୁଥିଲେ ଓ ପାଠ କରିବା ମାତ୍ରକେ ତାଙ୍କୁ ସେହି ଦିନର ପ୍ରାପ୍ୟ ଗୋଟିଏ ସୁନା ମୋହର ତୁରନ୍ତ ମିଳି ଯାଉଥିଲା । ଖୋଦ୍ ରାଜହସ୍ତରୁ ମିଳି ଯାଉଥିଲା । ବ୍ରତ ଭାଗ୍ୟବାନ ହୋଇ ବୃତ୍ତିର ଅଳିନ୍ଦରୁ ସ୍ୱ-ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲା ଓ ଗୃହିଣୀର ମନ ତୋଷୁଥିଲା । ବ୍ରତ ଆଉ ବୃତ୍ତି ଭିତରେ ଆଗକାଳରେ କୁଆଡ଼େ ଏହିପରି ଏକ ମଙ୍ଗଳସୂତ୍ର ସମ୍ଭବ ହୋଇ ପାରିଥିଲା ବୋଲି ବ୍ରତ ବ୍ରତରୂପେ ସମ୍ଭବ ହୋଇ ପାରୁଥିଲା । ବୃତ୍ତିର ଅନୁଗ୍ରହ ରହିଥିବା ପର୍ଯ୍ୟନ୍ତ ବ୍ରତଟା ଯେ ବ୍ରତ ହୋଇ ରହିବା ଲାଗି ଯଥେଷ୍ଟ ଅନୁକୂଳତା ଲାଭ କରିପାରେ, ଏଥିରୁ ଏହିପରି ଏକ ବିପଜ୍ଜନକ ଅପସାନ୍ତ୍ୱନାର ସିଦ୍ଧାନ୍ତ ମଧ୍ୟ ଅନେକ ସମୟରେ ସୂଚିତ ହୋଇ ଯାଇଥାଏ । ଯେତେବେଳେ ବୃତ୍ତି ପାଖରେ ବ୍ରତ ବୋଲି କିଛି ନଥାଏ, ଯେତେବେଳେ ବୃତ୍ତି ହିଁ ଏକମାତ୍ର ନିଶା ହୋଇ ରହିଥାଏ, ଯେତେବେଳେ ଜୀବନରେ ମନ୍ତ୍ର ବୋଲି କିଛି ନଥାଏ ଓ ବୃତ୍ତି ହିଁ ଏକମାତ୍ର ଧର୍ମରେ ପରିଣତ ହୋଇ ରହିଥାଏ, ସେତେବେଳେ ବୃତ୍ତିର ଯାବତୀୟ ଆସ୍ଥାନ ଓ ଉତ୍ତମଥାନ ଗୁଡ଼ାକ ବ୍ରତକୁ ଅନୁଗୃହୀତ କରି ଅର୍ଥାତ୍ ବ୍ରତୀମାନଙ୍କୁ ଅନୁଗ୍ରହ ଦେଖାଇ ହିଁ ସମ୍ଭବତଃ ଆପଣା ଅଭାବଟାର ପୂରଣ କରିବାର ପ୍ରୟାସ କରିଥାନ୍ତି । ସେତେବେଳେ ରାଜକୋଷରୁ ରତ୍ନ ଅଜାଡ଼ି ହୋଇପଡ଼ି ସଭାପଣ୍ଡିତର ଅଣ୍ଟିଗୁଡ଼ାକୁ ଠୋଳକା କରିଦେଇ ଯିବାରେ ଲାଗିଥାଏ । ରାଜସ୍କନ୍ଧ ଉପରେ ଅକ୍ଷତ ବରଷୁଥାଏ, ରାଜ-କବି

ରାଜଲକ୍ଷ୍ମୀଙ୍କର ସ୍ତୁତି ଗାଇବାରେ ଲାଗିଥାଏ । ଏବଂ ଏହିପରି କାଳକ୍ରମେ ବ୍ରତ ଗୁଡ଼ାକ ବି ହୁଏତ ଗୋଟାଏ ଗୋଟାଏ ବୃତ୍ତିରେ ପରିଣତ ହୋଇଯାଏ । ଚାନ୍ଦୁଆ ଟଣା ହୁଏ, ପଗଡ଼ି ଉପରେ ଜରି ଲାଗେ, ନାଲି ଗାଲିଚା ଲମ୍ବି ଯାଏ । ପୁରସ୍କାର ବିତରଣ ହୁଏ, ଆପ୍ୟାୟନର ଭାରିରେ ସନ୍ଧ୍ୟା ଗୁଡ଼ାକ ସତେଅବା ଦୁଲୁକି ଉଠିଲା ପରି ଲାଗନ୍ତି । ଆକାଶ-ମଣ୍ଡଳରୁ ସବୁଯାକ ତାରା ସତେଅବା ଖସି ପଡୁଥିଲା ପରି ଲାଗନ୍ତି । ବୃତ୍ତି ଓ ବ୍ରତର ବାହାଘର ହୋଇଯାଏ । କାହାରି ଭିତରେ କିଏ ଲୀନ ହୋଇଯାଏ, ସେ କଥା ନିର୍ଧାର୍ଯ୍ୟ କରି କହିବା ଲାଗି ଯୁଗର ଇତିହାସକାରଙ୍କୁ ଆଦୌ କଷ୍ଟ କରିବାକୁ ପଡ଼େନାହିଁ ।

ଆମ ଭିତରୁ କିଏ ସାହିତ୍ୟକୁ ବୃତ୍ତି ବୋଲି ଗ୍ରହଣ କରେ ଓ ଆଉ କିଏ ବ୍ରତ ବୋଲି ଗ୍ରହଣ କରେ, ସେକଥାକୁ ମାପିବାର ମାପକାଠି କେବେ ଦୁଷ୍ପ୍ରାପ୍ୟ ହୋଇ ରହିଥିଲେ ମଧ୍ୟ ଏକଥା ନିରାଟ ସତ ଯେ, ଆମ ସାହିତ୍ୟିକ ମାନେ ଅନେକ ସମୟରେ ବ୍ରତ ଓ ବୃତ୍ତି ଏହି ଦୁଇଟାଯାକ ଭିତରେ ସର୍ବଦା ଏପାଖ ସେପାଖ ହେବାରେ ଲାଗିଥାନ୍ତି । ବ୍ରତଭାବରେ ଗ୍ରହଣ କରି ଆଗକୁ ଯାଉଯାଉ ହଠାତ୍ ବୃତ୍ତିକୁ ଆଶା କରନ୍ତି ଏବଂ ବୃତ୍ତି ଭାବରେ କାମୁଡ଼ି ଧରିଥିଲେ ମଧ୍ୟ ସାହିତ୍ୟ ଯେ ଏକ ବ୍ରତରେ ପରିଣତ ହୋଇପାରେ, ଏହି ବିଷୟରେ ଭାବବିହ୍ୱଳ ହୋଇ କେତେ କ'ଣ ଉଦ୍‌ଗାରିବାରେ ଲାଗିଥାନ୍ତି । ଏଇଟା ମଧ୍ୟ ଏକାନ୍ତ ସତ୍ୟ ଯେ ସାହିତ୍ୟକୁ ବୃତ୍ତି କରି କେହି ସଂସାରରେ ଜନ୍ମ ହୁଏନାହିଁ । କୌଳିକ ବ୍ୟବସ୍ଥାପନ ଦ୍ୱାରା ଚଳି ଆସୁଥିବା ଅନେକ ସମାଜରେ ମଣିଷ ତା'ର କୁଳବୃତ୍ତିକୁ ପ୍ରାୟ ସାଙ୍ଗରେ ନେଇ ଜନ୍ମ ଗ୍ରହଣ କରିଥାଏ; ଚମାର ପୁଅ ଚମାର ହୁଏ, ପଣ୍ଡାପୁଅ ପଣ୍ଡା ହୁଏ ଧୋବା ପୁଅ ଧୋବା ହୁଏ । ସାଗରକୁ ଦେଖିବା ଦିନଠାରୁ ହିଁ ନୋଳିଆ ପୁଅ ନୋଳିଆ ହୋଇ ଜନ୍ମ ଗ୍ରହଣ କରିଥାଏ । ଏସ୍କିମୋପିଲା ସିଲ୍‌ମାଛର ଶିକାରୀ ହୋଇ ଜନ୍ମଗ୍ରହଣ କରେ । କିନ୍ତୁ ସାହିତ୍ୟଘରର ପୁଅ ଯେ ସାହିତ୍ୟ ଲାଗି ହିଁ ଜନ୍ମଗ୍ରହଣ କରେ, ସେକଥା କେହି ଦୃଢ଼ଭାବରେ କହିପାରିବ ନାହିଁ । ଯୋଉ ସାହିତ୍ୟିକ ଅବସ୍ଥା ଚକ୍ରରେ ପଡ଼ି ନିଜର ଘରଟିକୁ ଏକ ସାହିତ୍ୟ-ଘରରେ ପରିଣତ କରି ରଖିଛି, ସିଏ ଯେ ସାହିତ୍ୟକୁ ନାହିରେ ବାନ୍ଧି ଜନ୍ମ ହୋଇଥିଲା, ସେକଥା କେହି କହି ପାରିବ ନାହିଁ । ସାହିତ୍ୟକୁ ବ୍ରତ ରୂପେ ହିଁ ଗ୍ରହଣ କରିବାକୁ ହୁଏ । ଅର୍ଥାତ୍ ସାହିତ୍ୟର ହୋଇଯିବାକୁ ହୁଏ, ସାହିତ୍ୟଲାଗି ବଞ୍ଚିବାକୁ ହୁଏ; ଭବିଷ୍ୟତର ଏକ ସୁନ୍ଦର ଚିତ୍ରକୁ ସମକ୍ଷରେ ରଖି ବର୍ତ୍ତମାନର ମଞ୍ଜି ଭିତରେ ଯେଉଁ ଆନ୍ଦୋଳନର ବାର୍ତ୍ତାଟିକୁ ପହଞ୍ଚାଇବା ଯୁଗେ ଯୁଗେ ସାହିତ୍ୟିକର ଧର୍ମ ହୋଇ ରହିଆସିଛି, ଆପଣାକୁ ପ୍ରାୟ ଜାଣିଶୁଣି ସେହି ଆନ୍ଦୋଳନରେ ସାମିଲ୍ କରିନେବାକୁ ହୁଏ । ଭ୍ରାତୃତ୍ୱର ଏକ ଅନ୍ୟଧର୍ମୀ ଆବେଦନ ମଧ୍ୟରେ ଜାତି, ଯୁଗ ଓ ଭାଷାର ବାଡ଼ଗୁଡ଼ାକୁ ଅତିକ୍ରମି ଯିବାକୁ ହୁଏ । କାନ୍ଥଗୁଡ଼ାକ ଅପେକ୍ଷା ଗବାକ୍ଷରେ ଅଧିକ ବିଶ୍ୱାସ ସ୍ଥାପନ

କରିବାକୁ ହୁଏ । ଏବଂ ସାହିତ୍ୟକୁ କେବଳ ବ୍ରତ ବୋଲି ଗ୍ରହଣ କରି ପାରିଲେ ଯାଇ ସାହିତ୍ୟ ଭିତରେ ରହି ଏସବୁ କରିହୁଏ । ସଂସାରରେ ଯେ ସାହିତ୍ୟିକର କୌଣସି ବୃତ୍ତି ନଥାଏ, ସେକଥା ଆଦୌ ନୁହେଁ; ବୃତ୍ତିଥାଏ, ମାତ୍ର ବ୍ରତଟା ହିଁ ବୃତ୍ତିକୁ ସଞ୍ଚାଳିତ କରୁଥାଏ । ଅଭିସାରିକାର ବ୍ରତଟା ହିଁ ଯେପରି ସଚରାଚର ଅଭିସାରିକାର ଗୋଡ଼ ଦୁଇଟାକୁ ସଞ୍ଚାଳିତ କରି ଆସିଛି, ଠିକ୍ ସେହିପରି ସାହିତ୍ୟ ହେଉଛି ବସ୍ତୁତଃ ଏକ ଅଭିସାର, ଏକ ବ୍ରତ । ସାହିତ୍ୟ କେତେ ମଣିଷଙ୍କୁ ଯୁଗେ ଯୁଗେ ବୃତ୍ତିର ଜଗତରେ କେତେ ପ୍ରକାରେ ନିଃସ୍ୱ ଏବଂ ନିଃଦ୍ରବ୍ୟ କରି ରଖିଛି, କେତେ ସିଂହାସନଚାରୀଙ୍କ ଦୃଷ୍ଟିଠାରୁ ଦୂରରେ ରଖିଛି, କେତେ ସଫଳତା ତଥା ସ୍ୱୀକୃତିର ଦ୍ୱାରରୁ ସେମାନଙ୍କୁ ଦୂରରେ ରଖିଛି । ସାହିତ୍ୟିକ ତଥାପି ବଞ୍ଚିଛି, ବାହାରକୁ ନିଃସ୍ୱ ହୋଇ ରହିଥିଲେ ମଧ୍ୟ ସେ ଆପଣାର ଧନରେ ତଥାପି ଧନୀ ହୋଇ ରହିଛି; ବାହାରୁ ସ୍ୱୀକୃତି ନପାଇଲେ ମଧ୍ୟ ସିଏ ଆପଣା ଆକାଶଟିର ଅଭୟଟି ମଧ୍ୟରେ "ଅଭୟଂ ମିତ୍ରାତ୍ ଅଭୟଂ ଅମିତ୍ରାତ୍" ହୋଇ ରହିଛି । ସ୍ୱର୍ଣ୍ଣଲୋଭୀମାନେ ସମସ୍ତେ ଦରବାରକୁ ଯାଇଥିବା ସମୟରେ ଜୀବନର ଅଗଣାଟିରେ ସିଏ କେଡ଼େ ପ୍ରତ୍ୟୟ ସହିତ ବଉଳଫୁଲ ଗୋଟାଇବାକୁ ମନକରିଛି । ସାହିତ୍ୟିକ ଯୁଗେ ଯୁଗେ ଏହି ଫୁଲଗୁଡ଼ାକର ହୋଇ ରହିଛି, ଏହି ବଗିଚାଟିର ହୋଇ ରହିଛି । ସିଏ ନୈକଟ୍ୟ ଲୋଡ଼ିଛି; ଅନ୍ତର ଲୋଡ଼ିଛି;– ଏକାବେଳେକେ ଆଗତ ଓ ଅନାଗତ ଦୁଇଟାଯାକ ଆଖିରେ ସମସ୍ତ ବିଶ୍ୱକୁ ଦେଖି ପାରିବ ବୋଲି ବିଧାତା ପାଖରେ ଚକ୍ଷୁ ମାଗି ବୁଲିଛି । ତାହାରି ସମ୍ମୁଖରେ ସଭାର ପଣ୍ଡିତ ଏବଂ ପଣ୍ୟନିଷ୍ଠମାନେ ଆଦେଶ ପ୍ରମାଣେ ଇଜ୍ଜତ ବିକି ହୀରାଲୀଳା ବୋହି ଆଣିବାକୁ ଯାଇଛନ୍ତି, ଯଜମାନମାନଙ୍କର ଚାଟୁକାରିତା କରିବାକୁ ହିଁ ଯୁଗାଚାର ଅନୁସାରେ ସାହିତ୍ୟ ବୋଲି କହିବାକୁ ବାଧ୍ୟ ହୋଇଛନ୍ତି, ଆପଣାର ପୋଥିଗୁଡ଼ାକୁ ବନ୍ଧାପକାଇ ସାଧବ ହୋଇ ଘରକୁ ଫେରିଛନ୍ତି;–ଏବଂ ସାହସହୀନତାଗୁଡ଼ାକୁ ନେଇ ଅରସିକମାନଙ୍କ ଲାଗି ମହାକାବ୍ୟ ଲେଖିଛନ୍ତି । ପରିତୁଷ୍ଟ ମହାହୃଷ୍ଟମାନଙ୍କଠାରୁ ସେମାନେ ପାରିତୋଷିକ ଲାଭ କରିଛନ୍ତି ସତ, ମାତ୍ର ସାହିତ୍ୟିକ ତଥାପି ତା'ର ବ୍ରତକୁ ତ୍ୟାଗ କରିନାହିଁ । ଆକାଶର ତାରା ଏବଂ ବାଟର ବଇଁଶୀଆଳକୁ ନିଜର ସାଥୀ କରିବାର ଧର୍ମଟିକୁ ସିଏ ତଥାପି ପରିହାର କରି ପାରିନାହିଁ । କେଉଁଠି କାହାର ତଟ୍ଟ ଉପରେ ଆଉଜି ପଡ଼ିବା ଲାଗି ସିଏ ଭୀରୁତା ଗୁଡ଼ାକୁ ଆଉ କୌଣସି ନାମରେ ଅନ୍ୟ କିଛି ବୋଲି କହିବାର ଶୀଳଭଙ୍ଗ କଦାପି ସୃଷ୍ଟି କରିନାହିଁ ।

ଯୁଗେ ଯୁଗେ ସଭାପଣ୍ଡିତ ହିଁ ସାହିତ୍ୟକୁ ବୃତ୍ତି କରି ଆସିଛି । ଚାଟ ସିଆଣିଆ ହେଲେ ଯେପରି ବିଦ୍ୟାକୁ ବ୍ରତ ନକରି ଏକ ବୃତ୍ତିରେ ପରିଣତ କରିଦିଏ, ଅଧ୍ୟାପକ ସିଆଣିଆ ହେଲେ ଯେପରି ଅଧ୍ୟାପନାକୁ ବ୍ରତ ନକରି ଏକ ବୃତ୍ତିରେ ପରିଣତ କରିଦିଏ,

ପ୍ରେମିକ ସିଆଣିଆ ହେଲେ ଯେପରି ପ୍ରେମ ନାମରେ ଗୋଟାଏ ଆୟ-ବ୍ୟୟର ହିସାବ ଖାତା ରଖିବାକୁ ଆରମ୍ଭ କରେ ଓ ହିସାବର ହିଁ ସମୀକ୍ଷା କରିବାରେ ଲାଗିଥାଏ, ସେହିପରି ସାହିତ୍ୟିକ ବି ସିଆଣିଆ ହେଲେ ସାହିତ୍ୟକୁ ଏକ ବୃତ୍ତିରେ ପରିଣତ କରିଦିଏ, ସତେଅବା ଏକ ସମ୍ପତ୍ତିରେ ପରିଣତ କରିଦିଏ । ସେତେବେଳେ ଖୁସୀ ହେବାଲାଗି ଆଉ ପାହାଡ଼ କାନ୍ଥରେ ଥିବା ଘଞ୍ଚ ତୋଟାମାଳ ଆଡ଼କୁ ନଯାଇ ତାକୁ ମାଲଗୋଦାମ ଆଡ଼େ ଯିବାକୁ ପଡ଼େ । ମାଲଖାନା ଆଡ଼କୁ ଯିବାକୁ ପଡ଼େ । ଏଣେ ସାହିତ୍ୟକୁ ବ୍ରତ କରି ତେଣେ ଆଉ ଗୋଟାକୁ ବାଧ ହୋଇ ବୃତ୍ତି କରି ଧରିଥିବାରୁ ସେ ଯେତିକି ଲେଖି ପାରୁଛି, ଜାତିର ସାହିତ୍ୟ-ଭଣ୍ଡାରକୁ ଯେତିକି ଦେଇପାରୁଛି, ସାହିତ୍ୟକୁ ଗୋଟାଏ ବୃତ୍ତି କରି ବି ଧରି ପାରିଥିଲେ ସିଏ ତାହାର ଅନେକ ଗୁଣ ଅଧିକ ଲେଖି ପାରୁଥାନ୍ତା ଓ ଖାଲି ଜାତିର ଭଣ୍ଡାରରେ କାହିଁକି, ପଞ୍ଚ—ପରମେଶ୍ୱର ମାନଙ୍କର ଭଣ୍ଡାରରେ ମଧ୍ୟ ଆହୁରି ଅନେକ ଗୁଣ ଅଧିକ ଅଜାଡ଼ି ଦେଇ ପାରୁଥାନ୍ତା ବୋଲି ସିଏ ବାହୁ ଟେକି ପୁଚ୍ଛ ଜାକି ଅଭିଯୋଗ କରିବାକୁ ଲାଗେ । ଏ ଜାତି ସାହିତ୍ୟକୁ ମୋଟେ ବୁଝିଲାନାହିଁ ବୋଲି କାରୁଣ୍ୟ କରିବାକୁ ଲାଗେ; ସିଏ ଏଥିଲାଗି ଅତୀତକୁ ଗୁହାରି ବସାଏ, ପଡ଼ୋଶୀ ଅନ୍ୟ ଭାଷା ଓ ଅନ୍ୟ ସାହିତ୍ୟଗୁଡ଼ାକର ଦ୍ୱାହି ଦେବାକୁ ଯାଏ । ଖାଲି ବଟୁଆଟାର ପ୍ରଦର୍ଶନ କରି ସିଏ କଟକରୁ ଭୁବନେଶ୍ୱର ଯାଏ ଆସିବାକୁ ବି ରାଜି ହୋଇଯାଏ । ଜାତି ଆଉ ଦେଶର ନାଆଁଗୁଡ଼ାକୁ ଘୋଷି ନହେଲେ ସିଏ ସାହିତ୍ୟ ବିଷୟରେ ସତେଅବା କିଛିହେଲେ କହି ପାରେନାହିଁ । ଯେତେବେଳେ ପୃଥିବୀରେ ଜାତି ନଥିଲା କି ଦେଶ ନଥିଲା, ଯେତେବେଳେ ଏଇଟା ମୋ'ର ଭାଷା ଓ ଏଇଟା ତା'ର ଭାଷା ବୋଲି କହିବାର ଭେଦ ବିଦ୍ୟାଟି ମଣିଷର ଜୀବନଶାଳାରେ ତଥାପି ପଇଟି ନଥିଲା, ସେତେବେଳେ ତଥାପି ଯେ ସାହିତ୍ୟ ଥିଲା, ସାହିତ୍ୟିକ ଥିଲା, ପ୍ରେମ ଥିଲା, ନିଜକୁ ଗୋଟାସୁଦ୍ଧା ଦେଇ ଦେଉଥିଲା ଓ ଏଇଠି ଏହି ମହୀତଳେ ଠିଆ ହୋଇ ତଥାପି ଯେ ପରିପୂର୍ଣ୍ଣ ଶ୍ରଦ୍ଧାରେ ଆକାଶର ଆବାହନ କରି ହେଉଥିଲା, ଗୁହାରିଆ ସାହିତ୍ୟ—ପାଟରାମାନଙ୍କର ସେ କଥାଟି ସତେଅବା ଆଦୌ ମନେ ପଡ଼େ ନାହିଁ । ଅମୁକ କବି ବା ଅମୁକ ଲେଖକ ଜୀବନଟା ଯାକ ଜାତିର ଏତେ ବଡ଼ ସେବା କରି ଆସିଲେ, ହଁ,—କୁଆଡ଼େ ମାତୃଭାଷାର ବି ଏତେଗୁଡ଼ାଏ ସେବା କରି ଆସିଲେ, ଆମ ଦାଣ୍ଡର ବଡ଼ ମାନଙ୍କର ମୁଣ୍ଡରେ ଏତେ ଏତେ କୁସୁମ ବରଷାଇଲେ, ତଥାପି ତାଙ୍କର ବାର୍ଦ୍ଧକ୍ୟ ଏବଂ ଅକର୍ତ୍ତବ୍ୟ ସମୟରେ ତାଙ୍କୁ ଜାତି ଏତେ ଟିକିଏ ପଚାରିଲା ନାହିଁ, ଅର୍ଥାତ୍ ସରକାର ତାଙ୍କୁ କିଛି ଦେଲେନାହିଁ, ସାହିତ୍ୟକୁ ବୃତ୍ତିରୂପେ ଧରି ମୁକାମ ବିକୁଥିବା ସାହିତ୍ୟିକ ଓ ସାହିତ୍ୟ ରସିକମାନେ ସେତେବେଳେ ଏହାକୁ ନେଇ ହୁଏତ ଗୋଟାଏ ଆନ୍ଦୋଳନର ବି ସୂତ୍ରପାତ କରିଦିଅନ୍ତି । ବୃତ୍ତିର ସବୁଯାକ ଆଚାର ଏବଂ

ପରମ୍ପରା ଆସି ବ୍ରତର ଅଦ୍ଧ୍ୟହାତରେ ଶିଳପୁଆ କଚାଡ଼ି ଦେଇଥାଏ । ବ୍ରତକୁ ଦୋଚାରୁଣୀ କରି ବାହାର କରିବାର ଯାବତୀୟ ପ୍ରରୋଚନା ଦିଏ, ନାନା ଫିସାଦରେ ନାନାଭଳି ଜନମତ ସୃଷ୍ଟି କରାଏ, ସାହିତ୍ୟ–ସମାଜ ଓ ଖବର କାଗଜକୁ ଆୟୁଧ ଏବଂ ଏପରିକି ଅନେକ ସମୟରେ ସତେଅବା ଏକ ମୋଦକ ପରି ବ୍ୟବହାର କରେ ।

ଏବଂ ସାହିତ୍ୟ ଯେତେବେଳେ ଗୋଟାସୁଦ୍ଧା ଏକ ବୃତ୍ତିରେ ପରିଣତ ହୋଇଯାଏ, ଅର୍ଥାତ୍ ଆଠପହରଯାକ ସତେଅବା ଗୋଟାଏ ଧନ୍ଦାରେ ହିଁ ପରିଣତ ହୋଇ ରହେ, ବ୍ରତ ଓ ତଦ୍‌ବାଚକ ଅନ୍ୟ ସବୁକିଛି ଯୁଗର ଆବଶ୍ୟକତା ଦୃଷ୍ଟିରୁ ଏକାନ୍ତ ଅନାବଶ୍ୟକ ବୋଲି ବର୍ଜିତ ହୋଇ ରହନ୍ତି, ସେତେବେଳେ ସାହିତ୍ୟର ପ୍ରମୋଦବନରେ ପାରସ୍ପରିକ ସାହିତ୍ୟିକ-ପୂଜାର ଏକ ଅଭିନବ ହାସ୍ୟ-ଲାସ୍ୟ-ମଣ୍ଡନ ଆରମ୍ଭ ହୋଇଯାଏ । ସାହିତ୍ୟ ଯେ ମୂଳତଃ ଏକ ସୃଜନ–ଏକ ସୃଜନାତ୍ମକ ପ୍ରେରଣା, ସୃଜନାତ୍ମକ ସାଧନା ତଥା ସୃଜନାତ୍ମକ ସମଗ୍ର ଜୀବନରୁ ଯେ ଏହାର ଯାବତୀୟ ଔଚିତ୍ୟର ପ୍ରତିପାଦନ କରାଯିବା ଉଚିତ, ସେକଥା ଗୋଟାସୁଦ୍ଧା ଚୂଲୀକୁ ଯାଏ; ଏବଂ ତେଣିକି ଗାନ୍ଧର୍ବ ମତରେ ସାହିତ୍ୟ ଚାଲେ, ବରଣ ଚାଲେ, ଆପ୍ୟାୟନ ଚାଲେ । ପୂଜା ପଶିଗଲା ମାତ୍ରକେ ଯେ ପ୍ରେରଣା ମରିଯାଏ, ସୃଜନ ଅଭିଆଡ଼ୀ ହୋଇ ରହିଯାଏ, ପୂଜାମଣ୍ଡପଟିକୁ ରମ୍ଭାବୃକ୍ଷ ଏବଂ ରବରବେଲୁନ ଦ୍ୱାରା ସଜାଇ ରଖିବାକୁ ବ୍ରତ ବୋଲି ଗ୍ରହଣ କରି ନେଇଥିବା ଡିହାଡ଼ିମାନେ ସେ କଥାଟିକୁ ଆଉ ମନେ ରଖି ପାରନ୍ତି ନାହିଁ । ତା'ପରେ କେବଳ ମାଳପା ଭୋଗହିଁ ବଣ୍ଟା ହେବାକୁ ବାକି ରହିଥାଏ । ପୂଜ୍ୟ ପୂଜାଗୁଡ଼ାକ ପାରସ୍ପରିକ କ୍ରମ ଓ ବନ୍ଧନ ଅନୁସାରେ ଅନୁସୃତ ହେଉଥିବାରୁ ଠାକୁରଙ୍କର ଛତିଶି ଯାତ ପରି ବରଷକରେ ଛତିଶଥର ମାଳପା ଭୋଗ ଖିଆ ହୁଏ । ଆମର ବି ଗୋଟାଏ ଜାତି ଅଛି, ଆମର ବି ଗୋଟାଏ ସାହିତ୍ୟ ଅଛି ଓ ଆମରବି ଗୋଟାଏ ବଜାର ଅଛି ବୋଲି ପରିପୂର୍ଣ୍ଣ ପ୍ରତ୍ୟୟ ନେଇ ଆପ୍ୟାୟିତମାନେ ଘରକୁ ଫେରନ୍ତି । ସାହିତ୍ୟକୁ ବ୍ରତ ବୋଲି ଗ୍ରହଣ କରା ଯାଉଥିଲେ ନାଗରା ବଜାଇବାର ଅଥବା ହୁକ୍‌କା ପାଣି ସଜାଡ଼ିବାର ଆଦୌ କୌଣସି ପ୍ରୟୋଜନ ରହନ୍ତାନାହିଁ । ସେତେବେଳେ ମୂଳତଃ ଜନନୀମାନଙ୍କ ମଧ୍ୟରେ ହିଁ କଥାବାର୍ତ୍ତା ହୁଅନ୍ତା, ଆପଣା ଆପଣାର ଗର୍ଭ-ଯନ୍ତ୍ରଣା ବିଷୟରେ କଥାବାର୍ତ୍ତା ହୁଅନ୍ତା । ପରସ୍ପରର ଚକ୍ଷୁ ଭିତରେ ପରସ୍ପରର ଗଭୀରତାକୁ ମାପି ପରସ୍ପରକୁ ପ୍ରମାଣ କରିବାର ଅନ୍ୟ ରୀତିଟି ପ୍ରଚଳିତ ହୁଅନ୍ତା;–ସାହିତ୍ୟିକ ଯେ ମୂଳତଃ ଏକ ଜନନୀର କାର୍ଯ୍ୟ କରେ, ଆମେ ସମସ୍ତେ ଜନନୀ ହୋଇ ପରସ୍ପରର ପାଖରେ ଯାଇ ବସୁଥିଲେ ସିନା ପରସ୍ପରର ଏହି ଧନାଢ଼୍ୟତାକୁ ସବାଆଗ ଚିହ୍ନି ନେଇ ପାରନ୍ତେ ! ମାତ୍ର ବୃତ୍ତିର ମହୁଭାଡ଼ିଗୁଡ଼ାକ ଲୋସଡ଼ି ପଡୁଥିବା ବେଳେ ଏବଂ ବ୍ରତୀମାନେ ବୃତ୍ତିଧାରୀମାନଙ୍କର ମୋଟା ବହିରେ ନାଆଁ ଲେଖାଇବା ପାଇଁ ଦଉଡ଼ିଥିବାବେଳେ ବନ୍ଧ୍ୟାତ୍ୱଟାକୁ କାହିଁକି ବା ଗୋଟାଏ ଅଯୋଗ୍ୟତା ବୋଲି କୁହାଯିବ ?

ସାହିତ୍ୟକୁ ବୃତ୍ତି କରି ଧରିଲେ ସାହିତ୍ୟରୁ ସମୀକ୍ଷା ମରିଯାଏ, ଅର୍ଥାତ୍ ସାହିତ୍ୟର ଯାବତୀୟ ଅବଲୋକନ କେବଳ ଶୁଖି ଶୁଖି ଯାଏ । ସ୍ତୁତି ବଢ଼େ, ପ୍ରଶସ୍ତିଗୁଡ଼ାକ ଆହୁରି ଚଉଦପାଆ ବଢ଼ିଯାଏ, ଏବଂ ଫମ୍ପା ସ୍ଫୂର୍ତ୍ତିଗୁଡ଼ାକ ଗୋଡ଼ରେ ରଣପା ଲଗାଇ ରାଜାଙ୍କର ଦୁଆରୀ ହୋଇ ନାଚିବାରେ ଲାଗନ୍ତି । ଯିଏ ବ୍ରତୀ, ସେଇ ବାଟ ଚାଲିବାକୁ ମନ କରିଥାଏ, ବାଟକୁ ହିଁ ସାଙ୍ଗ କରି ବାହାରିଥାଏ । ତେଣୁ ସମୀକ୍ଷାକୁ ଭୂଷଣ ବୋଲି ଗ୍ରହଣ କରି ନେଇଥାଏ । ସିଏ ନୂଆ ପବନକୁ ଡରେ ନାହିଁ, ନୂଆ ଅରଣ୍ୟକୁ ବି ଡରେ ନାହିଁ । ନିତ୍ୟଦିନର ବାଟରେ ସିଏ ନୂଆ ଚଢ଼େଇର ଡାକ ଶୁଣି କୃତାର୍ଥ ହେବ, ଅର୍ଥାତ୍ ଆପଣା ଭିତରେ ନୂଆ ଦୁଆରଟିଏ ଖୋଲିଦେଇ ପାରିବ ବା ନୂଆ ଆସନଟିଏ ବିଛାଇଦେଇ ପାରିବ ବୋଲି ଆଶାନ୍ୱିତ ହୋଇ ରହିଥାଏ । ବ୍ରତୀ ବ୍ରତଚାରୀକୁ ଲୋଡ଼େ । ବ୍ରତଚାରୀ ସହିତ ବ୍ରତଚାରୀର ସମ୍ବନ୍ଧ ଆଦୌ କୌଣସି ପ୍ରକାରର ପ୍ରତିଦ୍ୱନ୍ଦ୍ୱିତା ବା ପରିପନ୍ଥିତାର ଅବକାଶ ଆଣି ଦିଏ ନାହିଁ । ଜଣେ ବାଟୋଇ ଆଉଜଣେ ବାଟୋଇକୁ ସାଥୀ କରିନିଏ । ଦୁହେଁ ଦୁହିଁଙ୍କୁ ନୟନ ପୂରାଇ ଦେଖନ୍ତି, ହୃଦୟ ଦେଇ ଦେଖନ୍ତି, ପରସ୍ପରକୁ ମାପିବାର ସୁଯୋଗ ପାଆନ୍ତି ଏବଂ ସେମାନଙ୍କର ଚଲାପଥ ଉଭୟଙ୍କୁ ପାଇ ଧନ୍ୟ ହୁଏ । ସମ୍ୟକ୍ ଆଲୋଚନା ଦ୍ୱାରା ଧନ୍ୟ ହୁଏ, ସମ୍ୟକ୍ ଅବଲୋକନ ଦ୍ୱାରା ଧନ୍ୟ ଓ ସମୃଦ୍ଧ ହୁଏ । ସତ୍ୟର ଭରଣା ହେବାରେ ଲାଗିଥାଏ, ତୀର୍ଥଦେଖା ଅଧିକରୁ ଅଧିକ ପରିପୂର୍ଣ୍ଣ ହେବାରେ ଲାଗିଥାଏ । ଗୋଟିଏ ଯୁଗ ଆଉ ଗୋଟିଏ ଯୁଗ ଭିତରେ ପରିପୂର୍ଣ୍ଣତା ଲାଭ କରେ, ଅବିଚ୍ଛିନ୍ନ ରହେ । ପ୍ରେରଣା ପ୍ରେରଣାକୁ କାଟି ପକାଏ ନାହିଁ, ପ୍ରେରଣା ପ୍ରେରଣା ସହିତ ଯୋଡ଼ି ହୋଇ ରହେ ଏବଂ ଅସଲ ଅଗ୍ନିଟି ସତତ ପ୍ରଜ୍ୱଳିତ ହୋଇ ରହିଥାଏ । ଆତ୍ମସମୀକ୍ଷା ଓ ପରସ୍ପର ସମୀକ୍ଷା ମଧ୍ୟରେ ସେତେବେଳେ ଧର୍ମତଃ ଆଉ କୌଣସି ଅନ୍ତର ରହେ ନାହିଁ । ଜଣେ କାମୁକହିଁ ଆଉଜଣେ କାମୁକକୁ ଈର୍ଷା କରିପାରେ, ପ୍ରେମିକ ପ୍ରେମିକ ମଧ୍ୟରେ ଈର୍ଷାର କୌଣସି କାରଣ ବା କାହିଁକି ରହିବ ? ତେଣୁ ସାହିତ୍ୟ ପ୍ରକୃତରେ ଏକ ଯଥାର୍ଥ ସହିତ-ଧର୍ମରେ ପରିଣତ ହେବାର ସର୍ବୋତ୍ତମ ଅବସରଟି କେବଳ ସେତିକିବେଳେ ଆସି ପହଞ୍ଚେ । ସାହିତ୍ୟର ସକଳ ପ୍ରସ୍ତକୁ ସ୍ୱୀକୃତି ମିଳେ, ପଳାୟନ ଲାଗି ଆଉ କୌଣସି ପ୍ରବୃତ୍ତିହିଁ ହୁଏ ନାହିଁ । କୌଣସି ସମୂହର ସାହିତ୍ୟ ମୂଳତଃ ଏକ ବ୍ରତ ହୋଇ ରହିଥିବା ପର୍ଯ୍ୟନ୍ତ ଜୀବନର ତଥାକଥିତ ବୃତ୍ତିଗୁଡ଼ାକ ମଧ୍ୟ ସତେଅବା ଗୋଟିଏ ଗୋଟିଏ ବ୍ରତର ସ୍ତରକୁ ଉତ୍ତୀର୍ଣ୍ଣ ହୋଇ ଆସିବାର ପ୍ରେରଣା ପାଆନ୍ତି । ସେତେବେଳେ ଆଚାର୍ଯ୍ୟ ଶାସକକୁ ପ୍ରେରଣା ଦିଏ, ବ୍ରାହ୍ମଣ ବୈଶ୍ୟକୁ ପରିଚାଳିତ କରିନିଏ ।

ମାତ୍ର ବୃତ୍ତିବାଲାଏ ଏଗୁଡ଼ାକର ପାଖ ପଶନ୍ତି ନାହିଁ । ସେମାନେ ନିଜର ପସୁରୀ ଓ ପାହିଲିଗୁଡ଼ିକ ବ୍ୟତୀତ ଆଉ ଅନ୍ୟ ପାଠ ବା ପ୍ରେରଣା ବିଷୟରେ ପ୍ରାୟ କିଛିହେଲେ

ଜାଣନ୍ତି ନାହିଁ । ସେହି ପସୁରୀ ଓ ପାହିଲିଗୁଡ଼ାକରୁ ହିଁ ଯାହାକିଛି ପ୍ରେରଣା ପାଇଥାନ୍ତି । ପସୁରୀ ଓ ପାହିଲିଗୁଡ଼ାକ ଅନୁସାରେ ବୁଝାଇ କହିଲେ ଯାହାକିଛି ବୁଝନ୍ତି । ସେଗୁଡ଼ାକୁ ସତେଅବା ଆପଣାର ପେଟ ପରି ଦେଖୁଥାନ୍ତି । ସେଇଟି ପୂରିଗଲେ ସବୁ ପୂରିବ ବୋଲି ବିଶ୍ୱାସ କରୁଥାନ୍ତି । ବୃତ୍ତି ପୂରିଲେ ଯେ, କେବଳ କୁଟୁମ୍ବ ପୂରେ ତା' ନୁହେଁ, ବ୍ରତଗୁଡ଼ାକ ମଧ୍ୟ ତାହାରି ସହିତ ଅଲବତ ପୂରିଯାଏ ବୋଲି ସେମାନେ ଏକ ଧର୍ମବିଶ୍ୱାସ ପରି ଗ୍ରହଣ କରି ନେଇଥାନ୍ତି । କୌଣସି ଯୁଗ କେତେ ବେଶୀ ବୃତ୍ତିପ୍ରଧାନ ଅଥବା ବ୍ରତପ୍ରଧାନ ହୋଇ ରହିଛି, ଅନେକ ସମୟରେ ସେଇଥିରୁ ହିଁ ଏକ ଯୁଗର ବେଶ୍ ଏକ କଳନା କରାଯାଇପାରେ । ବୃତ୍ତିପ୍ରଧାନ ଯୁଗ ସାହିତ୍ୟ, ଧର୍ମ, ସାଧନା, ଶୀଳ ଓ ସଂସ୍କୃତି ପ୍ରଭୃତି ଯାବତୀୟ ବ୍ରତସମ୍ପଦକୁ କେବଳ ଏକ ବୃତ୍ତିର ସ୍ତରକୁ ଖସାଇ ଆଣିବା ଲାଗି ଆମକୁ ଯାବତୀୟ ଫିସାଦରେ ପାକଳ କରିଦେବ ବୋଲି ଆଣ୍ଟ କରିଥାଏ । ଯେତେବେଳେ ବୃତ୍ତିଗୁଡ଼ାକ ହିଁ ଏକମାତ୍ର ପ୍ରବୃତ୍ତି-କାରଣ ହୋଇ ରହନ୍ତି, ସେତେବେଳେ କିଏ କେଉଁଠାରୁ କେତେ ପାଇଲା, କାହା ନାମରେ କେତେ ଛାପା କାଗଜରେ ବାହାରିଲା ଓ କିଏ କେତେବେଶୀ ଆମ ଏଯୁଗର ଠାକୁରମାନଙ୍କ ପାର୍ଶ୍ୱବର୍ତ୍ତୀ ହୋଇ ବସିପାରିଲା, ପ୍ରଧାନତଃ ସେଇଥିରୁ ହିଁ ବ୍ରତଗୁଡ଼ାକର ବିଚାର ହେବାରେ ଲାଗିଥାଏ । ସେତେବେଳେ ସାହିତ୍ୟ ଦୁଇଭାଗ ହୋଇଯାଏ । ଦଳେ ସାହିତ୍ୟକୁ ଛତା ପରି ଧରି ସିଂହାସନଗୁଡ଼ାକ ଉପରେ ନେଇ ଟେକି ଧରିଥାନ୍ତି ଏବଂ ତାହାକୁ ହିଁ ପରମ ଅଭ୍ୟୁଦୟ-ସିଦ୍ଧି ବୋଲି ବିଚାର କରୁଥାଆନ୍ତି । ସେମାନେ ସବୁବେଳେ ଅନେକ ସଂଖ୍ୟାରେ ଥାଆନ୍ତି । ଯୁଗେ ଯୁଗେ ଅନେକ ସଂଖ୍ୟାରେ ଥିଲେ, ଏବେ ମଧ୍ୟ ଅନେକ ସଂଖ୍ୟାରେ ରହିଥିବେ । ସାହିତ୍ୟକୁ ସିଂହାସନ ଲାଗି ଏକ ଛତିରେ ପରିଣତ କରି ପାରିଲେ ଯାଇ ତଦ୍ୱାରା ଯୁଗାଧୀଶ୍ୱରମାନଙ୍କର ସ୍ୱୀକୃତି ମିଳେ । ପ୍ରଚଳିତ ସୂତ୍ରଗୁଡ଼ାକ ଅନୁସାରେ ତାହାକୁ ହିଁ ସଫଳତା ବୋଲି କୁହାଯାଏ । ଅନ୍ୟ ଦଳଟି ସାହିତ୍ୟ କହିଲେ ତଥାପି ଏକ ବ୍ରତ ବୋଲି ବୁଝୁଥାନ୍ତି । ଓଡ଼ିଶାରେ ଗୌଡ଼ୀୟ ବୈଷ୍ଣବଧର୍ମ ରାଜଧର୍ମରେ ପରିଣତ ହୋଇଗଲା ପରେ ଓ ଭଗବତ୍-ପ୍ରେମ ରାଜାନୁଗ୍ରହ ମଧ୍ୟରେ ଆପଣାର ପଇତା ହଜାଇ ଆସିବା ପରେ ଏଠି ତଥାପି ଅବଶେଷ ରହି ଯାଇଥିବା ନିର୍ଗୁଣ ଉପାସକମାନେ ଯେଉଁପରି ଗିରିଗୁହାକୁ ଆଶ୍ରା କରି ରହିଲେ, ସେହିପରି ବୃତ୍ତିର ବାନାଗୁଡ଼ାକ ସତେଅବା ମଦମତ୍ତ ହୋଇ ଉଡୁଥିବା ସମୟରେ ସାହିତ୍ୟକୁ ଏକ ବ୍ରତ ରୂପେ ସାଇତି ରଖିବାକୁ ଚେଷ୍ଟା କରୁଥିବା ବ୍ରାତ୍ୟମାନେ ଅପନ୍ତରାରେ ଯାଇ ରହନ୍ତି, ଅନ୍ୟ ଗଳିରେ ଯାଇ ରହନ୍ତି, ଅନ୍ୟ ବିଶ୍ୱାସ ଏବଂ ଅନ୍ୟ ଭରସାରେ ବଞ୍ଚି ରହନ୍ତି । ସେମାନେ ଜୀବନକୁ ସତେଅବା ସ୍ୱର୍ଣ୍ଣ କନ୍ଦୁକ ଲାଭ କରିବାର ଏକ ପ୍ରତିଯୋଗିତାର ପ୍ରାନ୍ତର ବୋଲି ନ ଦେଖି ଅତ୍ୟନ୍ତ ଦୁର୍ବିନୀତ ଭାବରେ ଏକ ଦର୍ପଣ

ରୂପେ ଦେଖିବାର ସାହସ କରୁଥାନ୍ତି । ପୋଷାକଗୁଡ଼ାକରେ ଭଳି ନ ଯାଇ ସେମାନେ ଅସଲ ଦେବତାର ଆବିର୍ଭାବ ଲାଗି ଅପେକ୍ଷା କରି ରହିଥାନ୍ତି । ଆପଣାର ମାଟିଦୀପଟିକୁ ସେମାନେ ସତେଅବା ଏକ ରତ୍ନଦୀପ ପରି ପ୍ରସ୍ତୁତ କରି ରଖିଥାନ୍ତି । ସେମାନେ ଏଇଠି ଏହି ଚିହ୍ନା ଦଉଡ଼ାଗୁଡ଼ାକରେ ଛନ୍ଦିହୋଇ ରହନ୍ତି ନାହିଁ, ଚିହ୍ନା ନିଶାଗୁଡ଼ାକରେ ଘାରି ହୋଇ ରହିବାକୁ ହାସ୍ୟକର ମଣନ୍ତି । ନିଶାଖୋରମାନଙ୍କ ହାତରେ ସବୁଯାକ ଡ଼ଙ୍କା ଓ ଅଡ଼ା ରହିଥିଲେ ମଧ ସେମାନେ ତଥାପି ସକଳ ପ୍ରକାର କୃଷ୍ଣାଭିସାର ପାଖରୁ ନିଜକୁ ଦୂରଛଡ଼ା କରି ରଖିଥାନ୍ତି ।

ବୃତ୍ତି ଏବଂ ବ୍ରତ ଭିତରେ ଏକ ଦ୍ୱନ୍ଦ୍ୱ ହୁଏତ ଏହିପରି ସବୁଦିନ ଲାଗି ଲାଗି ରହିଥିବ । ଅନ୍ୟ ଯାବତୀୟ କ୍ଷେତ୍ରରେ ଯେପରି ଲାଗିଥିବ, ସାହିତ୍ୟ କ୍ଷେତ୍ରରେ ମଧ ଠିକ୍ ସେହିପରି ଲାଗିଥିବ । ଏହି ଦ୍ୱନ୍ଦ୍ୱଟା ସାହିତ୍ୟର କ୍ଷେତ୍ରରେ ସମ୍ଭବତଃ ଅପେକ୍ଷାକୃତ ଟିକିଏ ଅଧିକ ଉତ୍କଟ ଭାବରେ ଅନୁଭୂତ ହେଉଥିବ । ତେଣୁ ସାହିତ୍ୟ ଭିତରେ ଅନ୍ୟମନା ଓ ଅନ୍ୟଶ୍ରଦ୍ଧ ହୋଇ ଯେଉଁମାନେ ବ୍ରତ ପରିବର୍ତ୍ତରେ ବୃତ୍ତିକୁ ଲୋଡୁଥିବେ, ସେମାନେ ଅନ୍ୟାନ୍ୟ କ୍ଷେତ୍ରଗୁଡ଼ିକର ତୁଳନାରେ ସମ୍ଭବତଃ ଅପେକ୍ଷାକୃତ ଅଧିକ ଦମ୍ଭ ବି ଦେଖାଉଥିବେ, ଅଧିକ ଉତ୍ତେଜିତ ହୋଇ ରହିଥିବେ ଏବଂ ଅଧିକ ହାସ୍ୟକରତାର ଅବତାରଣା କରୁଥିବେ । ସେମାନେ ଯେତିକି ଅଧିକ ପରିମାଣରେ ଆପଣାକୁ ବୃତିଆଡ଼କୁ ହୁଡ଼ାଇ ନେଉଥିବେ, ହୁଏତ ଏକ ଅନ୍ତର୍ଗତ ଶ୍ଳେଷର ନ୍ୟାୟ ଦ୍ୱାରା ତାଡ଼ିତ ହୋଇ ସେମାନେ ଆମ ସମସ୍ତଙ୍କ ଆଗରେ ସେତିକି ବେଶୀ ଫୁଲେଇ ହେବାରେ ଲାଗିଥିବେ, ଏହି ଦୁନିଆର ବର୍ତ୍ତମାନ ବଜାରରେ ବ୍ରତ ବୋଲି ଆଉ କେଉଁଠି କିଛିହେଲେ ନାହିଁ ବୋଲି ବାହୁସ୍ଫୋଟ ମାରିବାରେ ଲାଗିଥିବେ । ସାହିତ୍ୟ ଆଧୁନିକ ହେବାରୁ ତାକୁ ଯୁଗନିର୍ବନ୍ଧର ନାନା ଅନୁରୋଧରେ ପଡ଼ି ବ୍ରତରୁ ଏକ ବୃତ୍ତିରେ ପରିଣତ ହେବାକୁ ପଡ଼ିଲା ବୋଲି ଅନେକ ଆଧୁନିକ ବି ଏବେ ଯୁକ୍ତି ଦେଖାଇ କହିବାକୁ ଚେଷ୍ଟା କରିଥାନ୍ତି । ଆଧୁନିକତାକୁ ସେମାନେ ଏକ ନିର୍ଦ୍ଦିଷ୍ଟ ସଂସାର-ବିଚାରର ସମବାଚୀ ବୋଲି ଭ୍ରମକରି ପକାନ୍ତି । ଏକ ପଣ୍ୟପ୍ରଧାନ ଜୀବନଦୃଷ୍ଟିକୁ ହିଁ ସେମାନେ ଆଧୁନିକ ଯୁଗର ଦୃଷ୍ଟିବୋଲି କହନ୍ତି । ପଣ୍ୟପ୍ରଧାନ ଜୀବନଦୃଷ୍ଟି ହେଉଛି ଆମ ଏ ଯୁଗରେ ସଫଳତା ହାସଲ କରିଥିବା ଏକ ଦୃଷ୍ଟି । ବୋଧହୁଏ ସେହି କାରଣରୁ ହିଁ, ପୁଞ୍ଜିବାଦୀ ବିଚାର ଜୀବନକୁ ପଣ୍ୟାଧାର କରି ଦେଖିବାର ରୀତିଟିକୁ ସର୍ବାଗ୍ରମୂଲ୍ୟ ଦେଇଥିବାରୁ ଆମେ ଆମର ଏହି ଯୁଗକୁ ପୁଞ୍ଜିବାଦୀ ଯୁଗ ବୋଲି କହୁଛୁ । ଯେଉଁଠି ସବୁକିଛି ପଣ୍ୟରେ ହିସାବ କରାଯାଇ ପଣ୍ୟରେ କଳନା କରାଯାଇ ପାରିବ, ସେଠାରେ ବୃତ୍ତିଟା ହିଁ ଧର୍ମରୂପେ ପ୍ରତିଷ୍ଠିତ ହେବା ଅତ୍ୟନ୍ତ ସ୍ୱାଭାବିକ । ସେତେବେଳେ ମନୁଷ୍ୟଠାରୁ ତା'ର ବୃତ୍ତିଟା ହିଁ ବଡ଼ ବୋଲି ଗଣାହେବ, ତା'ର ମୁଣ୍ଡଠାରୁ ତା'ର ଟୋପିଟା

ଅଧିକ ସୁନ୍ଦର ଦେଖାଯିବ ଏବଂ ତା'ର ଅସଲ ମୁହଁଟିଠାରୁ ତା'ର ପ୍ରସାଧନଗୁଡ଼ାକ ହିଁ ତା'ର ଆକର୍ଷକତାର ମୂଲ୍ୟଟିକୁ ନିରୂପଣ କରି ବାହାରିବ । ପୁଞ୍ଜିବାଦୀ ଯୁଗରେ ଆମ ପୃଥିବୀର ଅଧିକାଂଶ ମଣିଷ ଯେପରି ଏହିଗୁଡ଼ାକୁ ହିଁ ପରିତ୍ରାଣର ଉପାୟ ବୋଲି ବିଶ୍ୱାସ କରି ନେଇଛନ୍ତି, ରାଜନୀତିକ ପୁଞ୍ଜିବାଦର ଏକ ବିକଳ୍ପ ରୂପେ ପୃଥିବୀକୁ ଆସିଥିବା ରାଜନୀତିକ ସମାଜବାଦ ମଧ୍ୟ ଯେପରି ଏହି ଧୂଆଁ ଭିତରେ ପଶି ସୁନ୍ଦର ହେବା ଅପେକ୍ଷା ସୁନ୍ଦର ଦେଖା ଯିବାକୁ ହିଁ ରଣକୌଶଳ ବୋଲି ଗ୍ରହଣ କରି ନେଇଛି, ଠିକ୍ ସେହିପରି ଏହି ଯୁଗରେ ଅନେକ ସାହିତ୍ୟିକ ମଧ୍ୟ ଯେ ସାହିତ୍ୟକୁ ତୁଚ୍ଛା ଏକ ପଣ୍ୟଉପାର୍ଜନକାରୀ ବୃତ୍ତିରେ ପରିଣତ କରାଇ ଦେବେ, ହାତରେ ଓ ଗୋଡ଼ରେ ସୁନାବେଡି ପିନ୍ଧି ବସିବେ, ଯୁଗର ଆବଶ୍ୟକତା ଅର୍ଥାତ୍ ଯୁଗାଧିପତିର ମରଜି ପାଖରେ ଆପଣାକୁ କେବଳ ଏକ ଅକିଞ୍ଚନ ପଣ୍ୟ ବୋଲି ଭାବିବେ, ସେଥିରେ ମଧ୍ୟ ଆଦୌ କୌଣସି ଅସ୍ୱାଭାବିକତା ରହିଛି ବୋଲି ଭାବିବା ଉଚିତ ନୁହେଁ । ଏବଂ ସେଥିରେ କାହାରି ରୁଷ୍ଟ ହୋଇ ପଡ଼ିବା ଉଚିତ ନୁହେଁ, ନିରାଶ ହୋଇ ପଡ଼ିବା ମଧ୍ୟ ଉଚିତ ନୁହେଁ ।

କାରଣ, ଆଧୁନିକତା କହିଲେ ପୁଞ୍ଜିବାଦୀ ବିଚାରକମାନେ ଯାହା ବୁଝନ୍ତି, ତଦ୍‌ବ୍ୟତୀତ ଆଧୁନିକତାର ଆହୁରି ଅନେକ ଅନ୍ୟ ସଂଜ୍ଞା ବି ରହିଛି । ଆଧୁନିକତା କହିଲେ ଯୁଗଚକ୍ରର ଏହି ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟିରେ ଜୀବନ ବଞ୍ଚିବାର ଆହୁରି ଅନେକ ଦୃଷ୍ଟିକୁ ମଧ୍ୟ ବୁଝାଉଛି । ଆଧୁନିକତାର ଦୃଷ୍ଟି ହେଉଛି ଏକ ନୂତନ ଆରୋହଣର ଦୃଷ୍ଟି । ଏହି ଦୃଷ୍ଟି ଆପଣାକୁ କୌଣସି ନିର୍ଦ୍ଦିଷ୍ଟ ଭାଷା, ଜାତି ଅଥବା ରାଷ୍ଟ୍ର ମଧ୍ୟରେ କଦାପି ସୀମାବଦ୍ଧ କରି ରଖିବ ନାହିଁ–ଯାବତୀୟ ରଙ୍ଗ ଓ ଯାବତୀୟ ମିଶ୍ରଣର ସକଳ ଚାଟୁକାରିତା ଏବଂ ସକଳ ଅନ୍ଧ-ପ୍ରୀତି, ସ୍ଥାନୀୟ କାମୁକତା ଏବଂ ତାତ୍କାଳିକ ସିଦ୍ଧିର ସିଆଣିଆ ନିର୍ଲଜ୍ଜତାକୁ ଅତିକ୍ରମ କରି ଯାଇପାରିଲେ ଯାଇ ଆମକୁ ଏହି ଆଧୁନିକତାର ଦିଗ୍‌ବଳୟଗୁଡ଼ିକ ଦୃଶ୍ୟ ହେବାକୁ ଲାଗିବ, ସେଗୁଡ଼ିକୁ ସତେଅବା ସ୍ପର୍ଶ କରି ଆସୁଥିବା ପରି ମନେହେବ । ଆଧୁନିକ ବିଜ୍ଞାନ ଏବଂ ଏକ ନୂତନ ବିଶ୍ୱାୟତନତାର ବିଚାର ଆମ ପୃଥିବୀରେ ଯେଉଁ ଆଧୁନିକତାକୁ ଏକ ବାସ୍ତବ ସତ୍ୟରେ ପରିଣତ କରିପାରିବାର ପ୍ରତିଶ୍ରୁତି ଦେଇ ଯାଉଛି, ଏଠାରେ ସେହି ଆଧୁନିକତାର କଥା କୁହାଯାଉଛି । ଏହାଦ୍ୱାରା ଏକ ନୂତନ ଚେତନା, ନୂତନ ସମ୍ବନ୍ଧ ଏବଂ ନୂତନ ଏକସୂତ୍ରତାର କଥା କୁହାଯାଉଛି । ଆମକୁ ନିମିତ୍ତ କରି ଏହି ଆଧୁନିକତା ଆପଣାକୁ ପ୍ରତିଷ୍ଠିତ କରିବା ଲାଗି ଆମ ଦୁଆରେ ସତେଅବା ଅପେକ୍ଷା କରି ରହିଛି । ଏହି ବିଷୟରେ ଆମେ କେଉଁ ନିଷ୍ପତ୍ତିଟି ନେବା, ତାହା ମୂଳତଃ ଆମରି ଉପରେ ନିର୍ଭର କରୁଛି ।

ସାହିତ୍ୟରେ ମଧ୍ୟ ଏହି ନିଷ୍ପତ୍ତିଟିକୁ କରିବାକୁ ପଡ଼ିବ । ସାହିତ୍ୟକୁ ଆମେ ବୃତ୍ତି ବୋଲି ଗ୍ରହଣ କରିବା ନା ବ୍ରତ ବୋଲି ଗ୍ରହଣ କରିବା, ଏହା ସମ୍ପୂର୍ଣ୍ଣ ଭାବରେ

ଆମ ଉପରେ ନିର୍ଭର କରୁଛି । ଜୀବନକୁ ଆମେ ସିଦ୍ଧି ବୋଲି ଗ୍ରହଣ କରିବା ନା ମାର୍ଗ ବୋଲି ଗ୍ରହଣ କରିବା, ଏହାରି ଦ୍ୱାରା ହିଁ ସେହି ନିଷ୍ପତ୍ତିଟି ଅନେକ ପରିମାଣରେ ପ୍ରଭାବିତ ହେବାକୁ ଯାଉଛି । ଆମର ଘର କହିଲେ ଆମେ ଏହି ବାଡ଼ଗୁଡ଼ାକୁ ବୁଝିବା ନା ସମଗ୍ର ସଂସାରଟାକୁ ବୁଝିବା, ଆମର ନିୟତି କହିଲେ ଆମେ ଜମାକରି ରଖିଥିବା ଓ ଆହୁରି ଜମା କରିବାକୁ ଯାଉଥିବା ପଣ୍ୟ ଓ ପୋଷାକଗୁଡ଼ାକୁ ବୁଝିବା ନା ଏକ ନୂତନ ସାହସ, ନୂତନ ଜିଜ୍ଞାସା ଏବଂ ନୂତନ ଅନୁରାଗକୁ ବୁଝିବା–ଆମକୁ ସାହିତ୍ୟ ଭିତରେ ମଧ୍ୟ ଅବଶ୍ୟ ଏହି ପ୍ରଶ୍ନଟିର ଉତ୍ତର ଦେବାକୁ ପଡ଼ିବ । ଆମେ ଜୀବନରେ ଯେଉଁ କ୍ଷେତ୍ରରେ ରହିଥାଉ ପଛକେ, ହୁଏତ ପ୍ରତ୍ୟେକ ସ୍ଥଳରେ ହିଁ ଆମକୁ ଏହିଧର୍ମୀୟ ଅନେକ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଥାଏ । ଅନେକ ସମୟରେ ଆମେ ଉତ୍ତର ଦେବାର ଦାୟିତ୍ୱଟିକୁ ବେଶ୍ ଫାଙ୍କିଦେଇ ଚାଲିଯାଉ, କେତେ ପ୍ରକାର ଅନ୍ୟ କନ୍ଦିରେ ଯାଇ ପଶିଯାଉ, ଅନ୍ୟ ଆଶ୍ରୟ ଭିତରେ ମୁହଁ ଲୁଚାଇ ରକ୍ଷା ପାଇଯିବୁ ବୋଲି ବିଚାର କରୁଥାଉ । ଅଥବା ଅଧିକାଂଶ ଅର୍ଥାତ୍ ଆମ ଭାଷାରେ ସମସ୍ତେ ଯାହାକୁ ଧର୍ମ ଓ ରୀତି ବୋଲି କହୁଛନ୍ତି, ଗୋଟାସୁଦ୍ଧା ସେହିଗୁଡ଼ାକ ଉପରେ ଲୋସଡ଼ି ପଡ଼ି ବି ଆମେ ସେହି ଦାୟିତ୍ୱରୁ ରକ୍ଷା ପାଇବାର ଆଉ ଏକ ବାଟ ଧରିଥାଉ । ମାତ୍ର ସାହିତ୍ୟ ବା ସାହିତ୍ୟିକ କଦାପି ଏସବୁକୁ ଫାଙ୍କିଦେଇ ପାରିବ ନାହିଁ । ଫାଙ୍କିଦେଲେ ଧରା ପଡ଼ିଯିବ, ଫମ୍ପାଗୁଡ଼ାକ ପଦାରେ ପଡ଼ିଯିବ ଏବଂ ଫାଙ୍କିଦେଉଥିବା ବୀରମାନେ ଯେତେ ପାରିତୋଷିକ ପାଇ ଯେତେ ନିଶ୍ଚିନ୍ତ ହୋଇ ରହିଥାନ୍ତୁ ପଛକେ, ତୁଚ୍ଛା ଆଭରଣର ଗଣିତ ଭିତରେ ପଶି ଯେତେ ବାବାଜୀ ହେବାକୁ ଚେଷ୍ଟା କରୁଥାନ୍ତୁ ପଛକେ, ସାହିତ୍ୟକୁ ଦିନେ ନା ଦିନେ ସେହି ଜବାବ ଦେବାକୁ ହେବ । ସେମାନେ କାଳର ଆହ୍ୱାନକୁ ସ୍ୱୀକାର ନ କଲେ କାଳ ହିଁ ଆସି ସେମାନଙ୍କର ଘର ଭିତରେ ପଶିଯିବ ।

ତା୨୩।୦୭।୧୯୭୬ରିଖ



... ପ୍ରତ୍ୟେକ ଧର୍ମ ହେଉଛି ମୂଳତଃ ଜୀବନ-ଧର୍ମ। ପ୍ରତ୍ୟେକ ଦର୍ଶନ ହେଉଛି ମୂଳତଃ ଜୀବନ-ଦର୍ଶନ। ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ଦର୍ଶନର ଜୀବନ ମଧ୍ୟରୁ ନୂତନ ପ୍ରେରଣା ନେଇ ନୂତନ ଭାବରେ କିଛି ଉପଲବ୍ଧି କରିବାର ଯେଉଁ ଆକୂତିଟି ରହିଛି, ତାହାକୁ ହିଁ ଆମେ ଯାବତୀୟ ଧର୍ମ ଓ ଦର୍ଶନର ଅସଲ ଯଥାର୍ଥତା ବୋଲି କହି ପାରିବା। ମାତ୍ର ଯେତେବେଳେ କୌଣସି ଧର୍ମ ଜୀବନଠାରୁ ବିଚ୍ଛିନ୍ନ ହୋଇଯାଏ, ଯେତେବେଳେ କୌଣସି ଦର୍ଶନ ଜୀବନଠାରୁ ବିଚ୍ଛିନ୍ନ ହୋଇଯାଏ, ସମ୍ଭବତଃ ସେତିକିବେଳେ ହିଁ ସେହି ଧର୍ମ ଓ ସେହି ଦର୍ଶନ ମଧ୍ୟରେ ବୁଦ୍ଧିବାଦର ପ୍ରକୋପଟା ଅତିରିକ୍ତ ଭାବରେ ବଢ଼ିବାକୁ ଆରମ୍ଭ କରେ ଓ ତା'ପରେ ମନୁଷ୍ୟ ଅପରଠାରୁ ଆପଣାର ପାର୍ଥକ୍ୟଗୁଡାକୁ ହିଁ ଆଗ ଓ ଅଧିକତର ପରିମାଣରେ ପ୍ରତ୍ୟେକ୍ଷ କରିବାକୁ ଆରମ୍ଭ କରେ। ଧର୍ମ ଯୋଡି ଆଣେ, ଦର୍ଶନ ଖିଅ ଯୋଗାଇ ଦିଏ, ସଂଯୁକ୍ତ କରେ, ଏକକ ଦୃଷ୍ଟିରେ ପରିଣତ କରେ, ଗୋଟାଏ ଭଣିତା ଭିତରେ ସତେଅବା ଯୁଗଯୁଗର କଥା କହିବା ପାଇଁ ସାହସ କରେ।...



ପଥିକ ପ୍ରକାଶନୀ
ସଂଶୋଧିତ ମୂଲ୍ୟ ଟ.୮୮/-